# ଆଧୁନିକ ଓଡ଼ିଆ କବିତା ପରିଚର୍ଚ୍ଚା

## ( A Criticism on Modern Oriya Poetry )

ପ୍ରଥମ ଖଣ୍ଡ

ଡକ୍ଟର ଶତ୍ରୁଘ୍ନ ପାଣ୍ଡବ



ଆଧୁନିକ ଓଡ଼ିଆ କବିତା ପରିଚର୍ଚ୍ଚା—ଲେଖକ : ଡକ୍ଟର ଶତ୍ରୁଘ୍ନ ପାଣ୍ଡବ, ପ୍ରକାଶକ : ସହଦେବ ପ୍ରଧାନ, ଫ୍ରେଣ୍ଡ୍‌ସ୍ ପବ୍ଲିଶର୍ସ, ବିନୋଦବିହାରୀ, କଟକ-୭୫୩୦୦୨, ପ୍ରଚ୍ଛଦପଟ : ବି. କେ. ପ୍ରଧାନ, ମୁଦ୍ରଣ : ସତ୍ୟବ୍ରତ ପ୍ରେସ, କଟକ-୭୫୩୦୦୯ ।



**ADHUNIKA ORIYA KABITA PARICHARCHA**—Written by : Dr. Satrughna Pandab, Publisher : Sahadev Pradhan, Friends' Publishers, Binod Behari, Cuttack-753002, Orissa ( India ), Cover Design : B. K. Pradhan, Printer : Satyabrata Press, Cuttack-753009.

1st Edition : 1998

Price : Rs. 70/

ISBN 81-7401-235-4

ଆଧୁନିକ ଓଡ଼ିଆ କବିତାର ବିଶିଷ୍ଟ ସମାଲୋଚକ

ମୋର ଶିକ୍ଷାଗୁରୁ

**ପ୍ରଫେସର ଡକ୍‌ଟର ନିତ୍ୟାନନ୍ଦ ଶତପଥୀଙ୍କ**

ହାତରେ ଅର୍ପଣ କରୁଛି

**'ଆଧୁନିକ ଓଡ଼ିଆ କବିତା ପରିଚିତି'।**

ପ୍ରଥମ ଖଣ୍ଡ

—ଲେଖକ

# ଭୂମିକା

କବିତା ଲେଖିବା ଓ ଜଣେ ମୁଗ୍ଧ ପାଠକର ମନ ନେଇ କବିତା ଉପଭୋଗ କରିବା ଅବକାଶରେ ତା'ପ୍ରତି ସୃଷ୍ଟ ମମତ୍ୱବୋଧରୁ ମୁଁ ବିଭିନ୍ନ ସମୟରେ ଯେଉଁ ଆଲୋଚନା ଲେଖିଛି—ଏ ପୁସ୍ତକରେ ସେଥିରୁ କେତୋଟି ସଂଯୋଜିତ । କିନ୍ତୁ ନିଜକୁ କେବେ ଜଣେ ଆଲୋଚକ ବା ସମୀକ୍ଷକ ବୋଲି ମୁଁ ଭାବି ନାହିଁ । ଏ ପୁସ୍ତକର ପ୍ରଥମ ବିଶେଷତ୍ୱ ଏହି ଯେ ଏଥିରେ ଆଲୋଚିତ ସମସ୍ତ କବି ଓଡ଼ିଆ କାବ୍ୟଧାରାରେ ଏବେ ମଧ୍ୟ ଜଣେ ଜଣେ ସକ୍ରିୟ ସାଧକ । ଆଧୁନିକ କବିତା ଓ ତା'ର ପାଠକଙ୍କ ମଧ୍ୟରେ ଏକ ଅନ୍ତରଙ୍ଗତାର ପରିମଣ୍ଡଳ ସୃଷ୍ଟି କରିବାକୁ ମୁଁ ଚାହିଁଛି । କବିତାମାନଙ୍କୁ ମୁଁ ତେଣୁ କୌଣସି ତତ୍ତ୍ୱ, ବାଦ, ତଥାକଥିତ ଆଧୁନିକତା ଇତ୍ୟାଦିର ମାନଦଣ୍ଡରେ ମାପିନାହିଁ । ଅନ୍ୟଭାବରେ କହିଲେ ଏ ଲେଖାଗୁଡ଼ିକ ସମକାଳୀନ କବିତାପ୍ରତି ମୋର ଏକ ରସଘନ ପ୍ରତିକ୍ରିୟା ।

୧୯୭୭ ମସିହାରେ ବିଭାଗୀୟ ପାଠଚକ୍ର (ବାଣୀବିହାର) ପାଇଁ ପ୍ରସ୍ତୁତ କରିଥିବା 'ପରିବର୍ତ୍ତିନର ସ୍ୱର ଓ କବି ସୌଭାଗ୍ୟ ମିଶ୍ର' ଆଲୋଚନାଟି ଥିଲା ସୌଭାଗ୍ୟ ମିଶ୍ରଙ୍କ କବିତା ସମ୍ପର୍କୀୟ ପ୍ରଥମ ପ୍ରବନ୍ଧ ଏବଂ ଜଣେ ଆଧୁନିକ କାଳର କବିଙ୍କ ଉପରେ ମୋର ପ୍ରଥମ ମୂଲ୍ୟାୟନ । ଗାର୍ତ୍ତିକ ରବି ସ୍ୱାଇଁଙ୍କ ସମ୍ପାଦନାରେ ପ୍ରସ୍ତୁତ 'କବି ଦୀପକ ମିଶ୍ରଙ୍କ କାବ୍ୟଚେତନା' ପୁସ୍ତକ ପାଇଁ ପ୍ରାୟ ଗୋଟିଏ ଦଶନ୍ଧି ତଳେ ପ୍ରବନ୍ଧଟିଏ ଲେଖିଥିଲି । ଓଡ଼ିଶା ସାହିତ୍ୟ ଏକାଡେମୀର ଅଂଚଳ ପାଇଁ ୧୯୮୬ରେ ଲେଖିଥିବା 'ଆଧୁନିକ ଓଡ଼ିଆ କବିତାର ଭାଷା ଓ ଶୈଳୀ' ଆଲୋଚନାଟି ୧୯୮୮ରେ ଉପସ୍ଥାପିତ ହୋଇଥିଲା ଏବଂ ପରେ ପରେ ତାହା ଧାରାବାହିକଭାବେ ପ୍ରକାଶିତ ହୋଇଥିଲା 'ଅମୃତାୟନ' ପତ୍ରିକାରେ । 'ସାମ୍ପ୍ରତିକ କବିତାର ପରମ୍ପରାମାନ୍ୟତା' ଆଲୋଚନାଟି ପ୍ରକାଶିତ ହେବାପରେ ଏକାଧିକ ବିଦଗ୍ଧ ସାହିତ୍ୟିକ ମୋତେ ଏଲିଅଟ୍‌ଙ୍କ 'Tradition And Individual Talent' ନାମକ ପ୍ରବନ୍ଧ ସଂପର୍କରେ ସ୍ମରଣ କରାଇଥିଲେ । ପୂର୍ବରୁ ତାକୁ ମୁଁ ପଢ଼ି ନଥିଲି । ବହୁଚର୍ଚ୍ଚିତ କବି ଗୁରୁପ୍ରସାଦଙ୍କ କବିତାରେ ମୁଁ ଖୋଜିବାକୁ ଚେଷ୍ଟା କରିଛି ମୌଳିକ ଭାରତୀୟ ଦୃଷ୍ଟି ଓ ବିଭବକୁ । କବି ସୀତାକାନ୍ତଙ୍କୁ ସମ୍ବର୍ଦ୍ଧନା ଦେବା ଅବକାଶରେ ମୋର ସାର୍ ଡଃ ନିତ୍ୟାନନ୍ଦ ଶତପଥୀଙ୍କ ପ୍ରସ୍ତାବନାରେ ପ୍ରସ୍ତୁତ କରିଥିଲି 'ସୀତାକାନ୍ତଙ୍କ କବିତା : ଏକ ମୁଗ୍ଧ ଦୃଷ୍ଟି' । ଏହି ଆଲୋଚନାରୁ ଅଧିକାଂଶ 'ଇସ୍ତାହାର' ପତ୍ରିକାରେ ପ୍ରକାଶିତ ।

ଭାନୁଜୀ ରାଓ ଓ ପ୍ରଭାସ ଶତପଥୀଙ୍କ କବିତା ସଂପର୍କରେ ପରସ୍ଥ ଆଲୋଚନା ସେମାନଙ୍କ ସମଗ୍ର କବିତା ଉପରେ ପ୍ରଥମ ପୂର୍ଣ୍ଣାଙ୍ଗ ଆଲୋକପାତ । ଜୀବନ୍ତ ଐତିହାସିକ ଗୁରୁତ୍ୱ ଥିବା ଦୁଇଟି କବିତା 'ଅଲକା ସାନ୍ୟାଲ'ର ମର୍ମ ଗ୍ରହଣାବନରେ ମୁଁ ଠିକ୍ ଭାବେ ଧର ନଥିଲି; ତାକୁ ବୁଝାଇବାର ପ୍ରଯନ୍ନ କଲାବେଳେ ତା'ର ମୂଳଉତ୍ସ 'ବନଲତା ସେନ୍' ପଢ଼ି ଏକ ତୁଳନାତ୍ମକ ଦୃଷ୍ଟି ନେଇ ଦେଖିଛୁ । କବିତାରେ ମୃତ୍ୟୁବୋଧ ପ୍ରସଙ୍ଗରେ ଏକଦା ଭିନ୍ନ ନାମରେ ଲେଖିଥିବା 'ଅରଣ୍ୟ ମହର୍ଷି'ର ପ୍ରାୟୋଗିକ ଆଲୋଚନା ସହିତ ନୂତନ ଭାବେ ସଂଯୋଜିତ କରିଛୁ 'ଉଜ୍ଜ୍ୱଳ ଭବିଷ୍ୟତ'ର ଆଲୋଚନା ।

ଏ ପୁସ୍ତକରେ ପରସ୍ଥ ଆଲୋଚନା ଯଦି ଆଧୁନିକ ଓଡ଼ିଆ କାବ୍ୟଧାରାର ଶ୍ରୀ ଓ ସ୍ୱରୂପ ସମ୍ପର୍କରେ ପାଠକଙ୍କୁ ସ୍ପର୍ଶ କରେ ତେବେ ଆଉ କେତୋଟି କବି ଓ କାବ୍ୟ-ସାଧକଙ୍କୁ ନେଇ ମୁଁ ଦ୍ୱିତୀୟ ଖଣ୍ଡର ପ୍ରସ୍ତୁତି ପାଇଁ ଆଶା ରଖିବି ।

ଏ ପୁସ୍ତକ ପ୍ରକାଶନ ଅବକାଶରେ ମୁଁ ଅନେକଙ୍କ ପାଖରେ କୃତଜ୍ଞ : ଆମ କାବ୍ୟଧାରାକୁ ସମୃଦ୍ଧ କରିଥିବା କବିବୃନ୍ଦ, ଆଲୋଚନାକୁ ପରସ୍ଥ କରିଥିବା ପତ୍ରିକା ଓ ପୁସ୍ତକର ସମ୍ପାଦକବୃନ୍ଦ, ପ୍ରବନ୍ଧ ପାଇଁ ପ୍ରେରଣା ଦେଇଥିବା ଓ ତାକୁ ଏକାଠି ଗ୍ରଂଥନ ପାଇଁ ପରାମର୍ଶ ଦେଇଥିବା ବନ୍ଧୁ ବାନ୍ଧବ ଓ ଶୁଭେଚ୍ଛୁ, ଏବଂ ଓଡ଼ିଆ କବିତା ପ୍ରତି ଶ୍ରଦ୍ଧା ପୋଷଣ କରିଥିବା ଫ୍ରେଣ୍ଡ୍‌ସ୍ ପବ୍ଲିଶର୍ସ ।

ଶତ୍ରୁଘ୍ନ ପାଣ୍ଡବ
ନୀଳକଣ୍ଠେଶ୍ୱର ମନ୍ଦିର ମାର୍ଗ
ଗାନ୍ଧୀନଗର, ଜଟଣୀ-୭୫୨୦୫୦
ଖୋର୍ଦ୍ଧା

---

## ଲେଖକଙ୍କର ଅନ୍ୟ ରଚନା

୧ । କଥାଶିଳ୍ପୀ ମନୋଜ ଦାସ (୧୯୯୪)

୨ । ନିଃଶ୍ୱାସର ତାଳପତ୍ର : (କବିତା ସଂକଳନ) (୧୯୮୩)

୩ । ପଦ୍ମ ପାଲିଙ୍କି ,, (୧୯୯୫)

# ସୂଚିପତ୍ର





# ସାଂପ୍ରତିକ ଓଡ଼ିଆ କବିତାର ପରମ୍ପରା-ମାନ୍ୟତା : ଏକ ସୂଚନା

ଏକ :

ସାହିତ୍ୟର ବା କବିତାର ପରମ୍ପରା-ମାନ୍ୟତା ଏକ ଉଲ୍ଲେଖଯୋଗ୍ୟ ପ୍ରସଙ୍ଗ । 'ସାହିତ୍ୟରେ ବା କବିତାରେ ପରମ୍ପରା-ମାନ୍ୟତା' ଏବଂ 'ସାହିତ୍ୟର ବା କବିତାର ପରମ୍ପରା-ମାନ୍ୟତା'—ଦୁଇଟି ଭିନ୍ନ ଅଧ୍ୟାୟ, ଯଦିଓ ଉଭୟ ପ୍ରସଙ୍ଗରେ ନିଶ୍ଚିତ ସମ୍ପର୍କ କିଛି ରହିଛି । କୋଣାର୍କ ମନ୍ଦିର ଓ ମାଦଳାପାଞ୍ଜି ସମ୍ପର୍କୀୟ ଦୁଇଟି ଉଦାହରଣ ମାଧ୍ୟମରେ ଏ କଥାକୁ ବୁଝିହୋଇପାରେ ।

କୋଣାର୍କ ମନ୍ଦିର ଅତୀତ ଉତ୍କଳର କଳା ଓ ସଂସ୍କୃତିର ନିଖୁଣ ନିଦର୍ଶନ । ଏହାକୁ କୌଣସି ସାହିତ୍ୟ ସୃଷ୍ଟି ମଧ୍ୟରେ ସ୍ମରଣକୁ ଆଣିବା ଅଥବା ପ୍ରୟୋଗ କରିବା ହେଉଛି ସାହିତ୍ୟରେ ପରମ୍ପରା-ମାନ୍ୟତା । କିନ୍ତୁ କୋଣାର୍କ ଶୀର୍ଷକରେ ଲେଖାଯାଇଥିବା ପ୍ରାଥମିକ ରଚନାମାନଙ୍କୁ ମୂଳକେନ୍ଦ୍ରକରି ସେଇ ପରମ୍ପରାରେ ସାହିତ୍ୟ ସୃଷ୍ଟି କରିବା ଅଥବା କବିତା ରଚନା କରିବା ହେଉଛି ସାହିତ୍ୟ ବା କବିତାର ପରମ୍ପରା-ମାନ୍ୟତା । ମାଦଳାପାଞ୍ଜି ଓଡ଼ିଶାର ସାଂସ୍କୃତିକ ଇତିହାସର ଅନ୍ୟତମ ପ୍ରାମାଣିକ ଗ୍ରନ୍ଥ । ଏହା ଅନୁଯାୟୀ ଶବର ମହାନ୍ତି ନାମକ ଜନୈକ ଭକ୍ତ କଳାପାହାଡ଼ଙ୍କ ମନ୍ଦିରଧ୍ୱଂସ ଅଭିଯାନ ବେଳେ ଜଗନ୍ନାଥଙ୍କ ବ୍ରହ୍ମକୁ ରକ୍ଷା କରିଥିଲେ । ଏଇ ଶବର ମହାନ୍ତିଙ୍କୁ ନେଇ ଦୀପକ ମିଶ୍ରଙ୍କର 'ଲୋଡ଼ାନାହିଁ' ('ବୃତ୍ତ', ୧୯୭୫) ଶୀର୍ଷକରେ କବିତାଟିଏ ରହିଛି । ଏହାର ଭାବବସ୍ତୁ ହେଉଛି ଯେ ଜଗନ୍ନାଥ ବ୍ରହ୍ମକୁ ଉଦ୍ଧାର କରିବା ସତ୍ତ୍ୱେ ବି ଶବର ମହାନ୍ତିଙ୍କ ଭିତରେ ଆଦୌ ଉଲ୍ଲାସ କିମ୍ବା ଅହଂକାର ଭାବ ନାହିଁ । ସେ ମଧ୍ୟ ହଜାର ଲୋକଙ୍କପରି ଜଣେ ସାଧାରଣ ଲୋକ । କିନ୍ତୁ ତାଙ୍କର ନିର୍ଲିପ୍ତ ବିନୀତ ବ୍ୟକ୍ତିତ୍ୱ ଏବଂ ସମର୍ପିତ ଭକ୍ତିଭାବ ଯୋଗୁଁ ଉକ୍ତ କବିତାରେ ସେ ଏକ ଅସାଧାରଣ ଚରିତ୍ର ବା ପ୍ରତୀକରେ ରୂପାନ୍ତରିତ ହୋଇ ସ୍ୱୟଂ ପରମ୍ପରାର ସାମଗ୍ରୀରେ ପରିଣତ ହୋଇ ସାରିଛନ୍ତି । ଏହି ଉଦାହରଣଟିକୁ ରଚନା-ଗର୍ଭିତ କରିବା ହେଉଛି ସାହିତ୍ୟରେ ବା କବିତାରେ ପରମ୍ପରା-ମାନ୍ୟତା । କିନ୍ତୁ ହରିହର ମିଶ୍ର ମାଦଳାପାଞ୍ଜିର ରଚନା-ଭଙ୍ଗୀକୁ ନିଜ କବିତାରେ ବଡ଼ ଶ୍ରଦ୍ଧା ଓ ସମ୍ମାନର ସହିତ ସଚେତନ ପ୍ରୟୋଗ କରିଛନ୍ତି । ଏହା ସାହିତ୍ୟର ବା କବିତାର ପରମ୍ପରା-ମାନ୍ୟତା

ବୋଲି ବୁଝିବାକୁ ହେବ । ମାଦଳାପାଞ୍ଜିର ରଚନା-ରୀତି (ଲେଖକ ଯେ ହୋଇଥିଲେ ନା କାହିଁକି)ର ଏକ ସ୍ୱତନ୍ତ୍ର ସ୍ୱାଦ ରହିଛି । ଏ ପ୍ରସଙ୍ଗରେ ଉକ୍ତିଟି ଏହିପରି :

"ଯେ ମହାରାଜାମାନେ ତୁମ୍ଭେମାନେ ଏହା ଅନ୍ୟଥା କରିବ ।
ହରିଲରତ ପାପ ଶ୍ରୁତି ବଚନମାନଙ୍କରେ ଶୁଣିଥିବ ।
ଏଥିକୁ ତୁମ୍ଭେମାନେ ଯେ ବଳିଆର ପଣକରି
ଲୋଭବଶରେ ହରିବ ।
ତେବେ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ଶ୍ରୀଚରଣକୁ ଦ୍ରୋହ କଲାରୁ
ଯେ ପାପ ତାହା ପାଇବ, ଅନଙ୍ଗ ଭୀମଦେବ ।"

ବିଭିନ୍ନ ଉଦାହରଣ ଜରିଆରେ କବିତାର ପରମ୍ପରା-ମାନ୍ୟତା ଆମ ନିକଟରେ ସ୍ପଷ୍ଟ ହୋଇପାରିବ । ଏହା ମୂଳତଃ ପୂର୍ବ ସୃଷ୍ଟି-ପରମ୍ପରା ପ୍ରତି ସମ୍ମାନ ପ୍ରଦର୍ଶନ ଏବଂ ପରବର୍ତ୍ତୀ ସୃଷ୍ଟିରେ ତାହାର ସମନ୍ୱୟ ସାଧନ । ଏହା ଏକ ଋଣ ନେବାର କର୍ମ । ଏତଦ୍ୱାରା କୌଣସି କବି-ବ୍ୟକ୍ତି ଅନ୍ୟ କବି ନିକଟରେ ଋଣୀ ହୁଏ ନାହିଁ । କବିତାର ପରମ୍ପରା ପାଖରେ ସେ ଆପଣାର ଉତ୍କର୍ଷ ଲାଗି ଋଣୀ ହୁଏ । ବ୍ୟକ୍ତିଗତ ରଚନାର ସମୃଦ୍ଧି ଲାଗି ସେ ଋଣ ଗ୍ରହଣ କରିପାରିଥାଏ; କିନ୍ତୁ ପରମୁହୂର୍ତ୍ତରେ ତା'ର ସମସ୍ତ ସୃଷ୍ଟି ସ୍ୱୟଂ କବିତାର ପରମ୍ପରାରେ ପରିଣତ ହୁଏ । ଏଣୁ ଏ ପରମ୍ପରା ଏକ ଚିର-ପ୍ରବହମାନ ରସଧାରା । ପରମ୍ପରାର ଏକ ଅଲିଖିତ ରୂପ ପ୍ରାୟ ପ୍ରତ୍ୟେକ ସଚେତନ ସ୍ରଷ୍ଟା-ମାନସରେ ସଞ୍ଚିତ ଥାଏ । ତାହାରୁ ସେ ଆପଣାମତେ ସାମଗ୍ରୀ ସଂଗ୍ରହ କରି ସୃଷ୍ଟି-ଶିଳ୍ପକୁ ସମୃଦ୍ଧ କରେ । ଏହା ଆରୋପିତ ହେଲେ ମଧ୍ୟ ଏକ ସଚେତନ ପ୍ରାକୃତିକ ପ୍ରକ୍ରିୟା ।

ଯୁଗପ୍ରବାହ, ଜୀବନଧାରା, ଐତିହ୍ୟବୋଧ ଇତ୍ୟାଦି ଦ୍ୱାରା ସ୍ୱୟଂ ପରମ୍ପରା ପୁଷ୍ଟ ହୁଏ । କବିତାର ପରମ୍ପରା-ମାନ୍ୟତାରେ ପୂର୍ବବର୍ତ୍ତୀ ଲେଖକଙ୍କ ଅବଦାନ ପରବର୍ତ୍ତୀ ସ୍ରଷ୍ଟା କିପରି ଭାବରେ ଗ୍ରହଣ କରିଛି, ସ୍ୱୀକାର କରିଛି, ଉପଯୋଗ କରିଛି; ତାହାହିଁ ବିଶେଷ ଆଲୋଚ୍ୟ । ଏଥିରେ ପ୍ରଭାବ, ପ୍ରତିଫଳନ, ଆହରଣ, ସମୀକରଣ ଆଦି ପ୍ରସଙ୍ଗ ଉଠିପାରେ । ପରମ୍ପରାକୁ ମାନ୍ୟ ଦେଲାବେଳେ କୌଣସି ମୌଳିକ ସୃଷ୍ଟି ମ୍ଳାନ ଦିଶେ ନାହିଁ; ଅଧିକ ସମୁଜ୍ଜ୍ୱଳ ଦିଶିପାରେ । ପୂର୍ବ ରଚନାକୁ ବର୍ତ୍ତମାନ ପରିପ୍ରେକ୍ଷୀରେ ଅଙ୍ଗୀଭୂତ ଅଥବା ନବୀକରଣ କରିବାର ବହୁତ ବାଟ ରହିଛି । ଏହାର କୌଣସି ନିର୍ଦ୍ଦିଷ୍ଟ ନିୟମକାନୁନ ନାହିଁ । ପରବର୍ତ୍ତୀ କାଳର ରଚନାର ଆତ୍ମିକ ଭାବସମ୍ପଦ ହେଉ ବା ଗଢ଼ଣ ଶିଳ୍ପ ହେଉ, ତହିଁରୁ ପରମ୍ପରାକୁ ଆପଣେଇ ନେବାର ବିବିଧତା ସହଜରେ ଜଣାପଡ଼େ । ଏ ମାନ୍ୟତା ଯୋଗୁଁ କେବଳ ପରମ୍ପରା ବା ପୂର୍ବବର୍ତ୍ତୀ ସୃଷ୍ଟିଧାରାକୁ ଅନୁସରଣ କରାଯାଏ ନାହିଁ; ପରମ୍ପରାକୁ ଏକ ମୂଳ ଛାଞ୍ଚ ବା ରୂପଭାବେ ନେଇ ବିଭିନ୍ନ ଦୃଷ୍ଟିକୋଣରୁ ଆଲୋକପାତ କରାଯାଏ ।

ପରମ୍ପରା-ମାନ୍ୟତା ମୂଳତଃ ଏକ ଶ୍ରଦ୍ଧା ଓ ସ୍ୱାଭିମାନର କଥା । ଏହା ନ ଥିଲେ ପରମ୍ପରାର ଅନ୍ତଲ ଆତ୍ମାକୁ ଚହ୍ନି ହୁଏ ନାହିଁ କି ତା'ପ୍ରତି ମାନ୍ୟତା ପ୍ରଦର୍ଶନ କରି ହୁଏ ନାହିଁ । ଏହା କେବଳ ଏକ ଋଣ ନେବାର ବାଧ୍ୟ ନୁହେଁ, ଏକ ସ୍ମରଣ ସାମଗ୍ରୀ ମଧ୍ୟ । ସମାଲୋଚକଙ୍କ ଦୃଷ୍ଟିରେ ବେଳେବେଳେ ଏହା ତୁଳନାତ୍ମକ ବିବେଚନାର ରୂପ ନିଏ ।

ପରମ୍ପରା-ମାନ୍ୟତା କେବଳ ଭାଷା ବା ପ୍ରଦେଶ ବିଶେଷରେ ସୀମାବଦ୍ଧ ନୁହେଁ । ଏହା ସାର୍ବଜନୀନ, ବିଶ୍ୱମୁଖୀ । ସ୍ୱୟଂ ଏଲିଅଟ୍ ମହୋଦୟ ବେଦ ଉପନିଷଦ, ଗୀତାର ପରମ୍ପରା ପ୍ରତି କମ୍ ଉନ୍ମୁଖ ନୁହଁନ୍ତି । ସାରଳା-ଜଗନ୍ନାଥଙ୍କଠୁଁ ଆରମ୍ଭକରି ରାଧାନାଥଙ୍କ ଦେଇ ଗୁରୁପ୍ରସାଦ ମହାନ୍ତିଙ୍କ ପର୍ଯ୍ୟନ୍ତ କାବ୍ୟକାରମାନେ ଅନୁହରଣ, ସମୀକରଣ ଦ୍ୱାରା ବିଭିନ୍ନ ସମୟରେ ଯେଉଁ ସମନ୍ୱୟ ପ୍ରତିଷ୍ଠା କରିଛନ୍ତି, ତାହା ପରମ୍ପରା-ମାନ୍ୟତାର ପ୍ରୋଜ୍ଜ୍ୱଳ ଉଦାହରଣ । ସବୁଜ-ସାହିତ୍ୟ ସମ୍ପର୍କରେ ହୁଏତ ସେଇଥିଲାଗି ସମାଲୋଚକ କହନ୍ତି—'ଆମ ସବୁଜ ଚେତନାଟି ଯେପରି ଅମୂଳ ତରୁ ନୁହେଁ, ଠିକ୍ ସେହିପରି ସବୁଜ କାବ୍ୟଲତାଟି ମଧ୍ୟ ସବୁଜ କବିଙ୍କ ହୃଦୟ-ଯମୁନା-ନୀରରେ ପରିପୁଷ୍ଟ ନୁହେଁ; ତା'ର ସମସ୍ତ ଜଳ ପ୍ରତ୍ୟକ୍ଷତଃ ରବିତୀର୍ଥରୁ ସଂଗୃହୀତ । (୧)

ପୁଣି କବି ବୈକୁଣ୍ଠନାଥଙ୍କ ପଲ୍ଲୀ-ପୌଷ-ଚେତନା (ବିଶେଷତଃ ଯାତ୍ରାସଙ୍ଗୀତ 'ଶିଶୁସୃଷ୍ଟି' ଆଦି କବିତା) ଭିତରେ ଶେଲିଙ୍କ Ode to the west-wind (If winter comes can spring be far behind)ର ସ୍ୱର ଶୁଣିହୁଏ । ଭକ୍ତ, ଦୀନକୃଷ୍ଣ, କବିସୂର୍ଯ୍ୟ, ଅଭିମନ୍ୟୁ, ଗଙ୍ଗାଧରଙ୍କ ରଚନାବଳୀରେ ପରମ୍ପରା-ମାନ୍ୟତାର ସ୍ୱରୂପ ଅନୁସନ୍ଧାନ କରିଯାଇପାରେ । ଏହା ଯୋଗୁଁ ପରମ୍ପରା ବିକଶିତ ହୁଏ, ନୂଆ ପରମ୍ପରା ଜନ୍ମ ନିଏ ।

## ଦୁଇ :

ସାମ୍ପ୍ରତିକ କବିତାରେ ଏ ସମ୍ପର୍କରେ ଦୃକ୍‌ପାତ କରିବା ପୂର୍ବରୁ ଆମ ଗଦ୍ୟ-ସାହିତ୍ୟରୁ କେତୋଟି ନମୁନାର ସୂଚନାମାତ୍ର ପର୍ଯ୍ୟାଲୋଚନା କରିବା । ଆମ ଗଦ୍ୟ-ସାହିତ୍ୟର ପରମ୍ପରା କବିତା ପରି ଅବଶ୍ୟ ଖୁବ୍ ପ୍ରଲମ୍ବିତ ନୁହେଁ । କଥାକାର ମନୋଜ ଦାସଙ୍କ ଗଳ୍ପରେ ଯେଉଁ ରୂପକଥା ଓ ଗାଲଗଳ୍ପ ( Fable, Fantasy )ର ଆଧୁନିକ ପ୍ରୟୋଗ ଅତ୍ୟନ୍ତ ସୁଲଭ ତାହା ପରମ୍ପରା-ମାନ୍ୟତାର ପ୍ରତିଫଳନ । ମନୋଜ ଅବଶ୍ୟ ସଂସ୍କୃତ ଲୋକଗଳ୍ପକୁ ବିଶେଷ ଭାବରେ ଗ୍ରହଣ କରିଛନ୍ତି । ଏ ପରିପ୍ରେକ୍ଷୀରେ କେତୋଟି

(୧) ସାହିତ୍ୟ ସନ୍ଧାନ, ୧୯୭୫—ଓଡ଼ିଆ କବିତାରେ ସବୁଜ ଚେତନା—ଦାଶରଥି ଦାସ

ଉଦାହରଣ ମଧ୍ୟରୁ ତାଙ୍କର 'ପ୍ରାପ୍ତବୟସ୍କଙ୍କର ପଞ୍ଚତନ୍ତ୍ର' ( ଇଂରାଜୀରେ ଗାର୍ନିକଙ୍କ ଏହି ସଙ୍କଳନର ନାମ Fables and Fantasies for Adults ) ଗଳ୍ପ (ବ୍ୟାଘ୍ର ଓ କଙ୍କଣଲୋଭୀ ପଥଚାରୀ, ମୂର୍ଖଭୃତ୍ୟ ଉପାଖ୍ୟାନ, ଆକାଶ-କଇଁଚ)କୁ ଉଦାହରଣ ଭାବେ ନିଆଯାଇ ପାରେ । କେବଳ ପଣ୍ଡିତ ବିଷ୍ଣୁଶର୍ମାଙ୍କର 'ପଞ୍ଚତନ୍ତ୍ର' ନୁହେଁ, 'ବେତାଳ ପଞ୍ଚବିଂଶତି' ଅବଲମ୍ବନରେ ତାଙ୍କର ସଦ୍ୟ ପ୍ରକାଶିତ ବହିର ନାମ ସେ ରଖିଛନ୍ତି 'ମନୋଜ ପଞ୍ଚବିଂଶତି' (୧୯୮୩) । ତାଙ୍କ ରଚନା ଢଙ୍ଗରେ ମଧ୍ୟ ଏହି ମାନ୍ୟତା ପରିଲକ୍ଷିତ ହୁଏ । ଏସବୁ ଗଳ୍ପରେ ବଡ଼ ଚମତ୍କାର ଭାବରେ ମଣିଷର ପ୍ରବୃତ୍ତିକୁ ସମକାଳୀନ ତଥା ଚିରକାଳୀନ ପରିପ୍ରେକ୍ଷୀରେ ଆଧୁନିକ ରୂପ ପ୍ରଦାନ କରାଯାଇଛି । ପ୍ରାଚୀନ କାହାଣୀ ଧାରାର ଅନୁସରଣରେ ନିତ୍ୟାନନ୍ଦ ମହାପାତ୍ରଙ୍କର 'ରାଜକନ୍ୟା' ଶୀର୍ଷକର ଗଳ୍ପମାନଙ୍କୁ ଏ ପ୍ରସଙ୍ଗରେ ସ୍ମରଣ କରାଯାଇପାରେ । ଛ'ମାଣ ଆଠଗୁଣ୍ଠର ରାମଚନ୍ଦ୍ର ମଙ୍ଗରାଜ, ରାମଚନ୍ଦ୍ର ସାହୁକାର ( ପରଜା )ରେ ରୂପାନ୍ତରିତ ହେବା ବିଷୟବସ୍ତୁ ଦୃଷ୍ଟିରୁ ଯାହା ହେଉନା କାହିଁକି ନାମକରଣ ପ୍ରସଙ୍ଗ ଦୃଷ୍ଟିରୁ ପରମ୍ପରା-ମାନ୍ୟତାର କଥା । ଭଗିଆ ସାରିଆ, ସୁକୁଜାନି କମ୍ପା ବନ୍ଦୀଦଶାକୁ ନେଇ କବିତା ରଚନା କରିବାରେ ସେଇ ଭାବ । ଫକୀରମୋହନଙ୍କ 'ରେବତୀ' ଏବଂ ଜଗଦୀଶ ମହାନ୍ତିଙ୍କ 'ରେବତୀ' ଭିତରେ କେବଳ ସମୟର ବ୍ୟବଧାନ ଖୋଜାଯାଇ ନପାରେ; ବର୍ତ୍ତମାନର ପାଠକ ଉପରେ 'ରେବତୀ'ର ଏହା ଏକ ରୂପାନ୍ତର କିମ୍ବା । ଏହାର ସାର୍ଥକତା ନିର୍ଣ୍ଣୟ ପରବର୍ତ୍ତୀ କଥା । ମହାପାତ୍ର ନୀଳମଣି ସାହୁଙ୍କ 'କପୋତ ପକ୍ଷୀ ଗୁଟୁମୋର', 'ପିଙ୍ଗଳା ସେ ଅନ୍ୟଜଣେ' ଗଳ୍ପର ନାମକରଣ ଦେଖନ୍ତୁ । ଶ୍ରୀ ସାହୁଙ୍କ ଗଳ୍ପର ପିଙ୍ଗଳା ଭାବ-ଅଭିବ୍ୟକ୍ତିରେ ଭାଗବତର ପିଙ୍ଗଳାଠାରୁ ଆନ୍ତର ପାହାଚଟିଏ ଆରୋହଣ କରିଛି । (ଆମ ପୁରାତନ କାବ୍ୟ ଓ ପୁରାଣମାନ ପଦ୍ୟାଶ୍ରିତ କାହାଣୀର ଗନ୍ତାଘର ନୁହେଁ କି ?) ଶାନ୍ତନୁ କୁମାର ଆଚାର୍ଯ୍ୟଙ୍କ 'ଭୁଲଗଳ୍ପ କରେ ?' ଗଳ୍ପ ଗୋଦାବରୀଶ ମହାପାତ୍ରଙ୍କ ରଚିତ ଗୋପବନ୍ଧୁ-ବ୍ୟକ୍ତିତ୍ୱ ବିଷୟକ ଗଳ୍ପମାନଙ୍କର ଏକ ନୂତନ ସଂସ୍କରଣ । 'ସିଦ୍ଧାର୍ଥ-କାହାଣୀ'ର ବର୍ତ୍ତମାନର ପୁନର୍ଲିଖନ ହେଉଛି ଅଖିଳ ମୋହନଙ୍କ 'ସିଦ୍ଧାର୍ଥର ଉପକଥା' ଗଳ୍ପ । ଦେବଦାସ ସୁରେନ୍ଦ୍ରଙ୍କ 'କଣ୍ଠ ଓ ନର୍ତ୍ତକୀ'ର ଗଳ୍ପ କେତୋଟି । ପ୍ରାବନ୍ଧିକ ଚିତ୍ତରଞ୍ଜନ ଦାସ ତାଙ୍କ ପ୍ରବନ୍ଧ ପୁସ୍ତକର ନାମ ରଖିଛନ୍ତି 'ଜାତିରେ ମୁଁ ଯବନ' । ଯବନ କବି ସାଲବେଗଙ୍କ ଉଦାରଭକ୍ତି ଓ ଖେଦୋକ୍ତିକୁ ଆପଣେଇ ନେବାର ସ୍ୱାଭିମାନରୁ ଏହା ସଂଭୂତ । ଏହା କହିବା ଦ୍ୱାରା ପ୍ରାବନ୍ଧିକ ନିଜକୁ ଜାତିର ଊର୍ଦ୍ଧ୍ୱରେ ରଖିଛନ୍ତି ବୋଲି ମନେହୁଏ । ସୁରେନ୍ଦ୍ର ମହାନ୍ତିଙ୍କ ଉପନ୍ୟାସର ନାମ ସେଇଭଳି 'ନୀଳଶୈଳ', 'ନୀଳାଦ୍ରି ବିଜୟ' । ଆମର ଐତିହାସିକ ଓ ପୌରାଣିକ ନାଟକମାନଙ୍କୁ ପର୍ଯ୍ୟାଲୋଚନା କଲେ ପରମ୍ପରା-ମାନ୍ୟତାର ସ୍ୱରୂପ ସ୍ପଷ୍ଟ ହେବ । ମନେହେବ ଯେ ପୂର୍ବବର୍ତ୍ତୀ ଲେଖକଙ୍କଠାରୁ ପରବର୍ତ୍ତୀ ଲେଖକ ଯେମିତି ଆଉ ପାଦେ ଆଗେଇ ଯାଇଛି । କବିଚନ୍ଦ୍ର କାଳୀଚରଣଙ୍କ

'ଅଭିଯାନ' ନାଟକ ଭିତରେ 'କାଞ୍ଚିକାବେରୀ' କାବ୍ୟ ଏବଂ ନାଟକ ( ରାମଚନ୍ଦ୍ରଙ୍କର ରଚନା ) ପରମ୍ପରା-ମାନ୍ୟତା ନ୍ୟାୟରେ ଜାଗାପାଉ ବସିଛନ୍ତି । ପ୍ରମୁଖ ଗୀତିନାଟ୍ୟ ଲେଖକ ବୈଷ୍ଣବପାଣି ଏବଂ ବାଳକୃଷ୍ଣ ମହାନ୍ତିଙ୍କ ଗୀତାଭିନୟକୁ ଅଧିକ ମାର୍ଜିତ ନାଟ୍ୟରୂପ ଦେବାରେ ତଥା ମୌଳିକ ଗୀତିନାଟ୍ୟ ରଚନା କରିବାରେ ଗୋପାଳ ଛୋଟରାୟଙ୍କ ଭୂମିକା ଅନସ୍ୱୀକାର୍ଯ୍ୟ । ଏକ ତୁଳନାତ୍ମକ ବିବେଚନା ଦ୍ୱାରା ଶ୍ରୀ ଛୋଟରାୟଙ୍କ ନାଟ୍ୟ-ପରମ୍ପରାରୁ ଋଣ ଗ୍ରହଣ କରିବା କଥା ସ୍ପଷ୍ଟ ହୋଇପାରିବ । ଗଦ୍ୟ ନାଟକରେ ଆବଶ୍ୟକତା ଦୃଷ୍ଟିରୁ ଗୀତିନାଟ୍ୟର ସଂଯୋଜନା ମଧ୍ୟ ସାହିତ୍ୟର ପରମ୍ପରା-ମାନ୍ୟତାର କଥା । ପରବର୍ତ୍ତୀ ଲେଖକ କିଛି ଉପାଦାନ ଗ୍ରହଣ କରୁ ବା ନକରୁ ପୂର୍ବବର୍ତ୍ତୀ ସୃଷ୍ଟି ସମ୍ପର୍କୀୟ ଧାରଣା ଏବଂ ତା' ପ୍ରତି ମାନ୍ୟତା ନିଜ ରଚନାକୁ ସମୃଦ୍ଧ କରିଥାଏ । ସାହିତ୍ୟର ପରମ୍ପରା-ମାନ୍ୟତା ପ୍ରସଙ୍ଗରେ ଗଦ୍ୟ ସାହିତ୍ୟର ବିପୁଳ ସୃଷ୍ଟି ମଧ୍ୟରୁ କେତୋଟି ପରିଚିତ ରଚନାର ସୂଚନାତ୍ମକ ନମୁନା ମାତ୍ର ଉପସ୍ଥାପନ କରାଯାଇଛି । ସାହିତ୍ୟର ପରମ୍ପରା-ମାନ୍ୟତା ପ୍ରସଙ୍ଗକୁ ବୋଧ୍ୟ କରାଇବାରେ ଏହା ସହାୟକ ହେବ ବୋଲି ଲେଖକ ଆଶା କରୁଛି ।

ତିନି :

କବିତାରେ ପରମ୍ପରା-ମାନ୍ୟତା ପ୍ରସଙ୍ଗକୁ ପ୍ରବେଶ କରିବା ଆଗରୁ ମୁଁ କହିରଖେଁ ଯେ ଏ ଆଲୋଚନାଟି କବିତାର ଏକାନ୍ତ ତାତ୍ତ୍ୱିକ ବା ବିଶ୍ଳେଷଣାତ୍ମକ ଅନୁଶୀଳନ ନୁହେଁ; ଏହା ପୂର୍ଣ୍ଣତଃ ସମ୍ବାଦଧର୍ମୀ ଓ ସୂଚନାକେନ୍ଦ୍ରିକ । ବିଭିନ୍ନ ଉଦାହରଣରେ ସଂକ୍ଷିପ୍ତ ବିଶ୍ଳେଷଣ ଦ୍ୱାରା ଏହାର ସ୍ୱରୂପର ଏକ ପରିଚୟ ପ୍ରଦାନ କରାଯାଇଛି । ଉଦାହରଣରେ ଅନେକ ପରିଚିତ କବିତା ଓ ତା'ର ପଂକ୍ତି ମଧ୍ୟ ରହିଛି ।

[କ] କବିତାର ପରମ୍ପରା-ମାନ୍ୟତାର ବହୁ ପ୍ରସଙ୍ଗ ଭିତରୁ 'ପୌରାଣିକ ଆଖ୍ୟାନ' (Myth) ପ୍ରୟୋଗ ଏକ ଉଲ୍ଲେଖଯୋଗ୍ୟ ପ୍ରସଙ୍ଗ । ଏହାର ବିଶେଷତ୍ୱ ହେଉଛି ପୌରାଣିକ ଚରିତ୍ରମାନେ ତହିଁରେ ଚରିତ୍ରରୂପେ ଠିଆ ହୁଅନ୍ତି । ଅତୀତର ରୂପ ବା ଦୃଶ୍ୟ ବର୍ତ୍ତମାନରେ ମିଶିଯାଇ ଏକାତ୍ମ ହୋଇଯିବାର ଏଷଣା ପ୍ରଦାନ କରେ । ମଥୁରାର ମଙ୍ଗଳ ପାଇଁ ଶ୍ରୀକୃଷ୍ଣ ଜନ୍ମ ପ୍ରସଙ୍ଗଟି ଅତି ଜଣାଶୁଣା ଆଖ୍ୟାନଟିଏ । ପୁରାଣ କବିଠୁଁ ଭକ୍ତଚରଣ, କବିସୂର୍ଯ୍ୟଙ୍କ ଯାଏଁ ଏହାର ଧାରା ପ୍ରଲମ୍ବିତ । ଏ ପ୍ରସଙ୍ଗ ବର୍ଣ୍ଣନାରେ କବିଏ ଆପଣାର ଉତ୍କର୍ଷ ପ୍ରମାଣ କରିଛନ୍ତି । ସାମ୍ପ୍ରତିକ କବିତାରୁ ଆମେ ତିନୋଟି ଉଦାହରଣ ନେଇ ଏ ପ୍ରସଙ୍ଗର ଏକ ତୁଳନାତ୍ମକ ବିଚାର କରିବା । ଏ କବିତାମାନଙ୍କ ଭାବ-ସାମ୍ୟ ଏବଂ ପରମ୍ପରା-ମାନ୍ୟତା ଅନସ୍ୱୀକାର୍ଯ୍ୟ । କବିତା ତିନୋଟି ହେଉଛି, 'କୁବୁଜାପାଇଁ ଗୋଟିଏ ସଙ୍ଗୀତ' ( ସୀତାକାନ୍ତ ମହାପାତ୍ର ), 'କାରାପ୍ରବେଶ' ( ଦୀପକ ମିଶ୍ର ) ଏବଂ 'ଦେବକୀ'

( ପ୍ରତନ୍ତ୍ର ଶରଣାର୍ଥୀ ) । ବିଷୟବସ୍ତୁ ପ୍ରାୟ ସମାନ । ଉତ୍ସ ଏକ । କିନ୍ତୁ ଭିନ୍ନ ପରିବେଶ । ତାତ୍ପର୍ଯ୍ୟ ପ୍ରାୟ ଏକ । କହିବାର ବାଗରେ ଭିନ୍ନତା ରହିଛି । ମୂଳଉତ୍ସରୁ ପ୍ରସଙ୍ଗଟି ଅଧିକ ବ୍ୟାପ୍ତ ଓ ସମ୍ପ୍ରସାରିତ ହୋଇଛି । ଏହା ତତ୍ତ୍ୱ, ଅଲୌକିକତାରେ ସୀମାବଦ୍ଧ ନ ହୋଇ ବିପୁଳ ଜୀବନକୁ ସ୍ପର୍ଶ କରିଛି । ମଥୁରାରେ ମଙ୍ଗଳ ଚେତନା ପ୍ରସରିବ—ଏହାହିଁ ସ୍ୱର । ମଥୁରା ଆଉ ସ୍ଥାନବିଶେଷ ନୁହେଁ । ସେତେଜ ଆମରି ପୃଥିବୀ । ଏଣୁ କୁବୁଜାର ଯନ୍ତ୍ରଣା, ବସୁଦେବର ଯନ୍ତ୍ରଣା ଏବଂ ଦେବକୀର ଯନ୍ତ୍ରଣା ସବୁ ସମାନ । ଗୋଟିଏ ଯନ୍ତ୍ରଣା । କୃଷ୍ଣହିଁ ଯନ୍ତ୍ରଣାରୁ ଉତ୍ତୀର୍ଣ୍ଣ କରାଇବେ । ଏଣୁ ସବୁଥିରେ ଯନ୍ତ୍ରଣା ଓ ନୈରାଶ୍ୟରୁ ଉତ୍ତୀର୍ଣ୍ଣ ହେବା ପାଇଁ ବ୍ୟାକୁଳ ପ୍ରତୀକ୍ଷାର ସ୍ୱର । ତିନୋଟି ଚରିତ୍ର ଏବଂ ସେମାନଙ୍କର ଆଶା ଗୋଟିଏ ବିନ୍ଦୁରେ ଏକାଠି ହୋଇଯାଇଛି । ସମସ୍ତେ ପାଳିଛନ୍ତି ଏକ ବେଦନାଜର୍ଜରିତ କାତର ପୃଥିବୀ । 'ଦେବକୀ'ରେ ଦେବକୀ ଏକ ଯନ୍ତ୍ରଣାକ୍ଲିଷ୍ଟ, ଏକ ଆକୁଳତା, ଏକ ପୃଥିବୀ । 'କାରାପ୍ରବେଶ'ର ବସୁଦେବ ଅସହାୟ, ସେ ମାୟା ଓ ବାସ୍ତବତାକୁ ଗୋଟିଏ ବିନ୍ଦୁରେ ଆଣିପାରେନା । ଏ କବିତାଟି ପ୍ରତୀକ୍ଷାରୁ ଏକ ଉତ୍ତରଣ ଅବସ୍ଥାକୁ ଗତିକରିଛି । ଉତ୍ତରଣ ଅବସ୍ଥା ଏକ ପରିପୂର୍ଣ୍ଣ ସମର୍ପିତ ସ୍ତବକ । 'କୁବୁଜାପାଇଁ ଗୋଟିଏ ସଙ୍ଗୀତ'ର କୁବୁଜା ଯେମିତି ସ୍ୱୟଂ ତ୍ରିଭଙ୍ଗ, ତେଢ଼ଙ୍ଗ ମଥୁରା ନଗରୀ । କୃଷ୍ଣ ଆସିବେ । କୃଷ୍ଣ ଯେମିତି ଆଉ ଚରିତ୍ର ନୁହଁନ୍ତି । ଏକ ଚେତନା । ଅତ୍ୟାଚାରୀ କଂସର ବିନାଶ ହେବା ପର୍ଯ୍ୟନ୍ତ ପ୍ରସଙ୍ଗ ଏ କବିତା-ସମୂହରେ ଜନ୍ମି ନାହିଁ । କଂସ-ଚେତନାର ମୃତ୍ୟୁ ଅନିବାର୍ଯ୍ୟ ବୋଲି ବିଶ୍ୱାସଟିଏ ଇ ତିଆରି ହୋଇଛି । ଏ କବିତାସମୂହ ପୁରାଣର କାହାଣୀକୁ ରୂପଦେଇଛି । ବର୍ତ୍ତମାନର ଜ୍ୱାଳାକୁ ବି ଅଙ୍ଗୀକାର କରିଛି । କଂସ ଚେତନାର ଅବସାନ ପାଇଁ କୃଷ୍ଣ-ସଙ୍ଗୀତ ଲୋଡ଼ା । ଆମ ଭିତରେ ଆମେ ବସୁଦେବ, ଦେବକୀ ଏବଂ କୁବୁଜାକୁ ଖୋଜି ପାଉ । ତିନୋଟି ଉଦ୍ଧୃତି ଉପସ୍ଥାପନ କରାଯାଉ । ପୂର୍ବବର୍ତ୍ତୀ କବିଙ୍କ ରଚନା ସହିତ ଏ କବିତାମାନଙ୍କୁ ମିଳେଇ ସାମ୍ୟ, ବୈଷମ୍ୟ, ସ୍ୱକୀୟତା ସର୍ବୋପରି ପରମ୍ପରା-ମାନ୍ୟତାର ରୂପ ସନ୍ଦର୍ଭରେ ଅଧ୍ୟୟନ କରି ହେବ ।

୧ । ମାଟି ମୋ କର୍ଷଣ ସହେ/ଲଙ୍ଗଳ ବୋହିଯାଉଥିବା ଗାଈଟିଏ ପରି ନଇଁପଡ଼େ
ମଥୁରା ନଗରୀ × × × ତୁ କ'ଣ ଆସିବୁ ସତେ ଲଙ୍ଗଳ ସବୁ
ଶୁଖିଗଲା ପରେ ?/ଗୁହାରୁ ଚନ୍ଦନ ସବୁ ମଉଳିଗଲେ ?

(ଦେବକୀ)

୨ । କ୍ଲାନ୍ତ ମୟୂରର ଦଳ/ଭଲ ନଇଁ ଡାକୁଛି ସୋହାଗରେ, ଆସ ଗିରିବାସୀ/ଆସ
ବସୁଦେବ, ଆସ ଦେବକୀ, ଯଶୋଦା, ଆସ ପଶୁପକ୍ଷୀ, ରାତିର ଦୁଃସ୍ୱପ୍ନ ଯେତେ
ଧୋଇଦିଅ ରାତି-ଲୁଗା ଧୋଇନେବା ପରି × × × କାଲି ସନ୍ଧ୍ୟା

ପୂର୍ବେ ଯାହା ଥିଲି ଏଠି ଏକ ଧୂଣାଗଛ ସେ ଆଜି ଅବିନତ କଦମ୍ବ ସ୍ୱରରେ, ସମର୍ପଣ ଜଣାରେ, ବିଶ୍ୱେର ଫୁଲଙ୍କର ଶ୍ରେଷ୍ଠ ଦେହ × × × ।

(ଜନ୍ମାପ୍ରବେଶ)

ଗ । ହେ ପରମ ଆଦ୍ୟମୂଳ/ଆଜି ଶେଷ ମୁକ୍ତି ମାଗେ/ଅଭିଶପ୍ତ ମଥୁରାର ବନ୍ଦୀ ନଗରୀର/ତୋ' ଚରଣରେଣୁ ସ୍ପର୍ଶେ/ଝରିଯାଉ ଜୀବନର ଅସାର ନିର୍ମୋକ/ଶେଷ ହେଉ ଧୂସରର ମୃତ୍ୟୁ ଅଭ ବିଭଙ୍ଗ କାଳର/ଅନ୍ତ ହେଉ ଅଶ୍ଳୀଳ ଓ କୁତ୍ସିତର ଘୃଜପୂଜା/ଶୁଖିଲା ଆକାଶେ ଜାଗୁ ମେଘମାଳା, ହାଣ୍ଡି କଳା ଘୁମର ଘୁମର !

( କୁବୁଜା ପାଇଁ ଗୋଟିଏ ସଙ୍ଗୀତ )

ଏ କବିତାମାନଙ୍କରୁ କାବ୍ୟ-ପୁରୁଷର ଋତ୍ତରଗତ ଭାବ ମଧ୍ୟ ଲକ୍ଷ୍ୟ କରାଯାଇ-ପାରେ ।

ପୁରାଣର ଅକ୍ରୂର-ଉଦ୍ଧବ ଚରିତ କୃଷ୍ଣପ୍ରେମ ଓ କୃଷ୍ଣଭକ୍ତିର ସଫଳ ନିଦର୍ଶନ । ଏହା ମଧ୍ୟଦେଇ କବିଙ୍କ ଆଧ୍ୟାତ୍ମିକତା ମଧ୍ୟ ପ୍ରତିଫଳିତ ହୋଇଛି । କିନ୍ତୁ ଗୁରୁପ୍ରସାଦଙ୍କ 'ଅକ୍ରୂର ଉବାଚ' କିମ୍ବା 'କାଳପୁରୁଷ'ର 'ହେ ଅକ୍ରୂର, ହେ ଉଦ୍ଧବ' ଉଚ୍ଚାରଣ ମାଧ୍ୟମରେ କେବଳ କବିଚିତ୍ତର ଉତ୍ତରଣ ପାଇଁ ବ୍ୟାକୁଳତା ନାହିଁ, ଅଧିକ ଭାବରେ ସାମ୍ପ୍ରତିକ ସମୟର ଯନ୍ତ୍ରଣା ଏଠି ବ୍ୟାପକ ରୂପ ନେଇଛି । ଗୁରୁପ୍ରସାଦଙ୍କ 'ମୁଁ' ଏଣୁ ବ୍ୟାପକ, ଯୁଗମାନସର ପ୍ରତିନିଧି । ଅକ୍ରୂର-ଉଦ୍ଧବଙ୍କ ହାତଧରି କେବଳ ନିଜ ପାଇଁ ନୁହେଁ, କବିଙ୍କ ସମୟର ଜ୍ୱାଳା ପାଇଁ ମଧ୍ୟ ଆଶ୍ୱାସନା ଖୋଜିବାକୁ ପଡ଼ିବ । ଏ ବ୍ୟାକୁଳତା ଓ ପ୍ରାଚୀନ କବିର ବ୍ୟାକୁଳତାରେ ଫରକ ଅଛି । ଭାଗବତକାରଙ୍କ 'ପିଙ୍ଗଳା' ବେଶ୍ୟାଧର ଗୁରୁଙ୍କ 'ପିଙ୍ଗଳାର ଗୀତ' ଏବଂ 'ପିଙ୍ଗଳାର ସ୍ୱର୍ଗ'ରେ ଆତ୍ମପ୍ରକାଶ କରିଛି । ଅବଧୂତର ବିଭିନ୍ନ ଗୁରୁଙ୍କ ମଧ୍ୟରୁ ପିଙ୍ଗଳାବେଶ୍ୟା ଜଣେ । ଇନ୍ଦ୍ରିୟ ସମ୍ଭୋଗରେ ବିକଳ ବର୍ଦ୍ଧିତ ତୃଷ୍ଣା ଭିତରେ ତା'ର ଆତ୍ମାପୁରୁଷ ଏକଦା ଇନ୍ଦ୍ରିୟାତୀତ ସ୍ଥିତିକୁ ଆରୋହଣ କରିଛି । ହୃଦୟ ଭିତରେ ଏକ ଦିବ୍ୟ ଚେତନାର ଉଦୟ, 'ପରମପୁରୁଷ' ସହିତ ଏକାତ୍ମ ହେବାର ଅନିର୍ବଚନୀୟ ଅନୁଭବ । ଏଣୁ 'ପିଙ୍ଗଳାର ସ୍ୱର୍ଗ'ରେ ପିଙ୍ଗଳାର ଉତ୍ତରଣ ଭିତରେ କବି-ଚିତ୍ତର ଉତ୍ତରଣ ସହଜ ଲକ୍ଷ୍ୟ । କିନ୍ତୁ କବିତାର ଅର୍ଥଅନ୍ୱେଷା ସେଇଠି ଅଟକି ନାହିଁ । ପିଙ୍ଗଳାର ସାଧନା ଓ ବ୍ୟାକୁଳତା ଭିତରେ ଭୋଗ-ପୀଡ଼ିତ, ଆଧ୍ୟାତ୍ମିକ-ଅନୁଭୂତି ବିରହିତ ସାମ୍ପ୍ରତିକ ଲୋକମାନଙ୍କର ଆତ୍ମାର ବିଷାଦ, ବ୍ୟର୍ଥତା ଓ ବ୍ୟାକୁଳତାର ରୂପ ଦେଖିହୁଏ । ଏହା ଏକ ଚମତ୍କାର ରୂପାନ୍ତର । ଅତଏବ ପରମ୍ପରା-ମାନ୍ୟତା ଏକ ରୂପାନ୍ତର । ନୂଆଭାବରେ ଉଦ୍‌ଭାସିତ ହେବା, ଝଲିବା, ପାପ-ସଚେତନତା ଓ ଅସହାୟତା ସମ୍ପର୍କରେ

ଗୁରୁପ୍ରସାଦଙ୍କ ପରିଚିତ ବିଶିଷ୍ଟ ଉକ୍ତିଟିଏ ଆମକୁ ଭାଗବତକାରଙ୍କ ଉକ୍ତି 'କର୍ମକଷଣେ ଦେହ ସହେ/ଅରଣ୍ୟେ ଅଜଗର ପ୍ରାୟେ' ତଥା ଚନ୍ଦ୍ରଭାନୁ, ଲବଣ୍ୟବତୀ, ପୁଷ୍ପବତୀଗଣିକା ସହ ଏକାତ୍ମ କଥିତ ପରମ୍ପରାକୁ ବର୍ତ୍ତମାନ ପରିପ୍ରେକ୍ଷୀରେ ନୂଆରୂପ ଦେବାର ଚିହ୍ନଟିଏ ପ୍ରଦାନ କରେ ।

> 'ଅରଣ୍ୟର ଅଜଗର/ମୁଁ ରହେ ଅଥର୍ବସ୍ଥିର/ମୁଁ ସହେ କଷଣ ଲକ୍ଷ ଦେହ ଆଉ ମନ ଓ ଆତ୍ମାର/ମୋ ଦେହରେ ଗନ୍ଧ ପୁଣି ପୁଷ୍ପବତୀ ଗଣିକାର/ଚନ୍ଦ୍ରଭାନୁ ହୁଙ୍କାର ଓ ଈଷିକାର ଲବଣ୍ୟବତୀର/ଗୋମାଂସର ଗନ୍ଧ ପୁଣି ମଦମତ୍ସ୍ୟ ନାସ୍ତିଗନ୍ଧ/ମୋ ଦେହରେ ପୃଥିବୀର ଯାଯାବର ଆଲୋକ ଅନ୍ଧାର ।' (ସମୁଦ୍ରସ୍ନାନ)

ଶୂଦ୍ରମୁନି ସାରଳାଦାସଙ୍କ 'ଦୁର୍ଯ୍ୟୋଧନଙ୍କ ରକ୍ତନଦୀ ସନ୍ତରଣ' ପରମ୍ପରା-ମାନ୍ୟତା ପ୍ରସଙ୍ଗର ଆଉ ଏକ ବଳିଷ୍ଠ ନମୁନା । ସାରଳା ଦାସଙ୍କ ବହୁ ଚମତ୍କାର ମୌଳିକ ସଂଯୋଜନା ମଧ୍ୟରୁ ଏହା ଗୋଟିଏ । ସାରଳାଙ୍କ 'ରକ୍ତନଦୀ' ମହାଭାରତର ଏକ ବାସ୍ତବ ପ୍ରସଙ୍ଗ ନୁହେଁ, ପ୍ରତୀକ ମାତ୍ର । ମୃତ୍ୟୁର ଭୟାବହତା, ଜୀବନର ମୋହ ଓ ଅସହାୟତା ଏବଂ ଜୀବନ-ବିଡ଼ମ୍ବନା (ପୁତ୍ରର ଶବଦ୍ୱାରା ପିତା ରକ୍ତନଦୀ ପାରିହେବା) ଇତ୍ୟାଦି ଭାବ ରକ୍ତନଦୀ ପ୍ରତୀକ ଭିତରେ ପ୍ରକଟିତ । କବିବର ରାଧାନାଥ ରାୟ ପ୍ରଥମକରି ଏ ପ୍ରସଙ୍ଗଟିକୁ ଅମିତ୍ରାକ୍ଷର ଛନ୍ଦରେ ପୁନର୍ଲିଖନ କରିଛନ୍ତି । ରାଧାନାଥ ପ୍ରସଙ୍ଗଟିକୁ କିଛି ସମ୍ପ୍ରସାରିତ କରିଛନ୍ତି । ସାରଳାଙ୍କ ସାଦା ବର୍ଣ୍ଣନାକୁ ଅଧିକ ଗାମ୍ଭୀର୍ଯ୍ୟ ଦେଇଛନ୍ତି । ତହିଁରେ ରାଧାନାଥ ଏ ପ୍ରତୀକଟିକୁ ବାସ୍ତବ ଏବଂ ଘଟଣାମୟ ରୂପ ପ୍ରଦାନ କରିଛନ୍ତି । (ବହୁ କାବ୍ୟରେ କଳ୍ପନାର କାହାଣୀ ବା କିମ୍ବଦନ୍ତୀକୁ ଜୀବନ୍ତ ଓ ସତ୍ୟ ଘଟଣାରେ ପରିଣତ କଲାପରି) ତାଙ୍କ ମତରେ କୁରୁକ୍ଷେତ୍ରର ରଣପ୍ରାଙ୍ଗଣ ସନ୍ନିକଟ କଙ୍କରିଲ ପାର୍ବତ୍ୟ ପ୍ରଦେଶରେ ପ୍ରବଳ ବୃଷ୍ଟିପାତ ଯୋଗୁଁ ଏକ ନଦୀ ସ୍ରୋତର ଉଦ୍‌ଭବ ହୋଇଛି । ଅସଂଖ୍ୟ ମୃତଦେହଙ୍କ ରକ୍ତରେ ତାହା ରକ୍ତନଦୀର ରୂପ ନେଇଛି । ଶତ୍ରୁପକ୍ଷ ଦ୍ୱାରା ଆକ୍ରାନ୍ତ, ଆତ୍ମରକ୍ଷା ନିମିତ୍ତ ପଳାୟନରତ ଦୁର୍ଯ୍ୟୋଧନ ସେ ନଦୀ ଅତିକ୍ରମ କରିବାର ପ୍ରଚେଷ୍ଟା କରିଛି । ଏ ପ୍ରକାର ଚିତ୍ରଣଦ୍ୱାରା କବିବର ଶୂଦ୍ରମୁନିଙ୍କ ପ୍ରସଙ୍ଗରେ ଅଧିକ ନାଟକୀୟତା ଆରୋପ କରିଛନ୍ତି ଏବଂ ପାଠକମାନଙ୍କୁ ଅଧିକ ଚକିତ କରିବାର ସୁଯୋଗ କରିଛନ୍ତି । କିନ୍ତୁ ସୌରୀନ୍ଦ୍ର ବାରିକ୍ ଏବଂ ସୀତାକାନ୍ତ ମହାପାତ୍ର ପ୍ରସଙ୍ଗଟିକୁ ପ୍ରତୀକ ସ୍ତରରେ ନେଇଛନ୍ତି । ସୌରୀନ୍ଦ୍ର ବାରିକ୍‌ଙ୍କର 'ରକ୍ତନଦୀ କୂଳେ'ରେ ସାରଳା ଦାସଙ୍କ କାହାଣୀ ନାହିଁ; କିନ୍ତୁ ଉକ୍ତ କବିତାର ଭାବ ନିର୍ଯ୍ୟାସର ଏକ ସମ୍ପ୍ରସାରଣ ଘଟିଛି । ଦୁର୍ଯ୍ୟୋଧନଙ୍କ ଅସହାୟତା ଏଠାରେ ପ୍ରମୂର୍ତ୍ତ । ଶ୍ରୀ ମହାପାତ୍ରଙ୍କ 'ଅଷ୍ଟପଦୀ' (୧୯୬୭)ରେ ସଂଯୋଜିତ 'ରକ୍ତନଦୀ ସନ୍ତରଣ ପରେ' କବିତାରେ କାବ୍ୟନାୟକର ସ୍ଥିତିର କଥା କୁହାଯାଇଛି । ସେ ଠିକ୍ ଦୁର୍ଯ୍ୟୋଧନଙ୍କ ପରି ଯା'ର ଆଉ ଅତୀତ ନାହିଁ, ଭବିଷ୍ୟତ ଆଶ୍ରାହୀନ, ବର୍ତ୍ତମାନ ଯନ୍ତ୍ରଣାକ୍ତ । ଦୁର୍ଯ୍ୟୋଧନର ଅଭିଶପ୍ତ ଅସହାୟତା ପରି କାବ୍ୟନାୟକର ସ୍ଥିତି । ଏ ପ୍ରସଙ୍ଗର ପରବର୍ତ୍ତୀ ଉଦାହରଣ

ଏଇ ଲେଖକଙ୍କର 'ଦୁର୍ଯ୍ୟୋଧନଙ୍କ ରକ୍ତନଦୀ ସନ୍ତରଣ' (ଇସ୍ତାହାର, ୨୭-୧୯୮୪)। ଏଥିରେ ରକ୍ତନଦୀର ପ୍ରତୀକକୁ କେତୋଟି ଦିଗରୁ ସମ୍ପ୍ରସାରିତ କରାଯାଇଛି। ରକ୍ତ-ନଦୀ କୂଳରେ ଜୀବନ ଆଉ ମୃତ୍ୟୁ, ଶତ୍ରୁ ଆଉ ଆତ୍ମୀୟ, ପିତା ଆଉ ପୁତ୍ର ଭିତରେ କୌଣସି ପାର୍ଥକ୍ୟ ନାହିଁ। ରକ୍ତନଦୀ ପ୍ରସଙ୍ଗରେ ଉପରୋକ୍ତ କବିତାମାନଙ୍କର ବିଶ୍ଳେଷଣ ଦ୍ୱାରା ଆମ ପରମ୍ପରା-ମାନ୍ୟତାର ଋଣଗ୍ରହଣ ଓ ସମୃଦ୍ଧିକରଣ ବିଷୟ ସ୍ପଷ୍ଟ ହୋଇପାରିବ। ଏଠାରେ ଉଲ୍ଲେଖ କରାଯାଇପାରେ ଯେ ମହାଭାରତର ବିଭିନ୍ନ ପ୍ରସଙ୍ଗକୁ ସାମ୍ପ୍ରତିକ ତଥା ଚିରନ୍ତନ ପରିପ୍ରେକ୍ଷୀରେ ବିଶ୍ଳେଷଣ ଓ ନବୀକରଣ କରି କବି ସୌରୀନ୍ଦ୍ର ବାରିକ 'ଉପଭାରତ' କବିତାଗ୍ରନ୍ଥ ରଚନା କରିଛନ୍ତି। ମୂଳ ମହାଭାରତ ସହିତ ଏହାର ତୁଳନାତ୍ମକ ଅଧ୍ୟୟନ ଲୋଡ଼ା।

ସେହିପରି ରାଧା-କୃଷ୍ଣ ପ୍ରସଙ୍ଗ ଆମ ପୁରାଣ ଓ କାବ୍ୟ ସାହିତ୍ୟର ମୂଳ ଓ ସର୍ବଶ୍ରେଷ୍ଠ ପ୍ରସଙ୍ଗ। ବିଭିନ୍ନ ସମୟରେ ଯୁଗୀୟ ଧ୍ୟାନ ଧାରଣାରେ ଏମାନଙ୍କ କଳେବର ପରିବର୍ତ୍ତିତ ହୋଇଛି। ରମାକାନ୍ତ ରଥଙ୍କର 'ଶ୍ରୀରାଧା' ଏ ପରମ୍ପରାର ଏକ ନୂତନ ସଂଯୋଜନା। ପ୍ରାଚୀନକାବ୍ୟ ଅଭ୍ୟସ୍ତ ପାରମ୍ପରିକ ପାଠକମାନଙ୍କୁ ଏ ନାମକରଣ ଓ ସଂଯୋଜନା ଆଶ୍ଚର୍ଯ୍ୟ ମନେ ହୋଇପାରେ। 'ଶ୍ରୀରାଧା'କୁ ପଢ଼ିଲେ ମନେହୁଏ ଏହାର ରାଧା-କୃଷ୍ଣ ସାଧାରଣ ମଣିଷପରି କେତେ ଅନ୍ତରଙ୍ଗ। ଏ କାବ୍ୟର କାନ୍‌ଭାସ ଜଟିଳ। ରାଧା-କୃଷ୍ଣ ଚେତନାକୁ ଏଠାରେ ବହୁ ଦିଗରୁ ସମ୍ପ୍ରସାରିତ କରାଯାଇ ତାକୁ ଏକାନ୍ତ ଲୌକିକ, ସାମାଜିକ ଓ ବାସ୍ତବ ଜୀବନଧର୍ମୀ ସ୍ତରକୁ ନେଇଯିବାର ପ୍ରଚେଷ୍ଟା କରାଯାଇଛି। ରମାକାନ୍ତଙ୍କ ମୁଖ୍ୟସ୍ୱର ବିଷାଦ ଓ ଉତ୍ତରଣ ପ୍ରୟାସ ଏଥିରେ ସହଜ ଲକ୍ଷ୍ୟ। ସୀତାକାନ୍ତ ମହାପାତ୍ରଙ୍କ 'ପରକୀୟା' ଦୀର୍ଘକବିତା, ସୁରେଶ ପରିଡ଼ାଙ୍କ 'କାହ୍ନୁ' ଏ ପରିପ୍ରେକ୍ଷୀରେ ଉଦାହରଣ ଭାବେ ନିଆଯାଇପାରେ।

ମୂଳ ପ୍ରସଙ୍ଗ ସହିତ ସମକାଳୀନ ସ୍ରଷ୍ଟାମାନଙ୍କ ପ୍ରତିକ୍ରିୟା କେଉଁ ପରିବର୍ତ୍ତିତ ରୂପ ଘେନିଛି ତାହା ଏଇ ପରିପ୍ରେକ୍ଷୀରେ ଅଧିକ ଆଲୋଚ୍ୟ। ରମାକାନ୍ତ ରଥଙ୍କ 'ଯଶୋଦା' (ସପ୍ତମ ଅଶ୍ୱାରୋହୀ) ଏବଂ ସୀତାକାନ୍ତ ମହାପାତ୍ରଙ୍କ 'ଆରଣ୍ୟକ'ର 'ଯଶୋଦା' ଏକ, ପୁଣି ଏକ ନୁହନ୍ତି। ମୂଳ ଯଶୋଦାଙ୍କର ଏହା ପରବର୍ତ୍ତୀ ରୂପ। ସେହିପରି ସୀତାକାନ୍ତଙ୍କ 'ଲକ୍ଷ୍ମଣ' ଏବଂ ପ୍ରମୋଦ କୁମାର ମହାନ୍ତିଙ୍କ 'ଲକ୍ଷ୍ମଣ ସମ୍ପର୍କରେ' (ଦେଶାଯାଦ, ୧୯୮୧) ଦୁଇଟି ମୌଳିକ ଉଦାହରଣ। ମୂଳ ପ୍ରସଙ୍ଗକୁ କେନ୍ଦ୍ରକରି, ସମ୍ପ୍ରସାରିତ କରି, ପରିବର୍ତ୍ତନ କରି ଆମ ପୁରାଣ ଓ କାବ୍ୟର ବହୁ ଚରିତ୍ର (ଦ୍ରୌପଦୀ, ଅହଲ୍ୟା, ଜରତ୍କା, ଶକୁନ୍ତଳା, ସୀତା, ହିରଣ୍ୟକଶିପୁ, ଅଭିମନ୍ୟୁ, ରାବଣ ଇତ୍ୟାଦି)ଙ୍କୁ ସାମ୍ପ୍ରତିକକାଳର କବିତାରେ ରୂପ ଦିଆଯାଇଛି। ଏ ପ୍ରସଙ୍ଗରେ ସ୍ୱତନ୍ତ୍ର ପ୍ରବନ୍ଧର ଆବଶ୍ୟକତା ରହିଛି।

[ଖ] ପରମ୍ପରା-ମାନ୍ୟତାର ଆଉ ଏକ ଭାଗ ହେଉଛି ପୂର୍ବବର୍ତ୍ତୀ କବିଙ୍କ ଉଦ୍ଧୃତ ଉଲ୍ଲେଖ କରି କବିତା ରଚନା କରିବା । ଉଦ୍ଧୃତଟି କବିତାପାଇଁ ମୂଳ କେନ୍ଦ୍ର ବା ପିଣ୍ଡ ରୂପେ କାର୍ଯ୍ୟ କରେ । ଉଦ୍ଧୃତ ଉକ୍ତିଟି ଖୁବ୍ ଶକ୍ତିଶାଳୀ ହୋଇପାରେ କିମ୍ବା ପରବର୍ତ୍ତୀ କବିତାର ଆଭିମୁଖ୍ୟକୁ ଖାଲି ପ୍ରକଟିତ କରି ପାରୁଥିଲେ ଚଳେ । ଏହା ପରବର୍ତ୍ତୀ କବିତାର କେନ୍ଦ୍ରବିନ୍ଦୁ ହୋଇପାରେ । ପରବର୍ତ୍ତୀ କବିତାର ବକ୍ତବ୍ୟକୁ ସମ୍ପ୍ରସାରିତ ରୂପ ଦେଇପାରେ । ଉଦ୍ଧୃତ ଅନେକ ସମୟରେ ସ୍ୱତନ୍ତ୍ର କବିତା ନିର୍ମାଣ କରିଥାଏ । ମୋଟା-ମୋଟି ଏହା ଏକ ସହାୟକ-ସାମଗ୍ରୀ । ଓଡ଼ିଆ କବିତାରେ ଯପତଜ ଇଂରାଜୀ ଓ ସଂସ୍କୃତ ଉଦ୍ଧୃତ ମୂଳ କବିତା ପ୍ରାରମ୍ଭରେ ସଂଯୋଜିତ ହୋଇଥିବା ଲକ୍ଷ୍ୟ କରାଯିବ । ଓଡ଼ିଆ କବିତାରେ ରମାକାନ୍ତ ରଥ ଓ ଦୀପକ ମିଶ୍ର ଅଧିକ ଉଦ୍ଧୃତ ପ୍ରୟୋଗକରି କବିତା ରଚନା କରିଛନ୍ତି । ଆମେ ତଳେ ତାଲିକାଟିଏ ପ୍ରଦାନ କରୁଛୁ ।

| ମୂଳ କବିତା/କବି | ଉଦ୍ଧୃତ | ପରବର୍ତ୍ତୀ କବିତା/କବି |
|---|---|---|
| ଭାଗବତ (ଜଗନ୍ନାଥ ଦାସ) | ୧) 'ଅମ୍ଭାକୁ ଦଅନ୍ତି ଯେ ହରି ।<br>ତା' ଜନ୍ତୁଁ ଆନ ଇଚ୍ଛା କରି ।।<br>ମୋ ପ୍ରାଣନାଥ ଅଛି ପାଶେ<br>ମୁହିଁ ନ ଦେଖଇ ପ୍ରତ୍ୟକ୍ଷେ ।।' | 'ପିଙ୍ଗଳାର ସୂର୍ଯ୍ୟ' ( ବେଣୁଧର ରାଉତ ) |
| ଭାଗବତ (ଜଗନ୍ନାଥ ଦାସ) | ୨) 'ଯେସନେ କୀଟ ଊର୍ଣ୍ଣନାଭି ।<br>ନିଜ ବଦନରୁ ସୂତ୍ର ଭାବି ।।<br>ଜାଲ ନିର୍ମାଣି ରହେ ମୁଖେ ।<br>ମଧ୍ୟେ ବିହରେ ନାନା ସୁଖେ ।।<br>ଏକାନ୍ତେ ରହେ କ୍ରୀଡ଼ାକରେ<br>ସୂର୍ଯ୍ୟ ଉଦୟେ ତା ସଂହରେ ।। | 'ଦାସ ସ୍ୱୀକାର' (ରମାକାନ୍ତ ରଥ) |
| ଶ୍ରୀମତ୍ସେଇ | ୩) 'ହୁତାଶନରୁ ଜଳବୁନ୍ଦେ ହେଲା ପ୍ରକାଶ ।' | 'ଅନ୍ୟଲୋକର ପାଣି' (ରମାକାନ୍ତ ରଥ) |
| 'ପାର୍ବତୀ' କାବ୍ୟର ଉପସଂହାର (ରାଧାନାଥ ରାୟ) | ୪) ବହୁକାଳ ବିଦେଶରେ ଭ୍ରମଣ କଲେ ଆଉ ଆପଣଙ୍କୁ ଗୃହରୁ ବହିର୍ଗତ ହେବାକୁ ହେବ-ନାହିଁ । ଆଜିଠାରୁ ଆପଣ ଚିରକାଳ ବିଶ୍ରାମ କରିବେ, ଜଗନ୍ନାଥ ଆପଣଙ୍କ ତପସ୍ୟାର ଫଳ ଆପଣଙ୍କୁ ଅବଶ୍ୟ ଦେବେ । | 'ସନ୍ଧ୍ୟା' (ରମାକାନ୍ତ ରଥ) |

| | | |
|---|---|---|
| ଭାଗବତ (ଜଗନ୍ନାଥ ଦାସ) | ୫) 'ତୁ ତୋତେ କେଜେ ରକ୍ଷାକର ।<br>ମୁଁ ଛାର ମନୁଷ୍ୟ ମାତର ।।' | 'କାୟାପ୍ରବେଶ' ( ଦୀପକ ମିଶ୍ର) |
| ମହାଭାରତ (ସାରଳା ଦାସ) | ୬) 'କେତେକାଳ ବସି ତାକୁ<br>ସିରଜିଲା ବିଧାତା<br>ତାର ନିମନ୍ତେ ଗୁନ୍ଥିଲା ନବସୂର୍ଯ୍ୟ ଚନ୍ଦ୍ରା ।<br>ଅତିକ୍ଷୀଣ ମଝା ତାର ପଢ଼ିଲେ ଛିବ ତୁଟି<br>ପୁଣି କେତେବେଳେ ସିରଜିବ ସେ ପ୍ରତିମା ଗୋଟି ।' | 'ପ୍ରତିମାଟିଏ ଗଢ଼ିଲି' ପରେ (ଦୀପକ ମିଶ୍ର) |
| ବର୍ଣ୍ଣବୋଧ (ମଧୁସୂଦନ ରାଓ) | ୭) 'ହରିଣ ନ ହୁଏ ଧରା<br>ଦଉଡ଼ନା ବଡ଼ ଖରା ।' | 'ମଧ୍ୟାହ୍ନର ଗୀତ' (ଦୀପକ ମିଶ୍ର) |
| | ୮) 'ଅରଣା ମଇଁଷି ରହିଛୁ ଅନାଇ<br>ମଇଁଷିର ଘାଶ ନନାଅ ଦନାଇ ।' | 'ଅରଣା ମଇଁଷି' ( ଦୀପକ ମିଶ୍ର ) |
| ଭାଗବତ (ଜଗନ୍ନାଥ ଦାସ ) | ୯) 'ଚୁମ୍ବିଲେ ଧରଣୀ ବଦନ<br>ବୋଲନ୍ତି ଧନ୍ୟ ତୋ' ଜୀବନ<br>ତୋହର ଉପରେ ଚକ୍ରଧର<br>ମନୁଷ୍ୟ ଦେହେଁ ଅବତାର<br>ନାଶିବେ ତୋହର ଦୁଃଖରାଶି<br>ଆମ୍ଭେ ଦେଖିବୁ ବ୍ରହ୍ମରାଶି<br>ପୃଥୀ ଆଶ୍ୱାସି ଦେବଗଣ<br>ଗଲେ ସେସେ ଯାହା ଭୁବନ ।' | ଦେବକୀ ( ପ୍ରତିଭା ଶତପଥୀ ) |

ପୂର୍ବ ଆଲୋଚନାରେ ପିଙ୍ଗଳା, ବସୁଦେବ ( କାୟା ପ୍ରବେଶ ) ଏବଂ ଦେବକୀ ପ୍ରସଙ୍ଗକୁ କିଞ୍ଚିତ୍ ବିଶ୍ଳେଷଣ କରାଯାଇଛି । ଏବେ ରମାକାନ୍ତ ରଥଙ୍କ 'ବାଘ ଶିକାର' ଏବଂ ଦୀପକ ମିଶ୍ରଙ୍କ 'ଅରଣା ମଇଁଷି'ର ସଂକ୍ଷିପ୍ତ ବିଶ୍ଳେଷଣ କରି ଉଦ୍ଧୃତ ପ୍ରୟୋଗର ତାତ୍ପର୍ଯ୍ୟ ସମ୍ପର୍କରେ ଆଲୋକପାତ କରାଯାଇପାରେ ।

ରମାକାନ୍ତ ରଥଙ୍କ 'ବାଘ ଶିକାର' (୧) ଭାଗବତର ମୂଳ ଉଦ୍ଧୃତରୁ ଦର୍ଶନ-ସାତତ ହୋଇ ଆପଣା ଶକ୍ତିନେଇ ବିକଶିତ ହୋଇଛି । ବୁଢ଼ୀଆଣୀ ନିଜେ ଜାଲ ବୁଆର

---

(୧) 'ବାଘ ଶିକାର' ବିଶେଷାଙ୍କ ( ମୂଲ୍ୟାୟନ : ୧୫-୧୬ ) ଦ୍ରଷ୍ଟବ୍ୟ ।

କରି ତା' ଭିତରେ ବଞ୍ଚେ ଏବଂ ପରେ ତାକୁ ନଷ୍ଟ କରେ । ମହାକାଳ ଯେହେତୁ ସୃଷ୍ଟି ଓ ଧ୍ୱଂସର ପ୍ରତୀକ । ଈଶ୍ୱରଙ୍କର ମାୟା ଓ ବନ୍ଧନ ଭିତରେ ମନୁଷ୍ୟ ଆବୋଧିତ ହୁଏ । ସୃଷ୍ଟି ଏବଂ ବିପର୍ଯ୍ୟୟ ଭିତରେ ମାୟାମୟ ଜୀବନ ଚର୍ଯ୍ୟା ଏବଂ ମହାକାଳର ମାୟାକୁ ଉତ୍ତୀର୍ଣ୍ଣ ହେବାର ପ୍ରଚେଷ୍ଟା ଏ କବିତାରେ ପ୍ରତିପାଦ୍ୟ । ଏଠାରେ ଉର୍ଣ୍ଣନାଭ, ଜାଲ, ରାତ, ସୂର୍ଯ୍ୟୋଦୟ ଦ୍ରବ୍ୟ ପ୍ରତୀକ, ବାଘ ଶିକାର ମଧ୍ୟ ଏକ ପ୍ରତୀକ । ଉର୍ଣ୍ଣନାଭ ପ୍ରତୀକ ଭିତରୁ ବାଘର ପ୍ରତୀକଟିଏ ଜନ୍ମ ନେଇଛି । ଏଥିରେ ସୃଷ୍ଟିର ରହସ୍ୟ ସମ୍ପର୍କରେ ବ୍ୟାଖ୍ୟା କରାଯାଇଛି । ଉକ୍ତିର ମୂଳ ବିନ୍ଦୁକୁ ଉକ୍ତିକୁ ଆଶ୍ରାକରି କବିତା ସମ୍ପ୍ରସାରିତ ହୋଇଛି ।

ଦ୍ୱିତୀୟ ଉଦାହରଣ 'ଅରଣା ମଇଁଷି' କବିତାଟି ମୂଳ ଉକ୍ତିକୁ ନେଇ ଏକ ସ୍ୱୟଂସମ୍ପୂର୍ଣ୍ଣ ନିର୍ମାଣଟିଏ । ମଧୁସୂଦନଙ୍କ ମତକୁ ମୂଳ କେନ୍ଦ୍ରକରି ଏହା ଏକ ଚମତ୍କାର କଳାତ୍ମକ ବିବେଧାଭାସ । ସାନ ଝିଅଙ୍କ ପାଇଁ 'ବର୍ଣ୍ଣବୋଧ'ରେ ଏ ପଦ୍ୟଟି ଲେଖାଯାଇଛି । ମଧୁସୂଦନ ଖୁବ୍‌ବେଶୀ ହେଲେ ମୃତ୍ୟୁକୁ 'ଅରଣା ମଇଁଷି' ଏବଂ ଦନେଇକୁ ସାଧାରଣ ସାଂସାରିକ ମଣିଷଟିଏ ବୋଲି ଭାବିଥିବେ । କିନ୍ତୁ ଶ୍ରୀ ମିଶ୍ରଙ୍କ ଦୃଷ୍ଟିରେ ଦନେଇର ଭାଗ୍ୟ ହିଁ ପ୍ରତିଟି ମଣିଷର ଭାଗ୍ୟ । ମୃତ୍ୟୁର ମଧ୍ୟ ଏକ ସ୍ୱୟଂସମ୍ପୂର୍ଣ୍ଣ ଜୀବନ ଅଛି । ଜୀବନର ବିଭିନ୍ନ ଅବସ୍ଥା (Stage) ପରି ମୃତ୍ୟୁର ମଧ୍ୟ ଶୈଶବ, କୈଶୋର, ଯୌବନ ଏବଂ ବାର୍ଦ୍ଧକ୍ୟ ରହିଛି । ଦନେଇର ଦେହେର ଭିତରେ ତା'ର ପ୍ରତିଫଳନ । ଦନେଇ ଏଣ୍ଡୁ ସ୍ୱୟଂ ପରିଣତ ହୋଇଛି ମୃତ୍ୟୁରେ । ଏ କବିତାରେ ଜୀବନ ମୃତ୍ୟୁମୟ ଏବଂ ମୃତ୍ୟୁ ଜୀବନମୟ । ମୃତ୍ୟୁ ପ୍ରତି କବିଙ୍କର ବଡ଼ ଉଦାର ଦୃଷ୍ଟିଭଙ୍ଗୀ । ମଧୁସୂଦନରାଓଙ୍କ ଦୁଇଧାଡ଼ି ପଦ୍ୟ ମାତ୍ର ସାର୍ଥକ ସ୍ୱୟଂ-ସମ୍ପୂର୍ଣ୍ଣ କବିତାର ଗୌରବ ପାଇଛି । ପରମ୍ପରାକୁ ଆଉ କେଉଁ ପ୍ରକାରେ ପ୍ରୟୋଗ ମାନ୍ୟତା ଦିଆଯାଇପାରେ ? ଉଦାହରଣ ଭାବେ ନିଆଯାଇ ଥିବା ସମସ୍ତ ପ୍ରସଙ୍ଗକୁ ପର୍ଯ୍ୟାଲୋଚନା କରାଯାଇ ଉକ୍ତିର ଆବଶ୍ୟକତା ଖୋଜା ଯାଇପାରେ । ଅଧିକାଂଶ ଉକ୍ତି ଭାଗବତରୁ ନିଆଯାଇ ଥିବାରୁ ମନେହୁଏ ଏ ଗ୍ରନ୍ଥଟି ତତ୍ତ୍ୱ, ଲୋକପ୍ରିୟତା, ରସ-ସମାବେଶ ଦୃଷ୍ଟିରୁ ଅସରନ୍ତି ପ୍ରେରଣାର ଉତ୍ସ ।

[ଗ] ବନ୍ୟ ପଶୁ, ପକ୍ଷୀ (ବିଶେଷକରି ପକ୍ଷୀ)ଙ୍କୁ କେନ୍ଦ୍ରକରି ସାମ୍ପ୍ରତିକ କାବ୍ୟତା ରଚିତ ହୋଇଛି । କବି ଗଡ଼ନାୟକ 'ପଶୁପକ୍ଷୀର କାବ୍ୟ'ରେ ପୁରାଣ ଓ ଇତିହାସର ପଶୁପକ୍ଷୀଙ୍କୁ ଯେପରି ଚରିତ୍ରୀଭୂତ କରିଛନ୍ତି ଅବଶ୍ୟ ଏହା ସେପରି ନୁହେଁ । ଏଠାରେ ପ୍ରତୀକ ରୂପ ହିଁ ମୁଖ୍ୟକଥା । ପକ୍ଷୀଙ୍କ ଭିତରେ 'କୋଇଲି' ଏକ ଦୃଷ୍ଟିଆକର୍ଷଣକାରୀ ବିଭାବ । ପାଶ୍ଚାତ୍ୟ ସାହିତ୍ୟରେ 'ନାଇଟିଙ୍ଗେଲ'ର ଭୂମିକା ସହିତ ଏହାର ସାମ୍ୟ ରହିଛି । 'କୋଇଲି' ରୋମାଣ୍ଟିକ ବିଭାବ ରୂପେ ଅନେକବାର ପ୍ରତିଫଳିତ । ରମାକାନ୍ତ ରଥଙ୍କ 'ଉତ୍କଳ

ଭବିଷ୍ୟତ' (୩) କବିତାରୁ ଏହାର ନମୁନା ନିଆଯାଇ ପାରିବ । ପ୍ରାଚୀନ ସାହିତ୍ୟରେ 'କୋଇଲି' ଅଙ୍ଗୀଭୂତ 'କୋଇଲି ସାହିତ୍ୟ'ର ସ୍ୱତନ୍ତ୍ର ଆବେଦନ ରହିଛି । ବିଶେଷ କରି ମାର୍କଣ୍ଡ ଦାସଙ୍କ 'କେଶବ କୋଇଲି'ର ଆବେଦନ ବିଳପିତ ମାତୃତ୍ୱର ଆବେଦନକୁ ପ୍ରକାଶ କରିବାରେ ମାର୍ମିକ-କରୁଣ । ଏଠାରେ କୋଇଲି କିନ୍ତୁ ରୋମାଣ୍ଟିକ ବିରହ ନୁହେଁ । ଯଶୋଦାଙ୍କର କଥୋପକଥନ ଭିତରେ କୋଇଲି ହିଁ ଯେମିତି ଯଶୋଦାଙ୍କ ହୃଦୟ । ସାଂପ୍ରତିକ କବିତାରେ ଡଃ ପ୍ରସନ୍ନ କୁମାର ମିଶ୍ରଙ୍କ କୋଇଲି ପ୍ରତି ଅଧିକ ମମତା । ବିଶେଷ କରି ତାଙ୍କର 'ଦୁଃଖ କୋଇଲି', 'କୋଇଲି ଠାରେ ପ୍ରଶ୍ନବିକା' ଆଦି କବିତାରେ ମାନବିକ-ସମ୍ବେଦନଶୀଳତା ଫୁଟିଛି । ସେ କୋଇଲିକୁ ଭିନ୍ନ ପ୍ରକାରେ ପ୍ରୟୋଗ-ମାନ୍ୟତା ଦେଇଛନ୍ତି । 'କେଶବ କୋଇଲି'ରେ କୋଇଲି ଶ୍ରୋତା, ଯଶୋଦା ବକ୍ତା, କେଶବ ହିଁ ପ୍ରସଙ୍ଗ । କିନ୍ତୁ ପ୍ରସନ୍ନ ମିଶ୍ରଙ୍କ 'ଦୁଃଖ କୋଇଲି'ରେ କୋଇଲି ଶ୍ରୋତା, କବି ବକ୍ତା ଏବଂ ଦୁଃଖିନୀ ସ୍ତ୍ରୀ ଲୋକଟିଏ ହିଁ ପ୍ରସଙ୍ଗ । ଅଭାବ ଓ ଦାରିଦ୍ର୍ୟଗ୍ରସ୍ତ, ମଥିତ ମାତୃତ୍ୱ ପାଇଁ କୋଇଲି ଯେମିତି ଅସରନ୍ତି କରୁଣାର ଉନ୍ମୁକ୍ତ ଆଧାର । କୋଇଲିର ରୂପାନ୍ତର ଏଣୁ ବଡ଼ ପ୍ରାଣବନ୍ତ । ନିରାଶ୍ରୟ ଶିଶୁ ଓ ବିପନ୍ନ ମାତୃତ୍ୱ ପ୍ରତି କବିଙ୍କ ହୃଦୟ ବେଦନାର୍ଦ୍ର । ଉଦ୍ଧୃତିଟି ନିଅନ୍ତୁ :

"ମୁଁ ଶୁଣୁଛି କୋଇଲି ଲୋ !
ତୋ' ଦେହ ସ୍ତନରୁ ସ୍ତନ୍ୟ ଆସ୍ତେ ଯାଉ ଛୁଟି
ଓଠକୁ ତାହାର,
ତୋ'ର ଗଳା ମିଶି ଯାଉ, କୋଇଲି ଲୋ !
ସେ ଶିଶୁର ଓଠ ହେଉ ଲାଲ ।" (ଦୁଃଖ କୋଇଲି)

ପୁଣି 'କେଶବ କୋଇଲି'ର 'କାହା ବୋଲେ ଗଲୁ ପୁଅ ବାହୁଡ଼ି ନଇଲୁ' ନିମ୍ନୋକ୍ତ ଭାବରେ ପ୍ରୟୋଗ ମାନ୍ୟତା ପାଇଛି ।

"ଏତେ ଶବ୍ଦ ପଠାଇଲି ପବନରେ
ଶବ୍ଦଙ୍କ ଛୁଆକୁ ଧରି କିଏ ତଣ୍ଟି ଚିପି ଦେଲା
ସ୍ମୃତିର କ୍ଷେତରେ ଏବେ ଶବ୍ଦର ମରୁଡ଼ି
କାହା ବୋଲେ ଗଲୁ ଶବ୍ଦ ବାହୁଡ଼ି ନଇଲୁ ।

(ଲହୁଭିଜା ଗଣା . ଶତ୍ରୁଘ୍ନ ପାତ୍ର)

---

୩ । 'ସମସ୍ତ କୃପଣ କେଡ଼େ ! ମନାକରି ଦେଲେ
ଆଉ ଏକ ଚନ୍ଦ୍ରପକ୍ଷ ଗଣ୍ଠି ମୋ ଦେହକୁ ।
କୋଇଲିର ତଣ୍ଟି ଚିପି ଦେଲେ, ତା ମତରେ
ଗୋଟିଏ ଗୀତ ହିଁ ଖୁବ୍ ।" (ହସ୍ତମରୁ : ୧୯୭୭)

'କାହା ବୋଲେ ଗର୍ଭ' ଏକ ଅଭିମାନ । ବୁଝି ନବୁଝିବାର ଅଭିମାନ, ଶୀତଳ ଚନ୍ଦନ ପ୍ରାପ୍ତ ଅଭିମାନ । ଏତଦ୍‌ଭିନ୍ନ ଓଡ଼ିଆ କବିତାରେ ଆଉ କେତୋଟି ଜାଗାରେ 'କୋକିଳ' ଏକ ସ୍ତରରେ ମାନ୍ୟତା ପାଇଛି । ପ୍ରମୋଦ ମହାନ୍ତିଙ୍କ 'ଦେଖାପାଦ'ର 'କୋଇଲି ଲୋ !' ଏ ପ୍ରସଙ୍ଗରେ ଅନ୍ୟତମ କବିତା ।

[ଘ] ପରମ୍ପରା-ମାନ୍ୟତାର ଅନ୍ୟ ଏକ ଉଲ୍ଲେଖଯୋଗ୍ୟ ଦିଗ ହେଉଛି ପ୍ରାଚୀନ କବିଙ୍କ ଶବ୍ଦ, ଶବ୍ଦ-ଯୋଜନା, ରଚନା-ଢଙ୍ଗକୁ ଆଧୁନିକ ସ୍ତରରେ ପ୍ରୟୋଗ କରିବା । ସାଂପ୍ରତିକ କବିଏ ଏ ପ୍ରକାର ପ୍ରୟୋଗ ଦ୍ୱାରା ପାଠକକୁ ଚକିତ କରନ୍ତି, ଆମୋଦ ପ୍ରଦାନ କରନ୍ତି ମଧ୍ୟ । ଏକଦା କବିସୂର୍ଯ୍ୟଙ୍କ 'କିଶୋର ଚନ୍ଦ୍ରାନନ୍ଦ ଚମ୍ପୂ'ର ରଚନା ଢଙ୍ଗକୁ ଆଧୁନିକତାର ସ୍ପର୍ଶ ଦେଇ 'କଟକ-ଚନ୍ଦ୍ରନାଦ ଚମ୍ପୂ'ରେ କାନ୍ତକବି ଲକ୍ଷ୍ମୀକାନ୍ତ ବ୍ୟଙ୍ଗ ଓ ହାସ୍ୟରସର ସଫଳ ପ୍ରୟୋଗ କରିଥିଲେ । କବିଙ୍କ ସମାଜ-ସଚେତନତା ଓ ସଂସ୍କାରବୋଧ ଏଥିରେ ପ୍ରତିଫଳିତ ହୋଇଥିଲା । ଏପରି ପ୍ରୟୋଗ କିଛି ସାଂପ୍ରତିକ କବିତାରେ ପରିଲକ୍ଷିତ ହୁଏନାହିଁ । ସାମ୍ପ୍ରତିକ କବିତାର ନାମକରଣରେ କିପରି ପ୍ରାଚୀନ କବିଙ୍କ ପଂକ୍ତିକୁ ଓ ପ୍ରସଙ୍ଗକୁ ନିଆଯାଇଛି ତାହା ପାଠକେ ଲକ୍ଷ୍ୟ କରନ୍ତୁ । ପ୍ରାଚୀନ କବିଙ୍କ ନାମୋଲ୍ଲେଖ ଜାଣିଶୁଣି କରାଯାଇ ନାହିଁ । ସଚେତନ ପାଠକେ ଠିକ୍ ଭାବେ ଏହା ଧରିନେବେ । 'ଲାବଣ୍ୟବତୀକୁ ଚନ୍ଦ୍ରଭାନୁର ଚିଠାଉ' (ହରି ରାଉତରାୟ), 'ଅକ୍ରୂର ଉବାଚ' (ଗୁରୁ ପ୍ରସାଦ ମହାନ୍ତି), 'କାନନର ବିତାନରେ', 'ଛୁଟିଲେ ଘଟ', 'ଅନନ୍ତ ଶୟନ' (ରମାକାନ୍ତ ରଥ), 'କି ନାଦରେ ପ୍ରାଣସଙ୍ଗିନୀ', 'ମୃଗୁଣୀ ସ୍ତୁତି', 'କୁରୁପତି ସଭାତଳେ', 'ମାନ ଉଦ୍ଧାରଣ' 'ଉଷାଭିଳାଷ' (ପ୍ରତିଭା ଶତପଥୀ), 'ଶୁକ ପକ୍ଷିଣୀର ସମ୍ବାଦ' (ଦୀପକ ମିଶ୍ର), 'ମନବୋଧ ଚଉତିଶା' (ସୀତାକାନ୍ତ ମହାପାତ୍ର), 'ଜୀବନ-ଚିନ୍ତା', 'ଯାତ୍ରା ସଙ୍ଗୀତ' (ସୌଭାଗ୍ୟ କୁମାର ମିଶ୍ର), 'ଗୋବର୍ଦ୍ଧନଚନ୍ଦ୍ର', 'କାଳିଜାଇ' (ହରିହର ମିଶ୍ର), 'ମୁଗଲ ଅନୁରାଗ କଥନ' (ବଂଶୀଧର ଷଡ଼ଙ୍ଗୀ) ।

ସାରଳା, ଜଗନ୍ନାଥ, କବିସୂର୍ଯ୍ୟ ଓ ଭୀମଭୋଇ ପ୍ରଭୃତି କବିମାନଙ୍କ ଶବ୍ଦପ୍ରୟୋଗ ସାଂପ୍ରତିକ କବିଙ୍କ କବିତାରେ ଅନୁସୃତ । ଭୀମଭୋଇଙ୍କ ଶବ୍ଦପ୍ରୟୋଗରେ ଅନେକ ନୂତନତା ରହିଛି । ସେ ସମ୍ପର୍କରେ ଏବଂ ତା'ର ପ୍ରଭାବ ସଂପର୍କରେ ଏକ ସ୍ୱତନ୍ତ୍ର ପ୍ରବନ୍ଧ ଲେଖାଯାଇ ପାରେ । ସାଂପ୍ରତିକ କବିଏ ବେଶୀ ଭାବରେ ପ୍ରାଚୀନ କାବ୍ୟକାରଙ୍କ ଶବ୍ଦାବଳୀକୁ ଆପଣେଇ ପାରି ନାହାନ୍ତି । ଆପଣା କବିତାର ସମୃଦ୍ଧି ଲାଗି ଏହାର ଆବଶ୍ୟକତା ରହିଛି । କବି ସୌଭାଗ୍ୟ ମିଶ୍ର ଅକ୍ଷର ନିୟମ ବା ଚଉତିଶାର ପ୍ରୟୋଗ ଢଙ୍ଗକୁ 'ଅନ୍ଧ ମହୁମାଛି' କବିତାରେ ସ୍ମରଣ ରଖିଛନ୍ତି । ଏଇ ପଂକ୍ତିଟି 'ସବୁଠି ମହୁ : କଟକରେ, କଦମ୍ବରେ, ଖଟରେ, ଖଲାରେ, ଗୁମାନରେ, ଗରୁଡ଼ ସ୍ତମ୍ଭରେ···ଯାଖରୁ ହୋମରେ, ହନନରେ' ପର୍ଯ୍ୟନ୍ତ ବିସ୍ତୃତ । କବିସୂର୍ଯ୍ୟଙ୍କ 'ଠିକ୍ ଠ' ବର୍ତ୍ତୁଳ ଚନ୍ଦ୍ରାନନ

'ତୋ ଚରଣରେ'କୁ ସୌଭାଗ୍ୟ ମିଶ୍ର 'ଅନ୍ଧ ମହୁମାଛି'ରେ 'ଠାରରେ ଠିକ୍ ଠ' ବର୍ତ୍ତୁଳ ଚନ୍ଦ୍ରାନନରେ' ବୋଲି ପ୍ରୟୋଗ କରିଛନ୍ତି । ସେହିପରି ମନମୋହନ ଦାଶଙ୍କ କବିତାରେ କବିସୂର୍ଯ୍ୟଙ୍କ 'କେଳା କେଳା ଝଞ୍ଜନାକ୍ଷି' ସମ୍ବୋଧନାତ୍ମକ ଢଙ୍ଗରେ ଏକାଧିକବାର ପ୍ରୟୋଗ ହୋଇଛି । ସୀତାକାନ୍ତ ମହାପାତ୍ର ପ୍ରାଚୀନ କବିଙ୍କ 'ଘରେ ନ ରହନ୍ତି ଗଉଡ଼େ ବଡ଼ ଅଧମ ଜାତି । ପେନ୍ନ ବସ୍ତ୍ରାବୃନ୍ଦ ବାଳକେ ବନେ ବୁଲନ୍ତି ନିତି' ପ୍ରଭୃତି ପଂକ୍ତିମାନଙ୍କୁ ନିମ୍ନପ୍ରକାରେ ପ୍ରୟୋଗ କରିଛନ୍ତି ।

'ପନ୍ଦୁହିଲେ ଘନ ଘୋର ବରଷାର କାଳ/ସେ ନଥିବ ନିଜ ଘରେ ଆଉଜିତ ଦେହରେ ବାନ୍ଧି ଆପଣାକୁ/ଅଧମ ଗଉଡ଼ ଜାତି ଆପଣାର ସ୍ୱର୍ଗୀ ଅଭି/ବିଶ୍ୱାସର ଗୋରୁପଲ ଆଉଡ଼ିଇ ଅଉଡ଼ିଇ/କଣ୍ଠା ଝଣ୍ଟା ମାଡ଼ି ଦଳି କାଦୁଅରେ ପେଲି ହୋଇ/ବୁଲୁଥିବ ବଣରୁ ବଣକୁ ବର୍ଷା ପାଣି ପିଇ ପିଇ ସ୍ୱଚ୍ଛନ୍ଦ ସମାନ × × × ।'

(ମନବୋଧ ଚଉତିଶା : ସମୁଦ୍ର ୧୯୭୭)

କବିତାର ଶିଳ୍ପ ପ୍ରକରଣରେ ପ୍ରାଚୀନ କବିଙ୍କ ରଚନା ଖଣ୍ଡକୁ ଚମତ୍କାର ଭାବେ ସଂଯୋଜନା କରାଯାଇଛି । ଏପ୍ରକାର ସଂଯୋଜନା ଏକପ୍ରକାର ନୂତନତା । ଏ ପ୍ରୟୋଗ କବିତାକୁ ସମ୍ଭ୍ରମ ଓ ଭିନ୍ନ ସ୍ୱାଦ ପ୍ରଦାନ କରିଛି । ସାରଳା-ବଳରାମଙ୍କ ଦାଣ୍ଡୀ ବୃତ୍ତ ଏ ପରିପ୍ରେକ୍ଷୀରେ ଅଧିକ ପ୍ରୟୋଗ ମାନ୍ୟତା ପାଇଛି । କେତୋଟି ଉଦ୍ଧୃତି ସାଂପ୍ରତିକ କବିତାରୁ ନେବା । ଏଠାରେ ପ୍ରୟୋଗର ତାତ୍ପର୍ଯ୍ୟ ବିଶ୍ଳେଷଣ କରାଯାଉ ନାହିଁ, କେବଳ ପ୍ରୟୋଗଜନିତ ଉଦ୍ଧୃତି ଦିଆଯାଉଛି ।

(୧) 'ପ୍ରବଳ ଗ୍ରୀଷ୍ମେ ହୋଇ ବିକଳ ସକଳ/ଚପଳ ଲୋଚନା ଗୋପ ନାରୀ-ମାନେ କ୍ରୀଡ଼ା ଗ୍ରୁତ ପଶିଲେ ଜଳରେ/ଏ ସମୟେ ବୃନ୍ଦାବନୁ ବାହାରିଲେ କମଳନୟନ/ଭ୍ରମୁଥିଲେ ଗୋପୀକାଙ୍କ ଅଙ୍ଗବାସ ଆଜ ଆମ୍ଭେ ହରଣ କରିବା ।'

'ବର୍ଷା ଋତୁ' : ରମାକାନ୍ତ ରଥ (ଅନେକ କୋଠରି : ୧୯୬୨)

(୨) ''ଗୌରବରେ ଗରଜି ମରୁଛୁ କେତେ ? କେ କି କଲା ? ମୁଁ ନ କଲି ? କେ କି ଦେଲା ? ମୁଁ ଅବା ନ ଦେବା ପେନ୍ନ ଏତେ ସର ହେଲି ? ମହୁଖରେ ବୁଲୁଥିଲା କେଖି କେଖି ବ୍ରମକେଖି ଶରଧା ବଢ଼ାଇବାକୁ/ଦିନେ ହେଲେ ନ ଅଇଲା ଗୋପର ଚୁଆଳି !''

'ଗାଆଁକୁ'—(ଦେବୀପାଦ) ପ୍ରମୋଦ କୁମାର ମହାନ୍ତି

(୩) 'ସବୁଠାରେ ମୁଁ ତୋ'ର ବେଡିଆ
ପାଣି ଆଣିବାକୁ ଧନ
ମତେ ତୁ ପଠିଆ ।'
'ନାଭି ଛେଦ' : ହରିହର ମିଶ୍ର (ଅକ୍ଷମ ଦେବତା : ୧୯୭୮)

(୪) 'ଶୂନ୍ୟରେ ଗ୍ରୁଲନ୍ତି ଶବ, ଅନୁମାନେ ଭେଦ
ଶବରୁ ମରଣ ଝରେ, ମରଣରୁ ଶବ ।'
'ଗିବାବେଲ ମୁହୁଁ' : ହୃଷୀକେଶ ମଲ୍ଲିକ ('ଝଙ୍କାର'-ଅଗଷ୍ଟ-୧୯୮୦)

ଏପ୍ରକାର ଉଦ୍ଧୃତ ବିଭିନ୍ନ ବାଗରେ ବିଭିନ୍ନ ପ୍ରସଙ୍ଗରେ ପ୍ରୟୋଗ-ମାନ୍ୟତା ଲାଭ କରିଛି । ବିଶେଷତଃ ବଂଶୀଧର ଷଡ଼ଙ୍ଗୀ (ଘର, 'ମଲ୍ଲଲେକ ଓ ପାହାନ୍ତା' ଆଦି କବିତା) ଏବଂ ହରିହର ମିଶ୍ରଙ୍କ କେତୋଟି କବିତାରେ ଏ ପ୍ରୟୋଗ ଦୃଷ୍ଟିଗୋଚର ହୁଏ ।

[ଙ] ପରମ୍ପରା-ମାନ୍ୟତା ପ୍ରସଙ୍ଗରେ ଓଡ଼ିଆ ଲୋକ-ଗୀତ, ଲୋକ-କାହାଣୀ ଓ ଚଗଡ଼ମାଳାର ଅବଦାନ ସ୍ୱୀକୃତ । ବେଶୀ ଭାବରେ ନ ହେଲେ ମଧ୍ୟ ଆଧୁନିକ କବିତାର ରଚନା ଢଙ୍ଗ ସହିତ ଏହାର ସମନ୍ୱୟ ସ୍ଥାପିତ ହୋଇଛି । କେଉଁଠି ଏହା ସହାୟକ ଭାବରେ ବ୍ୟବହୃତ ତ କେଉଁଠି ଭଙ୍ଗୀ ଭାବରେ ଆଉ କେଉଁଠି ଆଧୁନିକ ରଚନା-ରୀତି ସହିତ ଏହା ମିଶିଯାଇ ଏକାକାର ହୋଇ ଯାଇଛି । ଏ ପରିପ୍ରେକ୍ଷୀରେ କେତୋଟି ଉଦ୍ଧୃତିକୁ ବିଚାରକୁ ନେବା ।

(୧) "କଞ୍ଚନ ଗଛର ତଳେ ପ୍ରବାହିତ ରକ୍ତ ନଦୀ, ଦେଖ
ନଶରେ ଜୀବନ ସ୍ରୋତ ଧାଉଁଛି କପଶ ।
ଦେବା କି ନ ଦେବା ଫୁଲ, ରଜାଙ୍କର ମାଳୀ ଆସିଅଛି
ରଜା କଳେ ମାଗୁଛନ୍ତି ? × × ×
× × × କାଲି ଯାଆ ଯୋଗୀ ହୋଇ କରି
କୁମର ମଣିରେ ମୋର ବାଣିଜ୍ୟ ବା ରାଜକର୍ମ କର ।"
('ବିମାନ ଦୁର୍ଘଟଣାରେ ମୃତ୍ୟୁ' : ରମାକାନ୍ତ ରଥ)

ଏ ପଂକ୍ତିରେ ସାରଳା ଦାସଙ୍କ ରକ୍ତନଦୀ ପ୍ରତୀକ, ମଧୁସୂଦନ ରାଓଙ୍କ 'ଜୀବନ ଚିନ୍ତା' କବିତା, କଞ୍ଚନ ଗଛ ଲୋକକଥା, ଟୀକା ଗୋବିନ୍ଦ ଚନ୍ଦ୍ର ପ୍ରସଙ୍ଗର ଏକ ସମନ୍ୱୟ ସାଧିତ ହୋଇଛି । କଞ୍ଚନ ବୃକ୍ଷକୁ କବି ଜୀବନ ବୃକ୍ଷ ବୋଲି ଅଭିହିତ କରିଛନ୍ତି । (୪)

(୪) ଅନେକ କୋଠରୀ ପୃଷ୍ଠବନ୍ଧ, ପୃ ୭୭—ରମାକାନ୍ତ ରଥ ।

କବିତାର ଆବଶ୍ୟକତା ଦୃଷ୍ଟେ, କଥିତ ଗଳ୍ପ ଲୋକକଥାର ପ୍ରୟୋଗ ହୋଇଛି । ଏହା କବିତାର ପଂକ୍ତି ତଥା ବିଷୟବସ୍ତୁ ସହ ସମ୍ପୂର୍ଣ୍ଣ ମିଶିଯାଇଛି । ଏଠାରେ କହି ରଖିବା ଅପ୍ରାସଙ୍ଗିକ ହେବ ନାହିଁ ଯେ ଆଧୁନିକ କବିତାକୁ ଠିକ୍ ଭାବେ ବୁଝିବା ଲାଗି ପାଠକର ବହୁ ଶାସ୍ତ୍ର-ଆମୁଖତା ତଥା କବିତା-ପରମ୍ପରା ପ୍ରତି ସମ୍ପୂର୍ଣ୍ଣ ସଚେତନ ହେବାର ଆବଶ୍ୟକତା ରହୁଛି ।

(୨) ବାୟା ଚଢ଼େଇଟିରେ ବାୟା ଚଢ଼େଇ ତୁ
ତାଲ ଗଛେ କରୁ ବସା,
× × ×
ଆର ସାଇ ଗୁମୁ- କରଣ ପୁଅକୁ
ନେ’ରେ ବାଇଆ ନେ ।’
× × ଇତ୍ୟାଦି ।

(ନବଗୁଞ୍ଜର : ରମାକାନ୍ତ ରଥ—‘କେତେ ଦିନର’ : ୧୯୬୨)

ଏ କବିତାରେ ଗଦ୍ୟଗୀତ ସହିତ କବିତାର ଆବଶ୍ୟକତା ପୂରଣ ନିମିତ୍ତ ଏପ୍ରକାର ପଂକ୍ତିମାନଙ୍କର ସୂକ୍ଷ୍ମ ସଂଯୋଜନା ପରିଲକ୍ଷିତ ହୁଏ ।

ଏ ପ୍ରୟୋଗ ଅନେକ ସମୟରେ ପାଠକମାନଙ୍କ ସହିତ ସୁଗମ ଯୋଗାଯୋଗ ସ୍ଥାପନ କରେ ।

୩ । ତୋ’ ପାଇଁ ପାନ ରଖିଚି, ଗୁଆ ରଖିଚି, ଗାଡ଼ୁ ରଖିଚି, ମୟୂର ପଙ୍ଖୀ ଶାଢ଼ି ରଖିଚି, ଚେକ ରଖିଚି, ପାସ୍‌ବୁକ୍ ଓ ଫୁଲ ରଖିଚି ଆ’ ।

(ହୃଦୟେଶ୍ୱରୀ : ସୌଭାଗ୍ୟ କୁମାର ମିଶ୍ର—‘ଅନ୍ଧ ମହୁମାଛି’ : ୧୯୬୭)

ହୃଦୟେଶ୍ୱରୀ ପାଇଁ ପାନ ଓ ଗୁଆ ସହିତ ଅନ୍ୟାନ୍ୟ ସାମଗ୍ରୀର ସମନ୍ୱୟକୁ ପାଠକେ ଲକ୍ଷ୍ୟ କରନ୍ତୁ ।

୪ । ସେମାନେ ବୋଲିଲେ ଗୀତ;
ଆସ ଆସ ଘାସ ଫୁଲ/ମୋ ପିଣ୍ଡାରେ ବସ
ଖାଇବାକୁ ଦେବୁ ତୁମକୁ/ହୃଦୟର ରସ
ପିଇବାକୁ ଦେବୁ ତୁମକୁ/ବେଣ୍ଟପୋଖରୀର ପାଣି
ଗପୁଥିବୁ, ନାଚୁଥିବୁ ତମ ମନ ଜାଣି ।

(ଘାସଫୁଲ : ସୀତାକାନ୍ତ ମହାପାତ୍ର—‘ଚିତ୍ରନଦୀ’ : ୧୯୭୯)

କବିତାର ଉଦ୍ଦେଶ୍ୟ ଚରିତାର୍ଥ ନିମିତ୍ତ ମୂଳ ଗୀତର କେତୋଟି କଥାକୁ ଅଦଳ ବଦଳ କରାଯାଇଛି । ଭଙ୍ଗୀ ମଧ୍ୟ ପ୍ରୟୋଗ-ଗୌରବ ପାଇଛି । ଓଡ଼ିଆ କବିତାରୁ ଏହି ପରିପ୍ରେକ୍ଷୀରେ ଆହୁରି ଉଦାହରଣ ସଂଗ୍ରହ କରାଯାଇ ପାରିବ ।

ବୌଦ୍ଧଗାନ ଦୋହା ବା ଚର୍ଯ୍ୟାଗୀତିର ପ୍ରୟୋଗ ଢଙ୍ଗ ଓ ବକ୍ତବ୍ୟ ସାଂପ୍ରତିକ କବିତାରେ ପ୍ରାଧାନ୍ୟ ଲାଭ କରିଛି । ଦେହ-ସାଧନାରୁ 'ପରମ-ସୁଖ-ପଦ'କୁ ଉନ୍ନୀତ ହେବାର କାବ୍ୟିକ ପ୍ରଚେଷ୍ଟା ପରମ୍ପରା-ମାନ୍ୟତା ଯୋଗୁଁ ଏପ୍ରକାର କବିତାମାନଙ୍କର ଆଧୁନିକ ପ୍ରୟୋଗ ଷାଠିରେ ରୂପାୟିତ ହୋଇଛନ୍ତି । ବଂଶୀଧର ଷଡ଼ଙ୍ଗୀଙ୍କ 'ସୂର୍ଯ୍ୟାସ୍ତ ସିରିଜ୍' ଏବଂ 'ଚର୍ଯ୍ୟାପଦ' ଶୀର୍ଷକ କବିତାମାନଙ୍କରେ ଏପ୍ରକାର ପ୍ରୟୋଗ ପରିଲକ୍ଷିତ ହୁଏ । ଡଃ ପ୍ରସନ୍ନ ମିଶ୍ରଙ୍କ 'ଶବର-ଶବରୀ ଚର୍ଯ୍ୟା' କବିତା ଏ ପରିପ୍ରେକ୍ଷୀରେ ଏକ ସୁନ୍ଦର ଉଦାହରଣ । ତେବେ ଓଡ଼ିଆ କବିଏ ଏହି ଚର୍ଯ୍ୟାଗୀତିକାର ଭାଷା-ବିଭବ ଓ ଭାବ-ଅଭିବ୍ୟକ୍ତି ପ୍ରତି ଏଯାବତ୍ ଅଧିକ ଉନ୍ମୁଖ ହୋଇନଥିବା ମନେ ହୁଏ ।

[ଚ] କବିତାଗ୍ରନ୍ଥମାନଙ୍କର ନାମକରଣରେ ମଧ୍ୟ ପରମ୍ପରା-ମାନ୍ୟତାର ଆଭାସ ମିଳେ । ଏହି ଆଭାସ କେତେବେଳେ ପ୍ରତ୍ୟକ୍ଷ ତ କେତେବେଳେ ପରୋକ୍ଷ । ଆଧୁନିକ କବିତା ସଙ୍କଳନର ନାମକରଣ ପୂର୍ଣ୍ଣତଃ ପ୍ରତୀକାତ୍ମକ । ସଙ୍କଳନର ନାମକରଣ ପାଇଁ ଆମ ଓଡ଼ିଆ କବିତା-ପରମ୍ପରା ଯଥେଷ୍ଟ ହୁଅନ୍ତା ନାହିଁ । ସେ ପାଇଁ ପ୍ରାଚୀନ ସଂସ୍କୃତ ସାହିତ୍ୟ ପ୍ରତି ମଧ୍ୟ ଅନୁରାଗ ପ୍ରକାଶ ପାଇଛି । ବେଣୁଧର ରାଉତଙ୍କ 'ପିଙ୍ଗଳାର ସୂର୍ଯ୍ୟ', କମଳାକାନ୍ତ ଲେଙ୍କାଙ୍କ 'ସ୍ରୋତର ନାମ ରିତ', ରମାକାନ୍ତ ରଥଙ୍କ 'ଶ୍ରୀରାଧା', ହରିହର ମିଶ୍ରଙ୍କ 'ଶଙ୍ଖନାଭି', ସୌଭାଗ୍ୟ କୁମାର ମିଶ୍ରଙ୍କ 'ବଜ୍ରଯାନ', ସୌରୀନ୍ଦ୍ର ବାରିକଙ୍କ 'ଉପ ଭାରତ', ପ୍ରହରାଜ ସତ୍ୟନାରାୟଣ ନନ୍ଦଙ୍କ 'ଶବସଂଗମ (ଓ ଅନ୍ୟାନ୍ୟ କବିତା)', ନିତ୍ୟାନନ୍ଦ ନାୟକଙ୍କ 'ବିପର୍ଣ୍ଣମରାଳ', ପ୍ରତିଭା ଶତପଥୀଙ୍କ 'ସାହାଡ଼ା ସୁନ୍ଦରୀ', ଦୀପକ ମିଶ୍ରଙ୍କ 'ସପ୍ତମ ପୃଥିବୀ', 'ଅରଣା ମଇଁଷି', ସୀତାକାନ୍ତ ମହାପାତ୍ରଙ୍କ 'ଚିତ୍ରନଦୀ', ଲକ୍ଷ୍ମୀନାରାୟଣ ମହାପାତ୍ରଙ୍କ 'ତାର ସପ୍ତକ', 'ଭୂମା', ଗିରିଜା କୁମାର ବଳୀୟାରସିଂହଙ୍କ 'କ୍ରୌଞ୍ଚ-ମିଥୁନ', ମମତା ଦାଶଙ୍କ 'ନୈମିଷାରଣ୍ୟ' ପ୍ରଭୃତି କବିତାଗ୍ରନ୍ଥମାନଙ୍କର ନାମକରଣ ଏ ପ୍ରସଙ୍ଗରେ ସ୍ମରଣଯୋଗ୍ୟ ଓ ବିଚାର୍ଯ୍ୟ । ସଙ୍କଳନର ସାଙ୍କେତିକ ରୂପମାନ ପୂର୍ଣ୍ଣତଃ ଓଡ଼ିଆ କାବ୍ୟ-ପରମ୍ପରାର ନୁହଁନ୍ତି । ଏଠାରେ ବେଦ ଉପନିଷଦ, ସଂସ୍କୃତ ସାହିତ୍ୟଠୁଁ ଆରମ୍ଭ କରି ଚର୍ଯ୍ୟାସାହିତ୍ୟ, ଲୋକସାହିତ୍ୟ ଏବଂ ଶୂନ୍ୟ-ସାଧନା-ପରମ୍ପରା ରଚନାମାନଙ୍କୁ କବିଏ ସ୍ମରଣ କରିଛନ୍ତି, ଗ୍ରହଣ କରିଛନ୍ତି ।

[ଛ] କେବଳ ସଙ୍କଳନମାନଙ୍କର ନାମକରଣ ନୁହେଁ କବିମାନଙ୍କ ବ୍ୟକ୍ତିତ୍ୱ ଓ ଜୀବନ ଦର୍ଶନ ସଂପର୍କୀୟ କବିତା ତଥା ତାଙ୍କ ନାମକୁ ସ୍ୱରଚନାରେ ସମ୍ମାନସୂଚକ ଭାବରେ ପ୍ରୟୋଗ କରିବା ହେଉଛି ପରମ୍ପରା-ମାନ୍ୟତାର ଅନ୍ୟତମ ବୈଶିଷ୍ଟ୍ୟ ଲକ୍ଷଣ ।

କେବଳ ସ୍ତୁତିଗାନ ବା ସ୍ମରଣ ନୁହେଁ, ପରମ୍ପରା-ମାନ୍ୟତାର ନିବିଡ଼ ଆଚ୍ଛନ୍ନତା ଏଥିପାଇଁ ଦାୟୀ । କୌଣସି କବିଙ୍କ ମୃତ୍ୟୁ, ଜନ୍ମଦିନ କିମ୍ବା ଶ୍ରାଦ୍ଧ ବାର୍ଷିକୀକୁ ଉପଲକ୍ଷ୍ୟ କରି ସେଇଲାଗି ଦୈନିକ ଖବରକାଗଜ ବା ପତ୍ରପତ୍ରିକାରେ ସଂଖ୍ୟାଧିକ କବିତା ଦେଖିବାକୁ ମିଳେ । ଉତ୍କଳମଣି ଗୋପବନ୍ଧୁଙ୍କ ଉପରେ ଓଡ଼ିଆ କବିଏ ଶତାଧିକ କବିତା ରଚନା କରିଛନ୍ତି । ତନ୍ମଧ୍ୟରୁ କେତୋଟି କବିତା କଳା ଦୃଷ୍ଟିରୁ ଅନନ୍ୟ । ଅବଶ୍ୟ ଗୋପବନ୍ଧୁଙ୍କ କବି-ବ୍ୟକ୍ତିତ୍ୱ ଭିନ୍ନ ଅନ୍ୟାନ୍ୟ କବିମାନଙ୍କୁ ମଧ୍ୟ ଆକୃଷ୍ଟ କରିଛି । ଯେପରି ଉପେନ୍ଦ୍ର ଭଞ୍ଜ (ଜାନକୀ ବଲ୍ଲଭ ମହାନ୍ତି) [ଭରଦ୍ୱାଜ], ସାଲବେଗ (ବୈକୁଣ୍ଠନାଥ ପଟ୍ଟନାୟକ 'ଝଙ୍କାର' ଏପ୍ରିଲ-୧୯୭୫ ଏବଂ ରଜନୀକାନ୍ତ ଦାସ 'ନବପତ୍ର'-ଜାନୁୟାରୀ ୧୯୮୩), ଗୋଦାବରୀଶ ('ଉତ୍କଳ ପୁରୁଷ', ସଚ୍ଚି ରାଉତରାୟ ଏବଂ 'ଏଲୋକ', ବେଣୁଧର ରାଉତ 'ପିଙ୍ଗଳାର ସୂର୍ଯ୍ୟ'), ଭୀମଭୋଇ (ରାଧାମୋହନ ଗଡ଼ନାୟକ, ହରେଜରଞ୍ଜନ ମହାନ୍ତି), ମାନସିଂହ (ସଚ୍ଚି ରାଉତରାୟ, ବେଣୁଧର ରାଉତ ପ୍ରମୁଖ) ପ୍ରଭୃତି କବିଙ୍କ ବ୍ୟକ୍ତିତ୍ୱ ଓ ଜୀବନ-ସାଧନା ନେଇ ବହୁତ ସୁନ୍ଦର ସୁନ୍ଦର ଭାବ ଉଦ୍ଦୀପକ କବିତାମାନ ରହିଛି ।

ଏ ପରମ୍ପରା-ମାନ୍ୟତାରେ ପୂର୍ବବର୍ତ୍ତୀ କବିଙ୍କ କାବ୍ୟଧାରାକୁ ପରବର୍ତ୍ତୀ କବି ତାର ସୃଷ୍ଟିରେ ସମନ୍ୱୟ କରିପାରେ, ବିରୋଧ କରିପାରେ, ସମାଲୋଚନା କରିପାରେ, ସହାନ୍ଧକ ଭାବେ ନେଇ ନିଜର ସ୍ୱକୀୟତା ପ୍ରଦର୍ଶନ କରିପାରେ । 'ମହାଯାତ୍ରା' ମହାକାବ୍ୟରେ ରାଧାନାଥ ରାୟ ସାରଳା ଦାସ ଓ ମହାଭାରତକୁ ସ୍ମରଣ ରଖିଛନ୍ତି । ଅପରନ୍ତୁ 'କୋଣାର୍କେ' କାବ୍ୟରେ ରାଧାନାଥ-କାବ୍ୟ-ଆଭିମୁଖ୍ୟକୁ କବି ନୀଳକଣ୍ଠ ସମାଲୋଚନା କରି ବସିଛନ୍ତି । ( ନୀଳକଣ୍ଠ କାବ୍ୟରେ ରାଧାନାଥଙ୍କ ପ୍ରଭାବ ଅବଶ୍ୟ ପରିଦୃଷ୍ଟ ) । ସ୍ୱକୀୟ କାବ୍ୟ ଆଭିମୁଖ୍ୟ ଏବଂ ବକ୍ତବ୍ୟକୁ ପ୍ରକାଶ କରିବାରେ ନିମ୍ନୋକ୍ତ ପଂକ୍ତିମାନଙ୍କରେ କିପରି କବିତା ପରମ୍ପରାକୁ ସ୍ମରଣ କରାଯାଇଛି, ତାହା ଦେଖନ୍ତୁ ।

୧) 'ମୁଁ ସଚ୍ଚି ରାଉତରାୟ
(ନୁହେଁ ଟାଗୋର ବା ଶେଲି)
ମୁଁ ଏଇ ମାଟିର ଧରା,
ଆଉ ଆକାଶର କବି
କାମ ନୁହେଁ ମୋ ଖାଲି ଆଙ୍କିବା କାଗଜର ଛବି ।

ରଜନେମା : ସଚ୍ଚି ରାଉତରାୟ—'ପାଣ୍ଡୁଲିପି'

(ଏହା ଓଡ଼ିଆ କବିତା ପରମ୍ପରାର ଉଦାହରଣ ନହେଲେ ମଧ୍ୟ ନିଜ କାବ୍ୟ ଅଙ୍ଗୀକାରରେ କବିଟି ଅନ୍ୟମାନଙ୍କ କବିତାର ପରମ୍ପରାଠୁଁ କିପରି ଭିନ୍ନ ତାହା ପ୍ରକାଶ ପାଇଛି ।)

୨) (କ) ମୁଁ ତୁମ୍ଭେ ଧୂପର ହ୍ରଦରେ ଚୁମ୍ବନର ଗାର୍ଲସ୍କୁଲ, ଚମ୍ପା ଗାଁ
ନାୟକ .. × × × ।

(ଖ) ଆକାଶରୁ ଖସିପଡ଼େ ତାମ୍ର ଆଉ ସଚ୍ଚି ରାଉତରାୟ ।

(ଗ) ତୁମକୁ ବା ସଚ୍ଚିବାବୁ ଦେଖିଥିଲେ କେବେ ମନେ ନାହିଁ ଅଳକା
ସାନ୍ୟାଲ × × × ।

(ଘ) ଧୂପର ବାରନ୍ଦ ପରେ ସ୍ଥପତି ଏ ଆଷାଢ଼ର ଭଗ୍ନତୁର ମେଘ ।
'ସମୁଦ୍ର ସ୍ନାନ', ୧୯୭୦ : ଗୁରୁପ୍ରସାଦ ମହାନ୍ତି ।

(ଏ ପଂକ୍ତିମାନଙ୍କରେ କବିପୂର୍ଣ୍ଣ, କାଳୀଚରଣ, ସଚ୍ଚିଦାନନ୍ଦ ରାଉତରାୟ, ମାନସିଂହଙ୍କ ଏବଂ ତାଙ୍କର ବିଭିନ୍ନ ସୃଷ୍ଟି ସ୍ୱାକ୍ଷରକୁ ଶ୍ରଦ୍ଧା ଓ ସମ୍ମାନର ସହିତ ସ୍ମରଣ କରାଯାଇଛି । କବିତାର ପଂକ୍ତିମାନଙ୍କରେ ଚମତ୍କାର ଭାବେ ଏହାର ସମୀକରଣ ହୋଇଛି । କବିଙ୍କର ବିରୋଧାଭାଷ ଓ ସମନ୍ୱୟ ଦୃଷ୍ଟିଭଙ୍ଗୀ ମଧ୍ୟ ଲକ୍ଷ୍ୟ କରାଯାଇପାରେ ।)

୩) ସବୁ ଋତୁ/କାହାକୁ ଦୁଃଖର ହେବ ? କାହାକୁ ଚିହ୍ନିତ କରାଯିବ ବିଷାଦକୁ ଋତୁ ରୂପେ ? କାହାର ମୃତ୍ୟୁକୁ ସିନ୍ଧାଯାଇ ବେହାଗର କୃତ୍ରିମ ପୋଷାକ ପ୍ରେମ ଋତୁର ନାମ ଦିଆଯିବ ? ଏଠି ତ ଜୀବନ ନାଟକ ଛ ନଜର ଜଣ × × × ।

ବାଇଶେଣୀ ଋତୁ : ସରୋଜରଞ୍ଜନ ।

( ଭାନୁଜୀ ରାଓ ଓ ରମାକାନ୍ତ ରଥଙ୍କ କାବ୍ୟଗ୍ରନ୍ଥ ଓ ଚେତନାର ଉଲ୍ଲେଖ ସହ ସ୍ୱକୀୟ ଆଭିମୁଖ୍ୟ ସଂପର୍କରେ କୁହାଯାଇଛି ।)

[ଜ] ଏକା ଶୀର୍ଷକରେ ବା ସମାନ ବିଷୟବସ୍ତୁକୁ କେନ୍ଦ୍ରକରି କବିତା ରଚନା କରାଯିବା ପରମ୍ପରା-ମାନ୍ୟତାର ଆଉ ଏକ ଉଦାହରଣ । 'କୋଣାର୍କ' ଶିରୋନାମାରେ ପଣ୍ଡିତ ନୀଳକଣ୍ଠ ଦାସଙ୍କଠୁଁ ଆରମ୍ଭ କରି ରାଉତରାୟ-ମାନସିଂହଙ୍କ ପର୍ଯ୍ୟନ୍ତ କବିତାର ପରମ୍ପରା ଲମ୍ବି ଆସିଛି । କବିଙ୍କ ଏ ସଂପର୍କୀୟ ଆଭିମୁଖ୍ୟକୁ ମଧ୍ୟ ଆଲୋଚନା ସମାଲୋଚନା ( 'ଝଙ୍କାର' ଏବଂ 'ଇସ୍ତାହାର' ପତ୍ରିକା ଦ୍ରଷ୍ଟବ୍ୟ) କରାଯାଇଛି । କୋଣାର୍କ ଶୀର୍ଷକରେ ଭାନୁଜୀ ରାଓ ( 'ବିଷାଦ ଏକ ଋତୁ' : ୧୯୭୩) ଏବଂ ବଂଶୀଧର ଷଡ଼ଙ୍ଗୀଙ୍କର କବିତା ମଧ୍ୟ ରହିଛି । ଏସବୁର ଏକୀକରଣ ଏବଂ ଆଲୋଚନା ମଧ୍ୟ ଆବଶ୍ୟକ । ଏ ପ୍ରସଙ୍ଗରେ ଆଉ ଦୁଇଟି (ପାଠକମାନଙ୍କ ଖୁବ୍ ପରିଚିତ) କବିତା ଆମ ଦୃଷ୍ଟି ଆକର୍ଷଣ କରନ୍ତି । ତାହା ସଚ୍ଚି-ରାଉତରାୟଙ୍କ ବିରଚିତ 'ଅଳକା ସାନ୍ୟାଲ' ଓ 'ପ୍ରତିମା ନାୟକ' କବିତା । ରାଉତରାୟଙ୍କ ଅଳକା ସାନ୍ୟାଲର ଜନ୍ମଜାତକ ବଙ୍ଗୀୟ କବିତା 'ବନଲତା ସେନ୍' (ଜୀବନାନନ୍ଦ ଦାସ)ରୁ ଉଦ୍ଭୂତ ହୋଇଛି । ଏହାର ପରବର୍ତ୍ତୀ ରୂପକାର ଗୁରୁପ୍ରସାଦ ମହାନ୍ତି । ରାଉତରାୟଙ୍କ

ଝଙ୍କାରରେ ଅଲିଙ୍କା ଦାନ୍ୟାଲର ଐଶ୍ୱର୍ଯ୍ୟମୟ ରୂପ ପରିକଳ୍ପିତ ହୋଇଥିଲେ ହେଁ
ଗୁରୁପ୍ରସାଦଙ୍କ ହାତରେ ତାହା ବାସ୍ତବ ସମସ୍ୟା ଓ ସମୟର ପ୍ରଭାବପିଷ୍ଟ ପ୍ରାଣହୀନ
ସୌନ୍ଦର୍ଯ୍ୟରେ ପରିଣତ ହୋଇଛି । 'ପ୍ରଥମା ନାୟକ'ର ନାୟିକା ବିଶ୍ୱଯୁଦ୍ଧ ପରବର୍ତ୍ତୀ
ବାସ୍ତବ ନାରୀ । ତେବେ ଏ ଦୁଇ କବିତାର ଅନୁରୂପ ଭାବବସ୍ତୁ ବା ଚରିତ୍ରକୁ ନେଇ କବିତା
ଲେଖିବାକୁ ଯାଉଥିବା କୌଣସି କବି ନିମ୍ନୋକ୍ତ ପ୍ରସଙ୍ଗ ସ୍ମରଣ ରଖିବା ଅପ୍ରାସଙ୍ଗିକ ହେବ
ନାହିଁ ଯେ—(କ) ଏପ୍ରକାର ନୂଆ କବିତାର ଆବେଦନ ପୂର୍ବ କବିତାମାନଙ୍କୁ ବଳିପାରୁଛି
କି ? (ଖ) ନୂଆ କବିତାରେ ଭିନ୍ନ, ମୌଳିକ କଥାଟିଏ କୁହାଯାଉଛି ନା ନାହିଁ ?

ଏ ପରିପ୍ରେକ୍ଷୀରେ ତୁଳନାତ୍ମକ ବିବେଚନା ପାଇଁ ପ୍ରାୟ ଏକା ଶୀର୍ଷକରେ
ଲେଖାଯାଇଥିବା ବିଭିନ୍ନ କବିତାମାନଙ୍କର ସଙ୍କଳନ ପ୍ରକାଶ କରିବା ଏବଂ ତତ୍ସମ୍ପର୍କୀୟ
ଆଲୋଚନା କରିବାର ଅବକାଶ ରହିଛି । ଓଡ଼ିଆ ସମାଲୋଚନାରେ ତାହା ପ୍ରାୟ ଆରମ୍ଭ
ହୋଇନାହିଁ କହିଲେ ଚଳେ । ଡକ୍ଟର ପ୍ରଫୁଲ୍ଲ କୁମାର ମହାନ୍ତି 'ନବରବି' ପତ୍ରିକାରେ
ତିନୋଟି ଜହ୍ନ କବିତା ( 'କବିତାର କ୍ଲାସ' ବିଭାଗରେ ) ଶିରୋନାମାରେ ଆଲୋଚନାଟିଏ
( 'ଶରତ ଋତୁରେ ଜହ୍ନ' ଗୁରୁପ୍ରସାଦ ମହାନ୍ତି, 'ଜହ୍ନରାତି' ରମାକାନ୍ତ ରଥ, 'ଅସ୍ତଜହ୍ନର
ଏଲିଜି' : ସୌଭାଗ୍ୟ କୁମାର ମିଶ୍ର) ପ୍ରକାଶ କରିଥିଲେ । ଏହା ଅବଶ୍ୟ ତୁଳନାତ୍ମକ
ଆଲୋଚନା । ନିକଟରେ ଆଲୋଚକ ଅଭିନ୍ନ ଚନ୍ଦ୍ର ସାହୁ 'ଝଙ୍କାର' ପତ୍ରିକାର ଦୁଇଟି
ସଂଖ୍ୟାରେ ଓଡ଼ିଆ କାବ୍ୟ ପରଂପରାରେ 'ଜହ୍ନ' ଏବଂ ରମାକାନ୍ତ ରଥଙ୍କ 'ଜହ୍ନରାତି'
ବିଷୟକ କବିତାର ଆଲୋଚନାଟିଏ ଲେଖିଛନ୍ତି । ବିଭିନ୍ନ ଋତୁ, ବିଭିନ୍ନ ପକ୍ଷୀ, ଜହ୍ନ,
ନାରୀ, ସମୟ, ସମୁଦ୍ର, ଭାରତବର୍ଷ, ନଦୀ, ମୃତ୍ୟୁ (ଚିଲ, ଶାଗୁଣା, ମଇଁଷି ପ୍ରଭୃତି)
ଇତ୍ୟାଦି ବିଭିନ୍ନ ଶିରୋନାମାରେ ରଚିତ କବିତାମାନଙ୍କୁ ଏକାଠି ପର୍ଯ୍ୟାଲୋଚନା କଲେ
ପରଂପରା-ମାନ୍ୟତାର ସୂକ୍ଷ୍ମସ୍ୱରୂପ ଉପଲବ୍ଧ ହେବ ।

[ଙ] ବିଭିନ୍ନ କାଳର କବିତାରେ କବିର ଜୀବନ-ଦୃଷ୍ଟି ପ୍ରତ୍ୟକ୍ଷରେ ବା
ପରୋକ୍ଷରେ ତା'ର ସୃଷ୍ଟିରେ ପ୍ରତିବିମ୍ବିତ ହୋଇଥାଏ । କବି ଏ ଜୀବନ ସଂପର୍କୀୟ
ବକ୍ତବ୍ୟକୁ ପ୍ରତ୍ୟକ୍ଷରେ ବା ପରୋକ୍ଷରେ କବିତାରେ ସଂଯୋଜିତ କରିଥାନ୍ତି । ପୂର୍ବବର୍ତ୍ତୀ
କବିର ଜୀବନ-ଦୃଷ୍ଟିକୁ ପରଂପରା ସଚେତନ କବି ନିଶ୍ଚିତ ଭାବରେ ପରଖି ଥାଏ । ଜୀବନ
ସଂପର୍କୀୟ କୌଣସି ବାକ୍ୟ ବା ପଂକ୍ତି ଉଚ୍ଚାରଣ କଲାବେଳେ ଆମେ ବିଭିନ୍ନ ସମୟର
କବିମାନଙ୍କ ଦୃଷ୍ଟିକୋଣର ବିବିଧତାକୁ ଲକ୍ଷ୍ୟ କରିପାରିବା । ପରଂପରାକୁ ସିଧାସଳଖ
ମାନ୍ୟ ପ୍ରଦର୍ଶନ କରୁ ନଥିଲେ ହେଁ ପରବର୍ତ୍ତୀ କବିଏ ଅନ୍ତଃକରଣରେ ନିଶ୍ଚୟ ଜୀବନ-
ସଂପର୍କୀୟ ଦୃଷ୍ଟିକୋଣକୁ ଚିନିଖି ଥିବେ, ପରଖି ଥିବେ, ଜୀବନ ଅନୁଭବ ଏବଂ ପରମ୍ପରା-
ଅନ୍ୱେଷଣ ଦ୍ୱାରା କାବ୍ୟକାରର ଜୀବନ-ଦୃଷ୍ଟି ନିର୍ଣ୍ଣୀତ ହୁଏ । ଜୀବନ-ସଂପର୍କୀୟ ସେହିପରି
କେତୋଟି ଉଚ୍ଚାରଣକୁ ନିମ୍ନରେ ଉଲ୍ଲେଖ କରାଯାଉଛି ।

୧) ପ୍ରାଣୀଙ୍କ ଆରତ ଦୁଃଖ ଅପ୍ରମିତ
ଦେଖୁ ଦେଖୁ କେବା ସହୁ,
ମୋ ଜୀବନ ପଛେ ନର୍କେ ପଡ଼ିଥାଉ
ଜଗତ ଉଦ୍ଧାର ହେଉ ।
ସପ୍ତଦଶ ବୋଲି—'ସ୍ତୁତି ଚିନ୍ତାମଣି'—ଭୀମଭୋଇ

( ସଂସାରର ଦୁଃଖରେ ଜର୍ଜରିତ କବି ଭୀମଭୋଇଙ୍କ ଆତ୍ମାର ବିଷାଦ ଓ ତାଙ୍କର ମାନବତାବାଦ ଏଥିରେ ରୂପ ପାଇଛି । )

୨) (କ) ମଧୁସୂଦନଙ୍କ 'ଜୀବନ-ଚିନ୍ତା'

(ଖ) 'ଏ ସୃଷ୍ଟି ଅମୃତମୟ ହେ' କବିତା

( 'ଜୀବନ-ଚିନ୍ତା'ରେ କ୍ଷଣସ୍ଥାୟୀ ଓ ମାୟାପୂର୍ଣ୍ଣ ପାର୍ଥିବ ବାସନା ପରିତ୍ୟାଗ କରି ପରମାତ୍ମାଙ୍କ ଚରଣ ପ୍ରତି ଧ୍ୟାନନିଷ୍ଠ ହେବାକୁ ଉଦାତ୍ତ ଆହ୍ୱାନ ରହିଛି । 'ଏ ସୃଷ୍ଟି ଅମୃତମୟ ହେ' କବିତାରେ କବି ସଂସାରର ସକଳ ଦୁଃଖ ଓ କ୍ଳେଶରେ ଅମୃତର ସତ୍ତା ଅନୁଭବ କରିଛନ୍ତି ।)

୩) ଗଙ୍ଗାଧର ମେହେରଙ୍କ 'ମଧୁମୟ' କବିତା

( ଏ ପୃଥିବୀ ସ୍ରଷ୍ଟାର ଆଶିଷରେ ମଧୁମୟ—ଏ ଉପଲବ୍ଧି କବିତାଟିରେ ଅନ୍ତର୍ନିହିତ ହୋଇଛି ।)

୪) ବୈକୁଣ୍ଠନାଥ ପଟ୍ଟନାୟକଙ୍କ 'ଯାତ୍ରା ସଙ୍ଗୀତ' କବିତା

(ଏଥିରେ ଜୀବନର ପ୍ରାପ୍ତି ଓ ଅପ୍ରାପ୍ତିକୁ ଗ୍ରହଣ କରିସାରି ଜୀବନକୁ ସ୍ୱୟଂ 'ଜୀବନ-ଦେବତା' ଆଖ୍ୟା ଦିଆଯାଇ ଆରାଧନା କରାଯାଇଛି ।

୫) (କ) 'ରୋଗ କ'ଣ ? ଭୀଷଣ ଓ ଭୟଙ୍କର ଜୀବନ, ଜୀବନ ।'—ସୌଭାଗ୍ୟ ମିଶ୍ର । ('ଜୀବନ-ଚିନ୍ତା' କବିତାରେ କବିଙ୍କ ଏ ଉକ୍ତି ମଧୁସୂଦନ ରାଓଙ୍କୁ ସ୍ମରଣ କରାଇବା ସହିତ ଜୀବନ ଏକ ଭୟପ୍ରଦ ଓ କଷ୍ଟକର ସାଧନା ବୋଲି ଘୋଷଣା କରିଛି ।)

(ଖ) ହସୁଛି ମନ୍ଦ : କଣ୍ଟକରେ, କର୍ଦ୍ଦମରେ × ×
ଫୁଲରେ ଓ କୁଷ୍ଠରୋଗୀର ଘା'ରେ ।

× × ×

ଅନ୍ଧ ମହୁମାଛି/ଉଡ଼ୁଥା', ବୁଲୁଥା', ବୁଲୁଥା' ।
କିଛି ଦେଖିନା, ଦେଖିନା, ଦେଖିନା,
ଯାହାପାଉଛୁ ଶୁଣି ପୂରାଇ ଦେଉଛି ନେ' ଦେଉଛି ନେ' ।
ହିସାବ ହେବ ପରେ ।

(ସୌଭାଗ୍ୟ କୁମାର ମିଶ୍ର, 'ଅନ୍ଧ ମହୁମାଛି' : ୧୯୭୬)

(ମହୁମାଛିକୁ ଅନ୍ଧ ହେବାକୁ ପଡ଼ିବ । ମଧୁସୂଦନଙ୍କ ପରି କବି ସୃଷ୍ଟିର ସୌନ୍ଦର୍ଯ୍ୟରେ ବିମୋହିତ ହୋଇଛନ୍ତି ଏବଂ ସୂଳଠୁଁ କୃଷ୍ଣବେଣୀ ଯାଏ ଜୀବନର ସକଳ ଦୃଶ୍ୟକୁ ଗ୍ରହଣ କରିଛନ୍ତି । 'ଏ ସୃଷ୍ଟି ଅମୃତମୟ ହେ' କବିତାର ଆଧୁନିକ ଓ ପରିବର୍ତ୍ତିତ ସଂସ୍କରଣ 'ଅନ୍ଧ ମହୁମାଛି') । (କ)

୬) ଏପରି କେଉଁ ଦୁଃଖ ଅଛି କହ
ଯାହା ଜୀବନଠାରୁ ଅଧିକ ଘୋର ?
('ଅବଜ୍ଞାର ମନ' ଦୀପକ ମିଶ୍ର : ପ୍ରେମ ପୃଥିବୀ : ୧୯୭୭)

(ଜୀବନ ହିଁ ସବୁଠୁ ବଡ଼ ଦୁଃଖ ବୋଲି ଏଠାରେ ଘୋଷଣା କରାଯାଇଛି ।)

ପରଂପରା-ମାନ୍ୟତା ପ୍ରସଙ୍ଗରେ ଏସବୁ ଉଦ୍ଧୃତିରୁ ଜୀବନ-ଦୃଷ୍ଟିର ସାମ୍ୟ ଓ ତାରତମ୍ୟ ଲକ୍ଷ୍ୟ କରାଯାଇପାରେ । କେବଳ ସେତିକି ନୁହେଁ ବିଭିନ୍ନ କାଳରେ କବିଙ୍କ ରୂପପ୍ରାଣତା, ଅରୂପ-ପ୍ରୀତି ଆଦି ଭାବର ତୁଳନାତ୍ମକ ଅଧ୍ୟୟନ ଆବଶ୍ୟକ ।

[ଡ] ଆମ ସାହିତ୍ୟରେ ଭକ୍ତି-କବିତାର ଏକ ସୁଷ୍ଠୁ ପରଂପରା ରହିଛି । ମଧ୍ୟଯୁଗୀୟ କବିମାନେ ସାହିତ୍ୟ-ସାଧକ ଅପେକ୍ଷା ବେଶୀଭାବେ ଜୀବନ-ସାଧକ ଥିଲେ । ଏ ଜୀବନ-ସାଧନା ମୁଖ୍ୟତଃ ବୈଷ୍ଣବ-ଭାବ-ଅନୁରାଗ । କବିତା ହୁଏତ ଥିଲା ସାଧନା-ତଟିନୀର ଉଦ୍‌ବେଳିତ ଡେଉ; କିନ୍ତୁ ଭକ୍ତି ଚେତନା ଥିଲା ତହିଁର ଶୁଦ୍ଧ-ସ୍ରୋତ । ଯବନ କବି ସାଲବେଗଙ୍କଠୁଁ 'କ୍ରୋଧ କର କର ଲୁହର କବି' ଭୀମଭୋଇ (ରମାକାନ୍ତ ରଥଙ୍କ ଭାଷାରେ)ଙ୍କ ପର୍ଯ୍ୟନ୍ତ ଯେଉଁ ଭକ୍ତି କବିତାର ସୁଅ ଓଡ଼ିଆ ଗୀତିକବିତାର ଧାରାକୁ ଉବୁଟୁବୁ କରୁଥିଲା, ତାହା ଲୁହ ଜୁଡ଼ୁବୁଡ଼ୁ । ଗଭୀର ଭକ୍ତିଭାବଜନିତ ଆବେଗଦ୍ୱାରା କବିତା ଥିଲା ସ୍ୱତଃସ୍ଫୁର୍ତ୍ତି ଓ ପ୍ରାଣବନ୍ତ । ଗୀତିକବିତାର ଏ ଧାରାଟି ପଦ୍ୟସାହିତ୍ୟ ଓ ମୁକ୍ତ ଗଦ୍ୟଛନ୍ଦ ଆଶ୍ରିତ କବିତାରେ ତା' ନିଜସ୍ୱ ଗତିରେ ଆଉ ଆତ୍ମପ୍ରକାଶ କଲାନାହିଁ । ଓଡ଼ିଆ ଭକ୍ତି-ଗୀତି-କବିତା ପୂର୍ଣ୍ଣତଃ ଜଗନ୍ନାଥ-କେନ୍ଦ୍ରିତ କହିଲେ ଅତ୍ୟୁକ୍ତି ହେବନାହିଁ । ଏବେ ବେତାର

(କ) କମ ବିବର୍ତ୍ତନର ସ୍ୱର ଓ କବି ସୌଭାଗ୍ୟ ମିଶ୍ର, ଶତ୍ରୁଘ୍ନ ପାଣ୍ଡବ — ଇସ୍ତାହାର, ୩ ଏବଂ ୪ ମିଳିତ ସଂଖ୍ୟା : ୧୯୭୮ ।

ଚଳଚ୍ଚିତ୍ର ଆଦି ମାଧ୍ୟମରେ ଯେଉଁ ଭକ୍ତିଗୀତର ଧାରା ସଂପ୍ରତି ଅବ୍ୟାହତ ରହିଛି ତହିଁରୁ ଅନେକ ଶ୍ରଷ୍ଟ-ଆବେଗ ପରିପ୍ଳାବିତ । କୃତ୍ରିମତାର ପ୍ରତିଫଳନ ତହିଁରେ ବେଶି । ଏ ଗୀତକବିତାରୁ କ୍ୱଚିତ୍ କବିତା ପ୍ରାଚୀନ ଭକ୍ତି ସଙ୍ଗୀତ ଅନୁରୂପ ହେବ, ପ୍ରତିଦ୍ୱନ୍ଦ୍ୱୀ ହେବାର ପ୍ରଶ୍ନହିଁ ନାହିଁ । ପରଂପରା-ମାନ୍ୟତା ନାଁରେ ପ୍ରାୟତଃ ବିକଳ ଅନୁକରଣ (ହନୁକରଣ ?) ଏହି ଗୀତମାନଙ୍କରେ ପରିଲକ୍ଷିତ ହୁଏ ।

ପ୍ରାଚୀନ କାବ୍ୟ-ପରଂପରାର ଅନୁସରଣରେ ଯେଉଁ ଜଗନ୍ନାଥ-କେନ୍ଦ୍ରିତ 'ଅନାମ କବିତା' ଆନ୍ଦୋଳନ ବିଗତ ଦଶକରେ ମୁଣ୍ଡ ଟେକିଥିଲା, ତା'ର ଆବେଦନ ହଳିବେଗ-ବଳଦେବ-ବନମାଳୀଙ୍କର ଯେକୌଣସି ଭକ୍ତ କବିତାର ଆବେଦନଠାରୁ ମଧ୍ୟ କ୍ଷୀଣ ମନେହୁଏ । କେବଳ ଭକ୍ତିଭାବ ଅବଶ୍ୟ ଏ କବିତାମାନଙ୍କର ମୁଖ୍ୟ ଆଭିମୁଖ୍ୟ ନୁହେଁ ।

ସମୟର ପ୍ରଭାବରେ ଈଶ୍ୱର ଚେତନା ବହୁବାର ଭିନ୍ନ ରୂପ ନେଇ ସାରିଲାଣି । ଈଶ୍ୱର ସଂପ୍ରତି ବ୍ୟଙ୍ଗବିଦ୍ରୂପ ଓ ଶ୍ଳେଷର ଶରଶଯ୍ୟାରେ ଶାୟିତ ଅସହାୟ ଖ୍ରୀଷ୍ଟ । ସୌଭାଗ୍ୟ କୁମାର ମିଶ୍ର 'ଅନ୍ଧ ମହୁମାଛି'ରେ କହନ୍ତି—

> 'ଈଶ୍ୱରଙ୍କୁ ଦେଖୁନା ? ପୂରାପୂରି ସ୍କ୍ରୁ ଢ଼ିଲା
> ଯାଡ଼ୁ ଦ୍ୟାଡ଼ୁ କେଇଟା ବଙ୍କା ରଙ୍ଗ
> କ'ଣ ନା ଇନ୍ଦ୍ରଧନୁ !' (ହୃଦୟେଶ୍ୱରୀ)

ହରିହର ମିଶ୍ର କବିତା ଓ ସଂକଳନର ନାମ ରଖନ୍ତି 'ଅକ୍ଷମ ଦେବତା' । ଈଶ୍ୱରଙ୍କ ପ୍ରତି ଶ୍ଳେଷର ସ୍ୱର କମଳାକାନ୍ତ ଲେଙ୍କା, ( 'ଈଶ୍ୱରଙ୍କ ଫାଶି ପାଇବା ଦିନ', 'ଛେଉପର୍ବଟି' ଆଦି କବିତା ) ସୌଭାଗ୍ୟ ମିଶ୍ର, ଦୀପକ ମିଶ୍ର ପ୍ରଭୃତିଙ୍କ କବିତାରେ ପରିଲକ୍ଷିତ ହୁଏ । ବର୍ତ୍ତମାନର କ୍ଲାନ୍ତି, ଯନ୍ତ୍ରଣା, ଅପୂର୍ଣ୍ଣତାରୁ ମୁକ୍ତି ପାଇବା ନିମିତ୍ତ କବି ଈଶ୍ୱରଙ୍କୁ ଗୁହାରି କରି ନାହିଁ । ଭକ୍ତଚରଣଙ୍କ 'ମନବୋଧ ଚଉତିଶା', ଅଚ୍ୟୁତାନନ୍ଦଙ୍କ ଶୂନ୍ୟ ଉପାସନା ଏବଂ ଭୀମଭୋଇଙ୍କ ଭଜନ ପରି ତା' ସ୍ୱର ଏନେଇ ଖୁବ୍ ଗମ୍ଭୀର ଓ ବାଷ୍ପରୁଦ୍ଧ ମଧ୍ୟ । ପ୍ରତିଟି ଓଡ଼ିଆ କବିଙ୍କ କବିତାରୁ ଏ ଉଦାହରଣ ଦିଆଯାଇ ପାରିବ । ଗୁରୁପ୍ରସାଦ, ବ୍ରହ୍ମୋତ୍ରୀ, ସୀତାକାନ୍ତ, ଦୀପକ, ଦୁର୍ଗାଚରଣ, କମଳାକାନ୍ତ, ପ୍ରତିଭା, ମୃତ୍ୟୁଞ୍ଜୟ, ନାରାୟଣ ବଳ, ବଂଶୀଧର ଷଡ଼ଙ୍ଗୀ, ପ୍ରମୋଦ ମହାନ୍ତି ଆଦି କବିଙ୍କ ବହୁ କବିତାରେ ଈଶ୍ୱର ଅନୁଚିନ୍ତା ଏକ ପରିବର୍ତ୍ତିତ ପ୍ରେକ୍ଷାପଟ ନେଇ ବିଦ୍ୟମାନ । ତାହା ପରମ୍ପରାକୁ ଯେତିକି ମାନ୍ୟକରେ, ସେତିକି ଅଧିକ ଭାବରେ ନୂଆ ରୂପ ନେଇ ଠିଆ ହୁଏ । କବି ରମାକାନ୍ତ ରଥ ଏକ ଉତ୍ତୀର୍ଣ୍ଣ ଅଭିଜ୍ଞତା ଦ୍ୱାରା ଯନ୍ତ୍ରଣାରୁ ମୁକ୍ତ ପାଇବା ସମ୍ଭବ ବୋଲି କହନ୍ତି । ତାଙ୍କ କବିତା ଗ୍ରନ୍ଥ 'ସପ୍ତମ ଋତୁ'ରେ ଯେଉଁ ପରିକଳ୍ପନା ପ୍ରମୂର୍ତ୍ତ ହୋଇଛି, ତାହା କ'ଣ ଶ୍ରୀରଥଙ୍କ ଆଧ୍ୟାତ୍ମିକ ଅନ୍ୱେଷା ନୁହେଁ ?

ମଧୁସୂଦନଙ୍କ ସୃଷ୍ଟି-ଚେତନା, ବୈକୁଣ୍ଠ ନାଥଙ୍କ ଅରୂପ-ପ୍ରୀତି, ମାନସିଂହଙ୍କ ପ୍ରେମ-ପ୍ରଣୟ-ଅଭିବ୍ୟକ୍ତି ଏବର ଓଡ଼ିଆ କବିତାରେ ବହୁ ବାଟରେ ପ୍ରତିଫଳିତ ହୋଇଛି । ଏକଦା ରାଧାନାଥଙ୍କ 'ମହାଯାତ୍ରା ମହାକାବ୍ୟ','ଅମର୍ଷୀକାଣ୍ଡୀ' ଆଦିରେ ଜାତୀୟ ଭାବଧାରାର ପ୍ରତିଫଳନ ଘଟିଥିଲା । ମଧୁସୂଦନଙ୍କ ବିଭିନ୍ନ ଦେଶବନ୍ଦନା ମଧ୍ୟ ଅନୁରୂପ ଭାବ ବହନ କରିଥିଲା । ପରେ ସ୍ୱାଧୀନତା ଓ ସ୍ୱରାଜ୍ୟ ଆନ୍ଦୋଳନରେ ସେ ଜାତୀୟ ଭାବନା ଗୋଦାବରୀଶ ମହାପାତ୍ର, ବାଞ୍ଛାନିଧି ( ଦାସ ଓ ମହାନ୍ତି ), ବୀରକିଶୋର, ନିତ୍ୟାନନ୍ଦ ପ୍ରମୁଖଙ୍କ ହାତରେ ପରିବର୍ତ୍ତିତ ରୂପ ନେଲା । ଓଡ଼ିଆ କବିତା ପରମ୍ପରାରେ ଏହାର ପରବର୍ତ୍ତୀ ବିକାଶ କିନ୍ତୁ ନାହିଁ । ( ମାନ୍ୟତା ଆରୋପ ପରବର୍ତ୍ତୀ ପ୍ରସଙ୍ଗ । ) ସ୍ୱାଧୀନତା ପ୍ରାପ୍ତି ପରେ ଯେମିତି ତା'ର ଆବଶ୍ୟକତା ସରିଯାଇଛି । ଏବେ ଯେମିତି ତାହା ଏକ ପୁନରାବୃତ୍ତିକରଣ । ପୂଜା ଆଦି ପର୍ବପର୍ବାଣୀ ମୁହୂର୍ତ୍ତରେ କିଛି ଦେଶବନ୍ଦନା ନୂଆଭାବରେ ଲେଖାଯାଏ କିମ୍ବା କୌଣସି ଜାତୀୟ ଦିବସରେ ତାହା ଗାନ କରାଯାଏ । ସ୍ୱାଧୀନତା ପରବର୍ତ୍ତୀ ସ୍ୱପ୍ନ ବା ସ୍ୱପ୍ନଭଙ୍ଗର କଥା ଏଣୁ କୌଣସି ପରବର୍ତ୍ତୀ କବିଙ୍କ ଲେଖାରେ ସ୍ୱାଧୀନତା ପରିପ୍ରେକ୍ଷୀରେ ସାର୍ଥକଭାବେ ଫୁଟିପାରି ନାହିଁ । ପୁନଶ୍ଚ ପ୍ରତ୍ୟକ୍ଷ ବ୍ୟଙ୍ଗ କବିତାର ଧାରା ଗୋଦାବରୀଶ ମହାପାତ୍ରଙ୍କ ହାତରେ ଯେଉଁ କଳା କୁଶଳ ରୂପ ପାଇଥିଲା, ଆଧୁନିକ କବିଏ ଉତ୍ତରାଧିକାର ସୂତ୍ରରେ ବା ପରମ୍ପରା-ମାନ୍ୟତା ସୂତ୍ରରେ ତହିଁରେ କୌଣସି ବିକାଶ ଇ କରିପାରି ନାହାନ୍ତି । ଅବଶ୍ୟ ସମସାମୟିକ ବ୍ୟଙ୍ଗପତ୍ରିକାମାନଙ୍କରେ ଏପ୍ରକାର କବିତା କିଛି ପ୍ରକାଶିତ ହୁଏ । କିନ୍ତୁ ତା'ର କଳାତ୍ମକ କୃତିତ୍ୱ ଉନ୍ନତ ଧରଣର ନୁହେଁ । ଏ ପରିପ୍ରେକ୍ଷୀରେ କବି ବ୍ରଜନାଥ ରଥଙ୍କ ପ୍ରକାଶୋନ୍ମୁଖୀ 'ଲଘୁଶତକ' କାବ୍ୟଗ୍ରନ୍ଥ ଉଲ୍ଲେଖ-ଯୋଗ୍ୟ । ଏଇ ବ୍ୟଙ୍ଗ କବିତା ରଚନାର ଭାବଟି ଅପ୍ରତ୍ୟକ୍ଷ ଭାବରେ ଅବଶ୍ୟ ବହୁ କବିଙ୍କଠାରେ ଲକ୍ଷ୍ୟ କରାଯାଇ ପାରିବ । ନନ୍ଦକିଶୋର ବଳ ଓ ହରିହର ରାଉତରାୟ ଓ ବିଦ୍ୟୁତ୍-ପ୍ରଭାଙ୍କ ହାତରେ ପଲ୍ଲୀଭାବନା ଯେଉଁ ବିଧିବଦ୍ଧ ଓ ବିଶିଷ୍ଟ ରୂପ ନେଇଥିଲା ପରମ୍ପରା-ମାନ୍ୟତା ସୂତ୍ରରେ ତା'ର ବିକାଶ କାହିଁ ? 'ଗାଥା-କବିତା' (ଗଡ଼ନାୟକ, କୃଷ୍ଣଚନ୍ଦ୍ର ତ୍ରିପାଠୀ ପ୍ରମୁଖ)ର ପରମ୍ପରା ତ ସ୍ୱୟଂ ଅବିକଶିତ । ସାମ୍ୟବାଦୀ ଭାବ ଏଯାବତ୍ ନିର୍ଦ୍ଦିଷ୍ଟ ପ୍ରଭାବ ବେଶୀ ଭାବରେ ସୃଷ୍ଟି କରିପାରି ନାହିଁ । ଓଡ଼ିଆ କବିତାର ବସ୍ତୁ ସ୍ୱଭାବର ବିଶ୍ଳେଷଣ ଦ୍ୱାରା ପରମ୍ପରା-ମାନ୍ୟତାର ଅସଲ ସ୍ୱରୂପ ଓ ବିକାଶକୁ ଲକ୍ଷ୍ୟ କରିହେବ ।

ପରମ୍ପରା-ମାନ୍ୟତାର ଆଉ ମୋଟେ ଯୋଡ଼େ କଥା କହି ଆମେ ଉପସଂହାରରେ ପହଞ୍ଚିବୁ । ପରମ୍ପରା-ମାନ୍ୟତାରେ ପୁରାଣର ଚରିତ୍ରମାନେ ବିଭିନ୍ନ ପ୍ରବୃତ୍ତିର ବିଶେଷିତଗତ ରୂପ ପ୍ରୟୋଗ ନିମିତ୍ତ ପ୍ରତୀକ ରୂପ ପରିଗ୍ରହ କରିଛନ୍ତି (ଯଥା : 'ଶୂନ୍ୟତାର ନୃସିଂହ ମୂର୍ତ୍ତିର ନଖଦନ୍ତ ଆଘାତରେ', 'ଦୁଃଖ ଓ ଅନୁଶୋଚନା ଦୁଃଶାସନ', 'ବୋଇତ ବନ୍ଦାଣ'— ସୀତାକାନ୍ତ ମହାପାତ୍ର) । ଏ ପ୍ରକାର ପ୍ରୟୋଗ ନିତ୍ୟାନନ୍ଦ ପତିଙ୍କ କବିତାରେ ବେଶୀ

ସୁଲଭ । ପୁନଶ୍ଚ ପୂର୍ବବର୍ତ୍ତୀ କବିର ପ୍ରତୀକ ମଧ୍ୟ ପରବର୍ତ୍ତୀ କବିଏ ପରମ୍ପରା-ମାନ୍ୟତା ପ୍ରସଙ୍ଗରେ ଗ୍ରହଣ କରିଛନ୍ତି । (୭)

ଚାର :

ସାହିତ୍ୟର ବା କବିତାର ପରମ୍ପରା-ମାନ୍ୟତା ପ୍ରସଙ୍ଗଟି ଏଣୁ ଦାୟାଦତ୍ୱବୋଧର କଥା । କେହି କୌଣସି କୌଶଳ ବା ପଦ୍ଧତି ପ୍ରୟୋଗକରି ଏ ଦାୟାଦତ୍ୱବୋଧକୁ ଗଢ଼ିନା । ତାହା ପ୍ରକୃତିତଃ କୃତ୍ରିମତା-ବିରହିତ ଏବଂ ସ୍ୱତଃ ବିକଶିତ । ପରମ୍ପରା ଯେତେ ପ୍ରଲମ୍ବିତ ହୋଇଥାଏ ଏବଂ ସଂରକ୍ଷିତ ହୋଇଥାଏ, ତା' ଅଧିକ ଉତ୍ତର କବି-ଦାୟାଦଙ୍କୁ ଉଥାରି କରି ଚାଲିଥାଏ । ଏହି ସମନ୍ୱୟ ବା ମାନ୍ୟତା ସାହିତ୍ୟ-ଭୂମିକୁ ପ୍ରସାରିତ କରେ । ଅତୀତ ଓ ବର୍ତ୍ତମାନକୁ ଗୋଟିଏ ବିନ୍ଦୁରେ ଯୋଡ଼େ । ଆପଣାର ଶକ୍ତି ନେଇ ଏହା ଭବିଷ୍ୟତ ଆଡ଼କୁ ତର୍ଜନୀ ନିର୍ଦ୍ଦେଶ କରେ । କବିତାର ପରମ୍ପରା-ମାନ୍ୟତା ଏକ ଚିରକାଳିକ ପ୍ରକ୍ରିୟା । ଏହା ଯୁଗପତ୍ ପ୍ରେରଣା ଓ ବିଶ୍ୱାସର ଉତ୍ସ ହୋଇ କବିତାକୁ ଓ ଜୀବନକୁ ସମୃଦ୍ଧ କରୁଥାଏ, ଉଦ୍‌ବୁଦ୍ଧ କରୁଥାଏ ।

ଉପସଂହାରରେ ପୁଣି ଥରେ କହି ରଖୁଛୁ ଆଲୋଚନାଟି ସମ୍ବାଦଧର୍ମୀ ଓ ସୂଚନା କେନ୍ଦ୍ରିକ । ପରମ୍ପରା-ମାନ୍ୟତାର ଉପର ଲିଖିତ ସ୍ୱରୂପ ନେଇ ଅନେକ ସ୍ୱତନ୍ତ୍ର ପ୍ରବନ୍ଧ ବା ସମାଲୋଚନା ଲେଖାଯାଇ ପାରିବ । ଏ ପ୍ରବନ୍ଧକୁ ବିଶ୍ଳେଷଣ ଓ ତୁଳନାତ୍ମକ ବିବେଚନା ଦ୍ୱାରା ସ୍ୱତନ୍ତ୍ର ଓ ଦୀର୍ଘ ସନ୍ଦର୍ଭଟିଏ ପ୍ରସ୍ତୁତ କରାଯାଇ ପାରିବ । ଆଗକୁ ଏ ସମ୍ପର୍କରେ ସୁଧୀ ସମାଲୋଚକେ ଅଧିକ ତଥ୍ୟଭିତ୍ତିକ ଆଲୋକପାତ କରିବାକୁ ପ୍ରଯତ୍ନ କରିବେ ବୋଲି ଲେଖକ ଆଶା କରୁଛି ।



(୭) 'ଶ୍ରୀ ମିଶ୍ର ତାଙ୍କର ପ୍ରିୟ କବି ରମାକାନ୍ତ ରଥଙ୍କଠାରୁ ଚିତ୍ର ସୂତ୍ରରେ ବିଧବା, ଖଗ, ବିମାନ, ଶବ ପ୍ରଭୃତି କେତୋଟି ପ୍ରତୀକ ସଂଗ୍ରହ ମଧ୍ୟ କରିଛନ୍ତି × × × ।' କବି ଶ୍ରୀ ଦୀପକ ମିଶ୍ର, ଶ୍ରୀ ଦାଶରଥି ଦାସ, 'ସପ୍ତମ ପୃଥିବୀ' ୧୯୭୭ର ମୁଖବନ୍ଧ ।

# ଆଧୁନିକ ଓଡ଼ିଆ
# କବିତାର ଭାଷା ଓ ଶୈଳୀ

ଏକ :

ପ୍ରତି କାଳର କବିତା ପ୍ରୟୋଗବାଦୀ ବା ପରୀକ୍ଷାମୂଳୀ । ଏହା ଭାଷା ଓ ଶୈଳୀ କ୍ଷେତ୍ରରେ ବିଶେଷତଃ ସଂଘଟିତ ହୋଇଥାଏ । ଭାଷା ଓ ଶୈଳୀ ଗ୍ରହଣ କବିତାର ଗଠଣ ପରିପାଟୀର କଥା । ଏହାକୁ ଆମେ ଆଙ୍ଗିକ (Form) ବା ଶିଳ୍ପ ପ୍ରକରଣ ବୋଲି ଅଭିହିତ କରୁଛୁ । ଆଙ୍ଗିକ ସବୁକାଳେ ଆତ୍ମିକ ନିର୍ଭର । କେଉଁ ବକ୍ତବ୍ୟ ବା ବିଷୟବସ୍ତୁ କେଉଁ ମାଧ୍ୟମରେ ଅଭିବ୍ୟକ୍ତ ହେଉଛି—ସେହି ଦୃଷ୍ଟିରୁ ଆଙ୍ଗିକଟି ନିର୍ମିତ ହୁଏ । ତା'ର ଅର୍ଥ ନୁହେଁ ଯେ ଜଣେ କବି ବିଭିନ୍ନ ଭାବାଶ୍ରୟୀ କବିତା ପାଇଁ ସବୁବେଳେ ଭିନ୍ନ ଭିନ୍ନ ଆଙ୍ଗିକ ବା ପ୍ରକାଶଭଙ୍ଗୀ ଗ୍ରହଣ କରିବ । ଗୋଟିଏ ପ୍ରକାର ପ୍ରକାଶଭଙ୍ଗୀରେ ବିଭିନ୍ନ ଭାବାଶ୍ରୟୀ କବିତାକୁ ମଧ୍ୟ ରୂପ ଦିଆଯାଇ ପାରେ । ତାହା ବୋଧେ ଆଧୁନିକ କାବ୍ୟ-ଭାଷାର ବୈଶିଷ୍ଟ୍ୟ । ଆଧୁନିକ କବିତାର ଭାଷା ଓ ଶୈଳୀ ଏକ ବ୍ୟାପକ ଆଲୋଚନାର ବିଷୟ । ତା'ର ଅଧ୍ୟୟନ ଓ ଅନୁଧ୍ୟାନ ହେଉଛି ପରୋକ୍ଷରେ ଆଧୁନିକ କବିତାର ଆତ୍ମାନୁସନ୍ଧାନ ବା ଭାବଧର୍ମର ବିଶ୍ଳେଷଣ ।

ଶୈଳୀ ବା ଭଙ୍ଗୀ ସାଧାରଣତଃ ଭାଷା ( ଶବ୍ଦ, ଶବ୍ଦବନ୍ଧନ ) ଉପରେ ବ୍ୟବହାର କରାଯାଇଛି ବା ଶବ୍ଦମାନଙ୍କର ଉପରେ ସଜ୍ଜୀକରଣ ହୋଇଛି ସ୍ଥୂଳତଃ ତାକୁହିଁ ବୁଝାଇଥାଏ । ଏ ସଜ୍ଜୀକରଣ ହେଉଛି—ଶବ୍ଦ ସଜ୍ଜା—ସେଇଠୁ ବାକ୍ୟ ଓ ପଂକ୍ତିସଜ୍ଜା—ତା'ପରେ ସମଗ୍ର କବିତାଟି ଗଢ଼ାହୁଏ । ତା' ମଧ୍ୟରେ ଛନ୍ଦ, ଛନ୍ଦକଳ୍ପ, ପ୍ରତୀକ ଏବଂ ବହୁବିଧ ବର୍ଣ୍ଣନା-ଛଟାର ପ୍ରୟୋଗ ପ୍ରଦର୍ଶନ । ଭାଷା ଶୈଳୀନିର୍ଭର ଏବଂ ଶୈଳୀ ବକ୍ତବ୍ୟନିର୍ଭର । ଅବଶ୍ୟ କବିତାର ଗଠଣ ଉପରେ ହେବ—ତା' ଉପରେ ନିଶ୍ଚିତ କିଛି କୁହାଯାଇ ପାରିବ ନାହିଁ । ଖାଲି କବିତା କାହିଁକି, ଆଧୁନିକ ସାହିତ୍ୟର ଯେକୌଣସି ବିଭାଗ ମଧ୍ୟ । ତେବେ କବିତା ସୃଜନଧର୍ମରେ ଅଧିକ ସୂକ୍ଷ୍ମ ଓ ପ୍ରଯତ୍ନ ସାପେକ୍ଷ । ଭାଷା ଓ ଶୈଳୀର ସବୁଠୁଁ ଗୁରୁତ୍ୱପୂର୍ଣ୍ଣ କଥା ହେଉଛି ବକ୍ତବ୍ୟଟି କେତେ କଳାକୁଶଳ ଭାବରେ ବା କେଉଁ ଭାବରେ ପାଠକ ପାଖରେ ପହଞ୍ଚୁଛି ।

ଆଲୋଚ୍ୟ ପ୍ରବନ୍ଧ ପାଇଁ ୧୯୪୦ ମସିହା ପରବର୍ତ୍ତୀ କବିତାକୁ ମୁଖ୍ୟତଃ ନିଆ-ଯାଇଛି । ଏହା ଆଧୁନିକ ଓଡ଼ିଆ କବିତାର ପ୍ରକୃତ ପରୀକ୍ଷା ନିରୀକ୍ଷା···ବିକାଶ ବିବର୍ତ୍ତନର

ପଟ । ଏ ସମସ୍ୟାଟି ଆଞ୍ଚଳିକ ତଥା ବର୍ଣ୍ଣମାନସିକତା ଦୃଷ୍ଟିରୁ ମଧ୍ୟ ତାତ୍ପର୍ଯ୍ୟପୂର୍ଣ୍ଣ । ବିଶିଷ୍ଟ ପ୍ରସଙ୍ଗ ହେଉଥିବାବେଳେ ପ୍ରକାଶ ପାଇଁ ମାଧ୍ୟମ ଲୋଡ଼ୁଛି । ଭାଷାଶୈଳୀର ବହୁ ପରୀକ୍ଷା ନିରୀକ୍ଷା ଯୋଗୁଁ କେହି କେହି ଏହାକୁ ପ୍ରୟୋଗବାଦୀ କବିତା ବୋଲି ଅଭିହିତ କରନ୍ତି । ତେବେ ଏସବୁ ପାଶ୍ଚାତ୍ୟ ସାହିତ୍ୟର ବିଭିନ୍ନ ପ୍ରୟୋଗ ଓ ସମ୍ପର୍କରେ ଆସିବାର ସୁଫଳ ।

ସାଧାରଣ କଥିତ ଓ ଲିଖିତ ଶବ୍ଦ ବିଶେଷଭାବେ ଅର୍ଥବହ ହୋଇ କବିତାରେ ବାଙ୍ମୟ ହୁଅନ୍ତି । କବିତା ଶବ୍ଦଙ୍କର ସୃଜନଧର୍ମୀ ସଂହତିକରଣ । କବିତାରେ ଶବ୍ଦ ମନ୍ତ୍ରପୂତ ହୁଏ । ଅଳଙ୍କାର, ଯତିପାତ ବା ଗଣ ଇତ୍ୟାଦିରୁ କବିତା ଯେଉଁଦିନ ଗଦ୍ୟ ଶୈଳୀକୁ ତା'ର ଅନ୍ୟତମ ବିଶିଷ୍ଟ ମାଧ୍ୟମ ବୋଲି ଗ୍ରହଣ କରିଦେଲା—ନିର୍ଦ୍ଦିଷ୍ଟ ପାରମ୍ପରିକ ଶୃଙ୍ଖଳା ତା'ର ଗଠନ ପାଇଁ ଯଥେଷ୍ଟ ନୁହେଁ ବୋଲି ସେଦିନ ଘୋଷଣା କରିଥିଲା । ନୂଆ ପ୍ରକାର କବିତାକୁ କୁହାଗଲା ଛନ୍ଦମୁକ୍ତର କବିତା ବା ମୁକ୍ତଛନ୍ଦର କବିତା । ଏହାର ଗତି ନିର୍ବାଧ । ତା'ର ଉପକରଣ ସେ ଲୋଡ଼େ । ଏ ପର୍ବର କାବ୍ୟଭାଷା ସ୍ୱାଧୀନ । (ଏ ପ୍ରବନ୍ଧରେ କାବ୍ୟଭାଷା ବା ଭାଷା ଶବ୍ଦ ଅନେକତ୍ର ଭାଷା ଓ ଶୈଳୀ ଅର୍ଥରେ ପ୍ରଯୁକ୍ତ ହୋଇଛି ।) ମୁକ୍ତବନ୍ଧ ଗଦ୍ୟରୀତି ବା କଥ୍ୟରୀତିକୁ ପ୍ରାଧାନ୍ୟ ଦେଲା ଏବଂ ପଦ୍ୟ ସହିତ ଗଦ୍ୟର ସମନ୍ୱୟ କରାଇଲା । ମନେ ରଖିବାକୁ ହେବ ଯେ କାବ୍ୟ ଭାଷାର ସ୍ୱାଧୀନତାର ଅର୍ଥ ନୁହେଁ ଭାଷାର ଯଥେଚ୍ଛା ବ୍ୟବହାର । ଭାଷା ଓ ଶୈଳୀ ଉପରେ ବିଶ୍ୱର ତତ୍ତ୍ୱଜ୍ଞମାନେ ବହୁ ମତର ଅବତାରଣା କରନ୍ତି । ଏ ପ୍ରସଙ୍ଗରେ ଅତିପରିଚିତ ବକ୍ତବ୍ୟ ହେଉଛି—The style is man । ଉଦ୍ଦେଶ୍ୟ ଓ ବକ୍ତବ୍ୟ ଏକପ୍ରକାର ହୋଇ ମଧ୍ୟ ଜଣେ ଲେଖକ ପ୍ରକାଶଭଙ୍ଗୀରେ ଅନ୍ୟଠାରୁ ଭିନ୍ନ ହୁଏ । ଏଇଠି ଆସିଯାଏ ବ୍ୟକ୍ତିତ୍ୱ ପ୍ରସଙ୍ଗ, ନିର୍ବାଚନର ପ୍ରସଙ୍ଗ, ଅନୁଭୂତି ପ୍ରତି ଆନ୍ତରିକତା ପ୍ରସଙ୍ଗ, ପରିପାର୍ଶ୍ୱ ଓ କାବ୍ୟ ପରମ୍ପରାର ପ୍ରଭାବ ପ୍ରସଙ୍ଗ । ଆଧୁନିକ ସମୟର ଗଳ୍ପ ପ୍ରାଚୀନ କାହାଣୀର ରୂପ ବା ଆଙ୍ଗିକକୁ ନେଇ ନୂଆଭାବେ ଆତ୍ମପ୍ରକାଶ କରୁଛି । ସେମିତି ଆମ ନାଟକରେ ଲୋକଗୀତ, ସୁଆଙ୍ଗ ଓ ପୌରାଣିକତାର ଅନୁପ୍ରବେଶ । ଆଧୁନିକ କବିତା ମଧ୍ୟ ତାର ପୂର୍ବବର୍ତ୍ତୀ ପ୍ରତିଷ୍ଠିତ କାବ୍ୟ ପରମ୍ପରା ଉପରେ ଏକ ମାର୍ଜିତ ଅଭିନିର୍ମାଣ । ସେଠି ଆଧୁନିକତା ଓ ପରମ୍ପରା ପରସ୍ପର ପରିପୂରକ । ଆଧୁନିକ କବିତାର ଶିଳ୍ପରୀତି ଏଣୁ ଏକାନ୍ତ ନୂତନ ଓ ବ୍ୟତିକ୍ରାନ୍ତ—କହିଲେ ତା' ସବୁବେଳେ ପ୍ରକୃତ ଅଭିବ୍ୟକ୍ତ ହେବ ନାହିଁ । ସାରଳା ଦାସ ସେଦିନ ଦାଣ୍ଡି ବୃତ୍ତରେ ପ୍ରାନ୍ତ ମେଳକୁ ବାଦ୍‌ଦେଇ ମୁକ୍ତ ଛନ୍ଦକୁ ଅବାରିତ ସ୍ୱୀକୃତି ଦେଇଥିଲେ । 'ରୁଦ୍ର ସୁଧାନିଧି' ଓ 'ଚତୁର ବିନୋଦ' ଆଦି ଗ୍ରନ୍ଥରେ ଗଦ୍ୟ ଛନ୍ଦର ପ୍ରୟୋଗ ବୈଶିଷ୍ଟ୍ୟସମ୍ପନ୍ନ ।

ଆଧୁନିକ କବିତା ନିର୍ଦ୍ଦିଷ୍ଟ କିଛି ବକ୍ତବ୍ୟର କବିତା—ଉଦ୍ଦେଶ୍ୟ ଦୃଷ୍ଟିରୁ ଏକମୁଖୀନ । ସେଠି ହୃଦୟ (emotion) ସହିତ ବିଦ୍‌ବତ୍ତା (intelect) ଗୁରୁତ୍ୱ ପାଏ । ଅନେକତ୍ର ବ୍ୟକ୍ତିକେନ୍ଦ୍ରିକ ପ୍ରକାଶଭଙ୍ଗୀ । ବ୍ୟକ୍ତିସତ୍ତା ଏଠାରେ ଏକ ପ୍ରତୀକ ବା

ମାଧ୍ୟମ । ତହିଁରୁ ନୈର୍ବ୍ୟକ୍ତିକତା ଆଡ଼କୁ ଯେ । ବ୍ୟକ୍ତିଗତ ଅନୁଭୂତି ଓ ଯନ୍ତ୍ରଣା ଦେଇ କବିତା ଉତ୍ତରଗିବା ପରେ ତାହା ସାର୍ବଜନୀନତା, ସର୍ବଜନସମ୍ବେଦ୍ୟତା ଆଡ଼କୁ ନ ମୁହାଁଇଲେ କବିତାର ମୁକ୍ତି ନାହିଁ, ଗତି ନାହିଁ, ଆବେଦନ ନାହିଁ । ଅନ୍ୟ ଅର୍ଥରେ ଏହା ବ୍ୟକ୍ତିଗତତାରେ ଆବଦ୍ଧ ହୋଇ ରହିପାରେ ନାହିଁ । 'ମୁଁ'କାର ଉଚ୍ଚାରଣ ପ୍ରକାଶଭଙ୍ଗୀଟି କାବ୍ୟପୁରୁଷ ପାଇଁ ଏକ ବିଶ୍ୱସ୍ତ·· ଆନ୍ତରିକତାପୂର୍ଣ୍ଣ ମାଧ୍ୟମ । ବର୍ଣ୍ଣନା ଅପେକ୍ଷା ସୂଚନା ବା ଇଙ୍ଗିତ ସେଠି ଗୁରୁତ୍ୱପୂର୍ଣ୍ଣ । ଶବ୍ଦର ମିତବ୍ୟୟିତା ଓ ଯଥାର୍ଥ ପ୍ରୟୋଗ ପ୍ରତି ସେଠି ଦୃଷ୍ଟି ଦିଆଯାଏ । ଆଧୁନିକ କବିତା ସମନ୍ୱୟର କବିତା । ଖାଲି ଚେତନା ଦୃଷ୍ଟିରୁ ନୁହେଁ; ଗଢ଼ଣ ଦୃଷ୍ଟିରୁ ମଧ୍ୟ । କାବ୍ୟ ପରମ୍ପରାର ସାମଗ୍ରୀ ଏହାର ଉପାଦାନ । ଆଧୁନିକ କବିତାର ଗଠନରେ କୌଣସି ତଥାକଥିତ ପ୍ରଥାସିଦ୍ଧ ଶୃଙ୍ଖଳା ନାହିଁ ସତ୍ୟ, ଏ ସତ୍ତ୍ୱେ ବି ଶୃଙ୍ଖଳିତ ନହେଲେ କବିତାର ଗତି ନାହିଁ । ଏମିତି ସେଇଟିଏ ପାଇଁ, ତା'ର ଯଥାର୍ଥ ରୂପରେଖ ପାଇଁ ଦୃଷ୍ଟି ନଦେଲେ କବିତାଟି ଦୋଷଦୁଷ୍ଟ ହୋଇପଡ଼େ । ଆଧୁନିକ କବିତା ଚିତ୍ରକଳ୍ପ, ପ୍ରତୀକ ଇତ୍ୟାଦି ଭିନ୍ନ ଗଦ୍ୟ, ପଦ୍ୟ, ସଙ୍ଗୀତ, ନାଟକ ଇତ୍ୟାଦି ବହୁ ବିଷୟର ସମନ୍ୱୟ । ବହୁ ଉପକରଣ ନେଇ ତା'ର ଗଢ଼ଣ । ଆପାତତଃ ଦୃଷ୍ଟିରେ ଅର୍ଥ କଷ୍ଟ ନଥିଲେ ମଧ୍ୟ ଆଧୁନିକ କାବ୍ୟଭାଷା ସହଜବୋଧ୍ୟ ନୁହେଁ । ଆଧୁନିକ କବିତା ଶବ୍ଦାର୍ଥରେ ବିଶ୍ୱାସ ରଖେନା, ସେଠି କି କାହାଣୀ ନାହିଁ । ସେଠି ରହିଥାଏ କିଛି ତାତ୍ପର୍ଯ୍ୟ ବା ଆବେଦନ—ଶବ୍ଦଦ୍ୱାରା ହେଉ, ଧ୍ୱନି ଦ୍ୱାରା ହେଉ—ବର୍ଣ୍ଣନାରେ ହେଉ କି ସୂଚନାରେ ହେଉ । ଆଧୁନିକ କବିତାର ଶିଳ୍ପରୂପ ବହୁ ପ୍ରସ୍ଥଯୁକ୍ତ ।

ପ୍ରାଚୀନ ଦାଣ୍ଡୀବୃତ୍ତ କି ନବାକ୍ଷରୀବୃତ୍ତ, ମଧ୍ୟକାଳୀନ ଅଳଙ୍କାର ଓ ରାଗ—କ୍ଲିଷ୍ଟ ବା କୋମଳ ଶବ୍ଦ ବିନ୍ୟାସ, ପରବର୍ତ୍ତୀ କାଳର ଅକ୍ଷର ନିୟମ, ଉପଧାମିଳନ, ଅମିତ୍ରାକ୍ଷର ଛନ୍ଦ, ସମ୍ବାରଛନ୍ଦ ବା ଅସମପଂକ୍ତିକ ପ୍ରାନ୍ତମେଳ ଇତ୍ୟାଦି ଯାବତୀୟ ରୀତି ଯତିପାତ ବା ଶୃଙ୍ଖଳାକୁ ଆଧୁନିକ କବିତା ଆପଣାମତେ ସ୍ୱଭାବଭଙ୍ଗୀରେ ଗ୍ରହଣ କରି ଏକ ସମନ୍ୱୟାତ୍ମକ ଅଧିକ ମୁକ୍ତ ବହୁ ପ୍ରସ୍ଥଯୁକ୍ତ ଅର୍ଥବାହୀ ପ୍ରକାଶଭଙ୍ଗୀ ଗ୍ରହଣ କରିଛି । କହିବାକୁ ଗଲେ ଗଦ୍ୟ ବା ମୁକ୍ତଛନ୍ଦର ଶୈଶବବର୍ଣ୍ଣ ଯଶଧାନଙ୍କର ନୂତନ ପ୍ରୟୋଗର ଅଭିଯାନ ରଚନା କାଳରେ ଯେ ତା'ର ପାରମ୍ପରିକ ବେହରଣକୁ ମଧ୍ୟ ସମ୍ପୂର୍ଣ୍ଣ ବର୍ଜି ଦେଇନାହିଁ । ଏଇଠି ଆଧୁନିକତା ଓ ପରମ୍ପରା ଗୋଟିଏ ବିନ୍ଦୁରେ ମିଳିତ ହୁଅନ୍ତି । ଏଣୁ ପଦ୍ୟ ଓ ଗଦ୍ୟ ରୀତିର ସମନ୍ୱୟ ହେଉ ହେଉ, ସଂଳାପ ସଂପନ୍ନ ହେଉ ସମୁଦାୟ ପ୍ରଶ୍ନବାଚୀ ଓ ବିସ୍ମୟ-ସୂଚକ ଚିହ୍ନର ନାଟକୀୟ ଭଙ୍ଗୀ ହେଉ, ଚିତ୍ରକଳ୍ପ-ପ୍ରତୀକ ସମୃଦ୍ଧ ହେଉ ବା ଧ୍ୱନିସଞ୍ଚାରୀ ଶବ୍ଦଚିତ୍ର ହେଉ—ବିବିଧତା ବା ବିଭିନ୍ନତା ଭିତରେ ଅନ୍ତର୍ଦ୍ଦୃଷ୍ଟିତା ଭିତରେ ଏକ ସଂହତ ଓ ଶକ୍ତିମାନ ରୂପଧର ଆଧୁନିକ କବିତା ସମୃଦ୍ଧ । ପ୍ରାଚ୍ୟଠୁଁ ପାଶ୍ଚାତ୍ୟ କାବ୍ୟ ପରମ୍ପରା ଯାଏ ଆଧୁନିକ କବିର ଅବଗାହନ ଏତାଦୃଶ ଭାବ ଓ ଗଢ଼ଣକୁ ପ୍ରଭାବିତ କରିଛି ।

ଅନୁଭୂତିର ସରଳତା ସତ୍ତ୍ୱେ ଆଧୁନିକ କାବ୍ୟଭାଷା କେତେ ବିଭିନ୍ନତାର ସମନ୍ୱୟ ହେତୁ ଜଟିଳ । ଏହା ପାଠକର ବହୁଶାସ୍ତ୍ରଦର୍ଶିତା, ଅନୁଭବ ଶକ୍ତିର ତୀବ୍ରତାର ଅପେକ୍ଷା ରଖେ । ସବୁ କ୍ଷେତ୍ରରେ ଅବଶ୍ୟ ଏପରି ଘଟେ ନାହିଁ । ଏହି କାବ୍ୟଭାଷାର ଜଟିଳତା ଏବଂ ସମନ୍ୱୟାତ୍ମକ ସଂଗଠନ ସମ୍ପର୍କରେ ନିମ୍ନରେ ଦୁଇଟି ଉଦ୍ଧୃତିର ସୂଚନାତ୍ମକ ପରିଚୟ ଦିଆଯାଇଛି । ଯେଉଁମାନେ ଆଧୁନିକ କବିତାର ଶ୍ରୀ ଓ ଉଦ୍ଧତା ସମ୍ପର୍କରେ ସଚେତନ, ସେମାନେ ତା'ର ଏ ସଂରଚନା ବା ସଙ୍ଗଠନଗତ ବୈଶିଷ୍ଟ୍ୟକୁ ଭିନ୍ନ ଦୃଷ୍ଟିରେ ଦେଖିବେ ନାହିଁ । ପ୍ରଥମ ଉଦ୍ଧୃତିଟି ରମାକାନ୍ତ ରଥଙ୍କ 'ବିମାନ ଦୁର୍ଘଟଣାରେ ମୃତ୍ୟୁ' କବିତାରୁ ।

> କଞ୍ଚନ ଗଛର ତଳେ ପ୍ରବାହିତ ରକ୍ତ ନଦୀ, ଦେଖ
> ନିଃଶବ୍ଦେ ଜୀବନ ସ୍ରୋତ ଧାଉଁଛି କିପରି ।
> ଦେବା କି ନଦେବା ଫୁଲ ରଜାଙ୍କର ମାଳୀ ଆସିଅଛି
> ରଜା କେଉଁ ମାଗୁଛନ୍ତି ? ପାଦଶବ୍ଦ ଶୁଭିଲାଣି, ଦୂର
> କାହାଣୀ ଯାହାଙ୍କରେ ମିଶେ ହେଉ ପାରିବ ।
> କାଲି ଯାଆ ଯୋଗୀ ହୋଇ କରି
> କୁମର ପଟିରେ ମୋର ବାଣିଜ୍ୟ ବା ରାଜକର୍ମ କର ।

ସମଗ୍ର କବିତାଟିରୁ ଏତିକ ପଂକ୍ତିକୁ କାଢ଼ି ସ୍ୱତନ୍ତ୍ର ଭାବରେ ବିଚାର କରାଯାଇ ନପାରେ । 'ବିମାନ' ଏ କବିତାରେ ଦେହର ପ୍ରତୀକ । ମୃତ୍ୟୁକାଳୀନ ଅବସ୍ଥାଟି କବିତାର ଉପଜୀବ୍ୟ—ଆମ ଜୀବନଯାପନ କଥା ବ୍ୟକ୍ତ କରିବା କବିତାଟିର ପ୍ରତିପାଦ୍ୟ । କବି ଶ୍ରୀ ରଥ ଏ କବିତା ସମ୍ପର୍କରେ ତାଙ୍କ ବହିର ପୃଷ୍ଠବନ୍ଧରେ କିଛି ସୂଚନା ଦେଇଛନ୍ତି । ଏ ପଂକ୍ତିର ଭାଷା ସହଜବୋଧ୍ୟ ନୁହେଁ । ବିଭିନ୍ନ ପ୍ରସଙ୍ଗର ବିପର୍ଯ୍ୟୋଚିତ ସମନ୍ୱୟ କରାଯାଇ କବିତାର ଉଲ୍ଲିଖିତ ପଂକ୍ତିମାନଙ୍କୁ ଏକ ସ୍ୱତଃସ୍ଫୂର୍ତ୍ତି ଗତିଶୀଳତା ଦିଆଯାଇଛି । ସାରଳା ଦାସଙ୍କ 'ଦୁର୍ଯ୍ୟୋଧନଙ୍କ ରକ୍ତନଦୀ ସନ୍ତରଣ', ମଧୁସୂଦନ ରାଓଙ୍କ 'ଜୀବନଚନ୍ଦ୍ରା' କବିତା, କଞ୍ଚନ ଗଛ କେନ୍ଦ୍ରିତ ଲୋକକଥା, ଗୋବିନ୍ଦ ଚନ୍ଦ୍ର କାବ୍ୟର ଭାବ ନିର୍ଯ୍ୟାସ ତଥା କବିତା ପରିପ୍ରେକ୍ଷୀରେ ଏ ସବୁର ସୂଚନାତ୍ମକ ବ୍ୟବହାର ନ ଜାଣିଲେ ଏ ପଂକ୍ତିମାନଙ୍କର ବକ୍ତବ୍ୟ ଆଦୌ ଅବବୋଧ ସ୍ତରକୁ ଆସିବ ନାହିଁ । ଏ ପ୍ରକାର ଗଢ଼ଣ ଏକ ସଚେତନ ପ୍ରୟାସ ହୋଇପାରେ; ଏଠାରେ ଉଲ୍ଲିଖିତ ପଂକ୍ତି ଆମ କାବ୍ୟ ପରମ୍ପରାର ସାମଗ୍ରୀକୁ ସଂଯୋଜିତ କରୁଛି । ପରମ୍ପରା ଯେତେ ପ୍ରଲମ୍ବିତ ହୁଏ, କାବ୍ୟ ଉପକରଣ ସେତେ ମହକୁଦ୍ ହୁଏ । ଭାଷା ଉପରେ ଅଧିକାର ନଥିଲେ, ଅନୁଭୂତି ନିବିଡ଼ ନହେଲେ ଏ ଉପକରଣର ଉପଯୋଗ ହୋଇପାରେ ନାହିଁ । ଏଠାରେ ଅବଶ୍ୟ ଏ ଆଲୋଚକ କବିତାର ଉଲ୍ଲିଖିତ ପଂକ୍ତି ବାବଦରେ ବୁଝାଉ ନାହାନ୍ତି । ଆଧୁନିକ କାବ୍ୟ ଭାଷାର ସ୍ୱରୂପ ଚହ୍ନିତ କରିବାପାଇଁ

ଯନ୍ତ୍ରକଳ୍ପିତ୍ ସୂଚନା ଏଠାରେ ଦିଆଯାଇଛି । ଉପରୋକ୍ତ ପ୍ରକାରେ କାବ୍ୟ ଭାଷାରେ ବହୁ ବର୍ଷ ତଳର କ୍ରମବିବର୍ତ୍ତିତ ପରମ୍ପରାର ସମନ୍ୱୟ ସାଧିତ ହୁଏ । ଦ୍ୱିତୀୟ ଉଦ୍ଧୃତି ଗୁରୁପ୍ରସାଦ ମହାନ୍ତିଙ୍କ 'କାଳପୁରୁଷ' କବିତାରୁ ।

> ଅରଣ୍ୟକ ଅଜଗର ମୁଁ ରହେ ଅଥର୍ବ ସ୍ଥିର
> ମୁଁ ସହେ କେତେ ଲକ୍ଷ ଦେହ ମନ ଓ ଆତ୍ମାର
> ମୋ ଦେହର ଗନ୍ଧ ପୁଣି ପୁଷ୍ପବତୀ ଗଣିକାର
> ଚନ୍ଦ୍ରଭାନୁ ହୁଂକାର ଓ ଇଷିକାର ଲାବଣ୍ୟବତୀର
> ଗୋ ମାଂସର ଗନ୍ଧ ପୁଣି ମଦ୍ୟ ମତ୍ସ୍ୟ ନାରୀ ଗନ୍ଧ
> ମୋ ଦେହରେ ପୃଥିବୀର ଯାଯାବର ଆଲୋକ ଅନ୍ଧାର ।

ଅନୁପ୍ରାସପ୍ରାପ୍ତ ଛନ୍ଦ ଓ ଧ୍ୱନି ସୌନ୍ଦର୍ଯ୍ୟକୁ ଲକ୍ଷ୍ୟ କରନ୍ତୁ । କୌଣସିଟି ସେଥି ତୁଚ୍ଛା ବର୍ଣ୍ଣନା ନୁହେଁ । ଭାଗବତର ବିଶିଷ୍ଟ ପ୍ରତୀକ ଅରଣ୍ୟ ଓ ଅଜଗର । ଅରଣ୍ୟଟି ସଂସାରର, ଅଜଗର ନିର୍ଲିପ୍ତ କର୍ମଯୋଗୀ ବ୍ୟକ୍ତିସତ୍ତାର ପ୍ରତୀକତା କରନ୍ତି । ପୁଣି ସେଠି ପୁଷ୍ପବତୀ ଗଣିକା, ରୀତିକାଳୀନ ନାୟକ-ନାୟିକା, ଗୋମାଂସ-ମଦ୍ୟ-ମତ୍ସ୍ୟ-ନାରୀ ଗନ୍ଧ ଏବଂ ତା' ସହିତ ପୃଥିବୀର ଯାଯାବର ଆଲୋକ ଅନ୍ଧାର । ଗୋଟିଏ ଦେହ ଉପରେ ଏତେ ବୋଝ ଓ ଦହନ । ପ୍ରତୀକାତ୍ମକ ଶବ୍ଦାବଳୀର ସଂଯୋଜନା ଶ୍ଳେଷ ଓ କାରୁଣ୍ୟର ତୀବ୍ର ସ୍ୱର ଏ କବିତା ପଂକ୍ତିରେ ବେଶ୍ ପ୍ରାଞ୍ଜଳ । 'ମୁଁ' ଏଠି 'ମୁଁ' ନୁହେଁ । ଏହା ଆଧୁନିକ ସମୟର ଯନ୍ତ୍ରଣାକ୍ତ ଦ୍ୱିଧାବିଭକ୍ତ ବ୍ୟକ୍ତିସତ୍ତା । ତା' ଭିତରେ ସମୟର ଦହନ-ପାପ ଓ ଯନ୍ତ୍ରଣାବୋଧ । ବ୍ୟକ୍ତି ଭିତରେ ବିଶ୍ୱଦୃଷ୍ଟିର ପ୍ରଚେଷ୍ଟା । ମିଥ୍ ଓ ପ୍ରତୀକ ସମୃଦ୍ଧ କାବ୍ୟଭାଷା ଏକାନ୍ତ ଭାବେ ଆତ୍ମିକ ନିର୍ଭର । ଆଧୁନିକ କବିତାର ଭାଷା ଏଣୁ ଏକ ମିଶ୍ରିତ ସିଂଫୋନି । ଏକ ପୂର୍ଣ୍ଣାଙ୍ଗ ଫୁଲରୁ ପାଖୁଡ଼ାକୁ ଅଲଗା କରି ସମୁଦାୟ ଫୁଲର ସୌନ୍ଦର୍ଯ୍ୟକୁ ପ୍ରକୃତରେ ଯେମିତି ଅନୁଭବ କରି ହୁଏନା, ସେମିତି କେବଳ କିଛି ପଂକ୍ତି ବିଶ୍ଳେଷଣ କରିବାଦ୍ୱାରା ସମଗ୍ର କବିତାର ମର୍ମାର୍ଥ ହୃଦୟଙ୍ଗମ କରି ହୁଏ ନାହିଁ । ଉପରୋକ୍ତ ଦୁଇଟି ଉଦାହରଣ ଭିନ୍ନ ବହୁ ଉଦାହରଣକୁ ବିଶ୍ଳେଷଣ କରାଯାଇ ପାରେ । ଆଧୁନିକ କବିତାର ଭାଷା ଏପରି ଯେ ଦ୍ୱନ୍ଦ୍ୱ ବିରୋଧାତ୍ମକ ଭାବକୁ ମଧ୍ୟ ଏକାସାଙ୍ଗରେ ପରିବେଷଣ କରିପାରେ ।

ଦୁଇ :

ବୈକୁଣ୍ଠ—କାଳିନ୍ଦୀ, ମାନସିଂ—ଚଉଡ଼ନାୟକ ଆଦି କବିଙ୍କ ଅପୂର୍ବ ଛାନ୍ଦସିକତାରେ ଓଡ଼ିଆ କବିତା ଗୀତିମୁଖର ହେଲାବେଳେ ସଚ୍ଚିଦାନନ୍ଦ ରାଉତରାୟ ହିଁ ଆଧୁନିକ କବିତାର ଭାଷା ଓ ଶୈଳୀର ନୂତନତା ଓ ସମୃଦ୍ଧି ପାଇଁ ଦୃଢ଼ ପଦକ୍ଷେପ ନେଇ

ମୁକ୍ତଛନ୍ଦ ବା ଗଦ୍ୟଶୈଳୀକୁ ଅପୂର୍ବ ଗତି ଦେଲେ । କବିତାରେ ସମସ୍ତ ନୂତନ ପ୍ରକାର ସ୍ଥାପତ୍ୟ ବିଭବ ଶ୍ରୀ ରାଉତରାୟଙ୍କ କବିତାରେ ବ୍ୟାପକଭାବେ ପ୍ରୟୋଗ ଗୌରବ ପାଇଛନ୍ତି । କବି ରାଉତରାୟଙ୍କ ଭିନ୍ନ ସ୍ୱାଧୀନତା ପରବର୍ତ୍ତୀ ଆଧୁନିକ କାବ୍ୟ ଭାଷାର ବିକାଶ ବିବର୍ତ୍ତନ ସକାଶେ ପ୍ରୟୋଗ ଓ ପ୍ରଭାବ ଦୃଷ୍ଟିରୁ ତିନିଜଣ ବିଶିଷ୍ଟ କବିଙ୍କ ନାମ ସ୍ୱତନ୍ତ୍ର ଭାବେ ଉଲ୍ଲେଖ କରାଯାଇପାରେ । ସେମାନେ ହେଉଛନ୍ତି ଗୁରୁପ୍ରସାଦ ମହାନ୍ତି, ରମାକାନ୍ତ ରଥ ଏବଂ ସୌଭାଗ୍ୟ କୁମାର ମିଶ୍ର । ଶବ୍ଦଚୟନ, ବାକ୍ୟଚୟନ, ପଂକ୍ତିଚୟନରୁ ଆରମ୍ଭ କରି କ୍ଷୁଦ୍ର କବିତା ଓ ଦୀର୍ଘ କବିତା ଯାଏଁ ଶ୍ରୀ ରାଉତରାୟଙ୍କଠୁଁ ନୂଆ ନୂଆ ପ୍ରୟୋଗର ଶୁଭାରମ୍ଭ । ସମକାଳୀନ ଯୁଗ ଓ ଜୀବନ ପରିପ୍ରେକ୍ଷୀରେ ଶବ୍ଦର ନୂତନ ବ୍ୟବହାର, ଅପ୍ରଚଳିତ ଓ ବୈଦେଶିକ ଶବ୍ଦର ପ୍ରୟୋଗ, ପ୍ରତୀକ ଓ ଚିତ୍ରକଳ୍ପ ଏବଂ ମିଥ୍‌ର ସାର୍ଥକ ଓ ବହୁବିଧ ବ୍ୟବହାର ଆଧୁନିକ ଓଡ଼ିଆ କାବ୍ୟ ଭାଷାକୁ ଋଦ୍ଧିମନ୍ତ କରିଛି ।

ଶ୍ରୀ ରାଉତରାୟଙ୍କ ପ୍ରାଥମିକ କାବ୍ୟଭାଷା ଆଭରଣମଣ୍ଡିତ ହୋଇଥିଲେ ହେଁ ପରିଣତ ସମୟର କାବ୍ୟ ଭାଷାର ଧ୍ୱନ୍ୟାତ୍ମକତା ଓ ଶକ୍ତିମତ୍ତା ଓଡ଼ିଆ କବିତାର ବିକାଶ ପାଇଁ ଉଲ୍ଲେଖଯୋଗ୍ୟ । ତାଙ୍କର ପରୀକ୍ଷା ଓ ପ୍ରୟୋଗକୁ ଏକ ଐତିହାସିକ ଗୁରୁତ୍ୱ ଦିଆଯିବ । ତାଙ୍କ କବିତାରେ ଏକପକ୍ଷରେ ଅଭିଜାତ, ଦୀପ୍ତିଗମ୍ଭୀର ଶବ୍ଦାବଳୀ ତ ଅନ୍ୟପାଖରେ କଥିତ ଭାଷାମାନଙ୍କର ସୁକ୍ଷମ ପ୍ରସଙ୍ଗୋଚିତ ସମନ୍ୱୟ । ବହୁ ଭାବାଶ୍ରୟୀ କବିତା ପାଇଁ ଆଙ୍ଗିକରେ ସେ ଯଥେଷ୍ଟ ଯତ୍ନ କରିଛନ୍ତି । ତାଙ୍କର ଚିତ୍ରକଳ୍ପ ପ୍ରୟୋଗ ଓ କଥ୍ୟରୀତି ସମ୍ପୃକ୍ତ ବହୁବିଧ ପ୍ରକାଶଭଙ୍ଗୀରୁ ବହୁ ପଂକ୍ତି ଉଦ୍ଧାର କରାଯାଇପାରେ । ନିମ୍ନ ଉଦାହରଣ ଦ୍ରଷ୍ଟବ୍ୟ 'ଭାନୁମତୀର ଦେଶ'ରୁ :

(୧) ଓଟର ବେଙ୍କା କୁଜ ପରି ଏଇ ସବୁ ଘୁମନ୍ତ ପାହାଡ଼ ଯେମିତି ଗୋଟାଏ ଗୋଟାଏ ମସ୍ତବଡ଼ ପିଲହଦ ତା' ଉପରେ ସକାଳ ଆଉ ସଞ୍ଜବେଳେ ସୂର୍ଯ୍ୟ ଧୂପ ଜାଳେ ।

(୨) ଝରଫୁଲର ସଭାରେ/କାହିଁକି ତମେ କହିବ ନାହିଁ/ତମ ପଥପାର୍ଶ୍ୱରେ ଦିନେ ଫୁଲଟିଏ ଫୁଟିଥିଲା ?/କାହିଁକି ତମେ ଗାଇବ ନାହିଁ ସେଇ ଫୁଲ ଫୁଟିବାର ଜୟ/ତରଙ୍ଗ ! ଏହା ହିଁ ତ ଜୀବନକୁ ଜୟ କରିବାର କୌଶଳ ।

ଚବି ରାଉତରାୟଙ୍କ ଅନ୍ୟଗ୍ରନ୍ଥ ଭିନ୍ନ ମାତ୍ର ଗୁଟିଏ କାବ୍ୟଗ୍ରନ୍ଥ 'ପାଣ୍ଡୁଲିପି' 'ବାଜି ରାଉତ' 'ଭାନୁମତୀର ଦେଶ' 'କବିତା ୧୯୬୨' ଆଧୁନିକ ଓଡ଼ିଆ କବିତାରେ ରାଉତରାୟ କାବ୍ୟଭାଷାର ବିବିଧତା ଓ ଶକ୍ତିମତ୍ତା ଦର୍ଶାଇବା ପାଇଁ ଯଥେଷ୍ଟ ହେବ । ସ୍ୱାଧୀନତା ପରବର୍ତ୍ତୀ ଓଡ଼ିଆ କବିତାର ଆଙ୍ଗିକ ସମ୍ପର୍କରେ ତତ୍ପରବର୍ତ୍ତୀ ସାଧନାରତ କବିମାନଙ୍କ ଉପରେ ତାଙ୍କର ବଳିଷ୍ଠ ପ୍ରଭାବ; ଏ ପ୍ରଭାବ ଯେତେ ବ୍ୟକ୍ତିଗତ ନୁହେଁ, ସେତେ କିନ୍ତୁ କାବ୍ୟ ପରମ୍ପରା ଗଢ଼ିବା ଦୃଷ୍ଟିରୁ ।

ଗୁରୁପ୍ରସାଦ ମହାନ୍ତି ମୁକ୍ତ ଛନ୍ଦକୁ ନବୀଚତ ଶବ୍ଦାବଳୀ ଓ ଅନୁପ୍ରାସିକ ଛଟା ଦ୍ୱାରା ସାର୍ଥପ୍ରିତ ଲହରରେ ପରିଣତ କରି ଗଦ୍ୟଛନ୍ଦରେ ଅପୂର୍ବ ସାଙ୍ଗୀତିକତା ଆଣିଲେ — ମିଥ୍ ଓ ଚିତ୍ରକଳ୍ପର ସୂକ୍ଷ୍ମ ଓ ଆନୁପାତିକ ବ୍ୟବହାରରେ ଓଡ଼ିଆ କାବ୍ୟଭାଷାକୁ ନୂତନ ଶକ୍ତି ପ୍ରଦାନ କଲେ । ବସ୍ତୁ ଆଲୋଚିତ ଓ ଏଲିଅଟ୍ ପ୍ରଭାବପୁଷ୍ଟ ଦୀର୍ଘକବିତା , କାଳପୁରୁଷ'ର ସଂଯୋଜନା ଏ କ୍ଷେତ୍ରରେ ଗୁରୁତ୍ୱପୂର୍ଣ୍ଣ । କାବ୍ୟ ପରମ୍ପରା (ପ୍ରାଚ୍ୟ ହେଉ, ପାଶ୍ଚାତ୍ୟ ହେଉ କିମ୍ବା ଆଞ୍ଚଳିକ ହେଉ) ରେ ଆହରଣ ଓ ସମୀକରଣ କଳାର ବିଶିଷ୍ଟ ନମୁନା 'କାଳପୁରୁଷ' । ତାଙ୍କର ଗୀତିଧର୍ମୀ ଓ ଗଦ୍ୟମୟ ଶୈଳୀ ପାଇଁ 'ସମୁଦ୍ରସ୍ନାନ' କାବ୍ୟଗ୍ରନ୍ଥର ପ୍ରାୟ କବିତା-ପଂକ୍ତି ଉଦ୍ଧାର କରାଯାଇପାରେ 'ହରେକୃଷ୍ଣ ଦାସ : ୨'ରୁ ଉଦ୍ଧୃତିଟିଏ :

ଅପରାହ୍ନବେଳାର ଗାଢ଼ ବାଇଗଣୀ ବର୍ଣ୍ଣର ଭିତରେ
ସୂର୍ଯ୍ୟ କେବେ ରହିଯାଏ ମୁହୂର୍ତ୍ତିକ ପ୍ରଜାପତି ପରି
ମଣିଷର କେତେ ସ୍ୱପ୍ନ ଆଶା ଓ ନିରାଶା କେତେ ଯୋଜନା ଓ କମିଟି ଭିତରେ
ସୂର୍ଯ୍ୟ କେବେ ଜଳିଯାଏ ଆସ୍ତେ ଆସ୍ତେ ଗ୍ରେଟ ହୋଇ
ବ୍ୟାଟେରୀ ନ ଥିବା ସାନ ଟର୍ଚ୍ଚଲାଇଟ୍ ପରି ।

ଗୁରୁପ୍ରସାଦ ଭାଷାକୁ ଅବାରିତ ମୁକ୍ତଗତି ଦେଇଛନ୍ତି, ସାଧାରଣ ଶବ୍ଦ ବ୍ୟବହାରରେ ମସୃଣ କୋମଳ କାବ୍ୟଶୈଳୀ ନିର୍ମାଣ କରିଛନ୍ତି । ସମକାଳୀନ ଓ ପରବର୍ତ୍ତୀ କାବ୍ୟସ୍ରଷ୍ଟାଙ୍କ ଉପରେ ତାଙ୍କର ମଧ୍ୟ ଅପ୍ରତିହତ ପ୍ରଭାବ ।

ଯା' ପରେ ରମାକାନ୍ତ ରଥଙ୍କ କବିତା । ରୁକ୍ଷ ଗଦ୍ୟର ପ୍ରୟୋଗ, ଅପାରମ୍ପରିକ ଓ ବୈପରୀତ୍ୟ ପ୍ରକାଶଭଙ୍ଗୀ ସତ୍ତ୍ୱେ ଶ୍ରୀ ରଥ ପଂକ୍ତିର କୌଣସି ଏକ ମଝି ବିନ୍ଦୁରୁ ଶେଷ ଧାଡ଼ିର ପ୍ରାନ୍ତ୍ୟ ମେଳ ଘଟାଇ କାବ୍ୟଭାଷାକୁ ଶୃଙ୍ଖଳିତ, ଆବୃତ୍ତି ସୁଭଗ ଓ ଗୀତିମୟ କରାଇପାରନ୍ତି । ରମାକାନ୍ତଙ୍କ ଶବ୍ଦ ଭଣ୍ଡାର ଖୁବ୍ ବେଶୀ ନ ହେଲେ ବି ବ୍ୟବହୃତ ଶବ୍ଦମାନଙ୍କର ଗୁରୁତ୍ୱପୂର୍ଣ୍ଣ ବ୍ୟବହାର, ଅଥଚ, ଯେହେତୁ, ଯଦିଓ, ତଥାପି ଆଦି ଶବ୍ଦମାନଙ୍କର ବିଶେଷ ପ୍ରୟୋଗ, ପ୍ରାଚୀନ ଶବ୍ଦ ଓ ଭାବାନୁସାରୀ ବ୍ୟକ୍ତିଗତ ପ୍ରତୀକ ଓ ଜଟିଳ ଚିତ୍ରକଳ୍ପ ପ୍ରୟୋଗ ଆଧୁନିକ ଓଡ଼ିଆ କାବ୍ୟଭାଷାକୁ ଗାମ୍ଭୀର୍ଯ୍ୟ ପ୍ରଦାନ କରିଛି । ଶ୍ରୀ ରଥଙ୍କ ଦୀର୍ଘ କବିତାରେ ପ୍ରୟୋଗ ହୋଇଥିବା କାବ୍ୟଭାଷା ସାଧାରଣ କବିତାମାନଙ୍କଠୁ ଭିନ୍ନ । ଭାବଗତ ବୌଦ୍ଧିକତା ହେତୁ ତାଙ୍କର କାବ୍ୟଭାଷା ଗମ୍ଭୀର, ନିବିଡ ଓ କ୍ଲିଷ୍ଟ । ଗୋଟିଏ ଉଦାହରଣ :

ପରି ଝଡ଼ିଯାଇଥିବା ଗଛମାନେ ଠିଆ ହୋଇଛନ୍ତି
ଇଟାଘର ସାମ୍ନାରେ ହାଡ଼ମାଳ ଭିକାରୀଙ୍କ ପରି
କିନ୍ତୁ ଏହି ସୁନାରଙ୍ଗ ଶଯ୍ୟାଗାର
ଆଚ୍ଛାଦିତ ଅନେକ ସ୍ୱପ୍ନରେ

ଏବଂ ତାନ୍ତ ଶିର୍ଷ ହାତ ମୁଠା କରି
ମୁଁ ବସିଛି ତା'ର ଅଗଣାରେ !
ଶୁଖିଲା କୂଅକୁ ଗଣ୍ଡ ବାଲ୍‌ଟି ଧରି ଯିବା ଲୋକଙ୍କର
କୁଢ଼ କୁଢ଼ କଙ୍କାଳରେ ପରିପୂର୍ଣ୍ଣ ଏ ମରୁଭୂମିରେ
ଜଣେ ମାତ୍ର ଲୋକଅଛି—ସୁଲ୍‌ତାନ, ସେ କାନ୍ଦିବ ନାହିଁ ॥ (ବନ୍ଦୀର କାୟାକଳ୍ପ)

ଗୁରୁପ୍ରସାଦଙ୍କ ସାମାନ୍ୟ ପରବର୍ତ୍ତୀ ବିଶିଷ୍ଟ କାବ୍ୟଶିଳ୍ପୀଭାବେ ସମସାମୟିକ ଓ ପରବର୍ତ୍ତୀ କବିଙ୍କ ଉପରେ ରମାକାନ୍ତ ରଥଙ୍କର ବିପୁଳ ପ୍ରଭାବ । ସେ ଆଧୁନିକ ଓଡ଼ିଆ କବିତାର ଭାଷାଶୈଳୀରେ ଏପରି ଏକ ଗ୍ରନ୍ଥ ନିର୍ମାଣ କଲେ, ଯା'ର ପ୍ରଭାବକୁ ସ୍ୱୀକାର କରି ସମକାଳର କେତେଜଣ କବି ତାଙ୍କ ପାଖାପାଖି ସ୍ୱକୀୟ ଭାଷାଶୈଳୀ ଗଢ଼ିଛନ୍ତି, ଅନେକ ବିନ୍ଦୁ ଦୃଷ୍ଟିରୁ ପ୍ରଭାବିତ ହୋଇଛନ୍ତି । ଉତ୍ତର କାବ୍ୟଜୀବନରେ 'ଶ୍ରୀରାଧା' (୧୯୮୫)ରେ କାବ୍ୟଭାଷାକୁ ସେ ଯେପରି ମସୃଣଭାବରେ ତରଳ ଓ କମନୀୟ କରି ଆତ୍ମୀୟତା, ଆକୁଳତା ଓ ଉତ୍ତୀର୍ଣ୍ଣ ଅନୁଭବକୁ ବ୍ୟକ୍ତ କରିଛନ୍ତି, ସେଠି ମନେହେବ ବିନା ଆୟାସରେ ତଥାକଥିତ ପ୍ରୟୋଗବାଦ ଓ ଭଙ୍ଗୀର ହୁଡ଼ିବାଡ଼ିକୁ ଏଡ଼ାଇ ବା ଅସ୍ୱୀକାର କରି ଯେମିତି କାବ୍ୟଭାଷା ଓହ୍ଲାଇଛି । ଆବେଗସାନ୍ଦ୍ରତା ଗଦ୍ୟକୁ ଅତିକ୍ରମ କରି ପଦ୍ୟ ବା ସଙ୍ଗୀତକୁ ଡାକ ଆଣିଛି । ଗଦ୍ୟର ଏ ପ୍ରୟୋଗ ରମାକାନ୍ତଙ୍କର କେବଳ ବ୍ୟକ୍ତିଗତ ସଫଳତା ନୁହେଁ; ଓଡ଼ିଆ କାବ୍ୟଭାଷାରେ ଗଦ୍ୟଶୈଳୀର ରୁକ୍ଷତା, ଅସାମର୍ଥ୍ୟତା ବିରୁଦ୍ଧରେ ହେଉଥିବା ଅଭିଯୋଗକୁ ପ୍ରତିହତ କରି ଏହା ସେଥିରେ ନୂତନ ଜୀବନୀଶକ୍ତି ଭରି ଦେଇଛି ।

'ଆତ୍ମନେପଦୀ' ସଙ୍କଳନ ପରେ ଓଡ଼ିଆ କବିତାର ଭାଷା ଓ ଶୈଳୀକୁ ଆହୁରି ମୁକ୍ତ ଓ ବ୍ୟାପ୍ତ କରିବା ପାଇଁ ସୌଭାଗ୍ୟକୁମାର ମିଶ୍ର ଦୁଃସାହସିକ ପଦକ୍ଷେପ ଗ୍ରହଣ କରିବା ମାନସିକତାରେ ଶୁଷ୍କ ଗଦ୍ୟର ଶୈଳିକ ପଥରେ ଶେରଦାନ ଧୂରଛନ୍ତି । 'ନଈପହଁରା' ଏବଂ ବିଶେଷ ଭାବରେ 'ଅନ୍ଧ ମହୁମାଛି'ର ପ୍ରକାଶନ ବେଳକୁ ତାଙ୍କର ଏ ପଦକ୍ଷେପ ସାକାର ହୋଇଛି । ଏକାନ୍ତ ଗଦ୍ୟମୟତା ଦ୍ୱାରା ପରିପୁଷ୍ଟ ଅନୁପ୍ରାସିକ ଓ ନାଟକୀୟ ଭାଷା, ଶବ୍ଦ ଓ ପ୍ରତୀକର ନୂତନ ନୂତନ ପ୍ରୟୋଗକୁଶଳତା ଏବଂ କଥ୍ୟଭାଷାର ଏକ ସର୍ବୋତ୍ତମ ପ୍ରକାଶଭଙ୍ଗୀ ସୌଭାଗ୍ୟଙ୍କର ବିଶେଷତ୍ୱ । ଭାଷା ବେଳେବେଳେ ଅଧିକ ସୂଚନାଧର୍ମୀ ହେବା ଦ୍ୱାରା କଷ୍ଟକାଭତା ମଧ୍ୟ ସୃଷ୍ଟି ହୋଇଛି । ଶ୍ରୀ ମିଶ୍ରଙ୍କ କାବ୍ୟଭାଷାର ଉଦାହରଣ :

ତୋ' ପାଇଁ ହୃଦୟେଶ୍ୱରୀ, ପାନ ରଖିଛି, ଗୁଆ ରଖିଛି,
ଯୋଡ଼ା ରଖିଛି, ଗାଡ଼ି ରଖିଛି, ମୟୂରପଂଖୀ ଶାଢ଼ି ରଖିଛି,
ଟିଭିକ ରଖିଛି, ପାସ୍ ବୁକ୍ ଓ ଫୁଲ ରଖିଛି, ଆ' ରୁ
ଆସି ଦେଖିନେ, ତୋ'ପାଇଁ ପାନ ରଖିଛି, ଗୁଆ ରଖିଛି...

ଆକାଶର ନୀଳଘୋଡ଼ାରେ ଚଢ଼ି ଯେ ମଧ୍ୟାହ୍ନଟି ଆସିଛ, ହୃଦୟେଶ୍ୱରୀ,
ସେ ମୋର ପାପପ୍ରସିଦ୍ଧ ଦେହ, କାରୁଣିକ ଗେରୁଆ ସୂର୍ଯ୍ୟର ତା' ଅନୁକମ୍ପା ।

(ହୃଦୟେଶ୍ୱରୀ)

ସୌଭାଗ୍ୟଙ୍କ କାବ୍ୟଭାଷାର ବଳିଷ୍ଠ ଓ ନୂତନ ପ୍ରୟୋଗର ଉଦାହରଣ ପାଇଁ 'ଅନ୍ଧ ମହୁମାଛି' କାବ୍ୟଗ୍ରନ୍ଥର ଶୀର୍ଷକ କବିତା, 'ଦୃଶ୍ୟାନ୍ତର', 'ଯାତ୍ରାସଙ୍ଗୀତ', 'କ୍ୱାଲାଲମ୍ପୁର' ଆଦି କବିତାକୁ ଗ୍ରହଣ କରାଯାଇପାରେ । ଉତ୍ତର ପଞ୍ଚାଶ୍ର କାଳରେ ସମସାମୟିକ ତଥା ଅନୁଜ କାବ୍ୟଶିଳ୍ପୀଙ୍କ ଉପରେ ସୌଭାଗ୍ୟଙ୍କ ଗଦ୍ୟଶୈଳୀର ପ୍ରଭାବ ଲକ୍ଷ୍ୟ କରାଯାଏ । ନିଜର ପ୍ରାରମ୍ଭିକ ରଚନାରେ ଏ ପ୍ରଭାବକୁ ସ୍ୱୀକାର କରି କେତେଜଣ ମୌଳିକ ପ୍ରକାଶ ଶୈଳୀ ତିଆରି କରିଛନ୍ତି ।

୧୯୪୦ ମସିହା ପରବର୍ତ୍ତୀ ଓଡ଼ିଆ କବିତାର ଭାଷାର ବିବର୍ତ୍ତନରେ ଏଇ ଘରିଜଣ ବିଶିଷ୍ଟ କବିଙ୍କର ସ୍ୱତନ୍ତ୍ର ଉଲ୍ଲେଖ କରାଯାଇଛି ପ୍ରୟୋଗ ଓ ପ୍ରଭାବ ସୃଷ୍ଟି ଦୃଷ୍ଟିକୋଣରୁ । ଏମାନଙ୍କ ସମସାମୟିକ ବହୁ ବିଶିଷ୍ଟ କାବ୍ୟଶିଳ୍ପୀ ମଧ୍ୟ ନିଜସ୍ୱ ଭାବରେ ଓଡ଼ିଆ କାବ୍ୟଭାଷାକୁ ଶ୍ରୀ ଓ ସମୃଦ୍ଧି ଦେଇଛନ୍ତି । ଏମାନଙ୍କ ବ୍ୟକ୍ତିଗତ କୃତିତ୍ୱ ଉପରେ ମଧ୍ୟ ସ୍ୱୟଂସମ୍ପୂର୍ଣ୍ଣ ପ୍ରବନ୍ଧ ରଚନା କରାଯାଇପାରିବ । ଅନନ୍ତ ପଟ୍ଟନାୟକ, ବିନୋଦ ନାୟକ, ବୈକୁଣ୍ଠଧର ରାଉତଙ୍କଠାରୁ ଆରମ୍ଭ କରି ଉତ୍ତର ଷାଠିଏ କାଳରୁ ସମ୍ପ୍ରତି କାବ୍ୟସାଧନାରତ କେତେଜଣ ବିଶିଷ୍ଟ କବିଙ୍କ ନାମ ଏ ପ୍ରସଙ୍ଗରେ ଉଲ୍ଲେଖ କରାଯାଇ ପାରିବ । ଓଡ଼ିଆ କାବ୍ୟଭାଷାକୁ ନୂତନ ଶକ୍ତି ଓ ସୌନ୍ଦର୍ଯ୍ୟରେ ମଣ୍ଡିତ କରିବା ପାଇଁ ଏମାନଙ୍କର ଅବଦାନ ଅବିସମ୍ବାଦିତ ।

କବିତାର ଭାଷା ପ୍ରୟୋଗ ସମ୍ପର୍କରେ କବି ଗୁରୁପ୍ରସାଦଙ୍କ ବିଭିନ୍ନ ଆଲୋଚନା ବ୍ୟତୀତ ରମାକାନ୍ତ ରଥଙ୍କ 'ସନ୍ଦିଗ୍ଧ ମୃଗୟା' କାବ୍ୟଗ୍ରନ୍ଥର ପୃଷ୍ଠବନ୍ଧ ତଥା ତାଙ୍କର କେଇଟି ପ୍ରବନ୍ଧ ('କୁଞ୍ଜବନରେ ଅପରିଚିତ ପାଦଶବ୍ଦ', 'ଭୀମଭୋଇଙ୍କ ଦୃଷ୍ଟାନ୍ତ' ପ୍ରଭୃତି )ରେ ଆଲୋକପାତ କରିଛନ୍ତି । ଅନୁସନ୍ଧିତ୍ସୁ ପାଠକମାନଙ୍କର ଏହା ଅବଶ୍ୟ ପଠନୀୟ । ବିଶେଷତଃ ଉତ୍ତର ଷାଠିଏ କାଳର କବିତା ପାଇଁ ଦୁର୍ବୋଧତା ଓ ଦୁରୂହତାର ଅଭିଯୋଗ ଥିଲା ଅନେକ । ଉଭୟ ଆତ୍ମିକ ଓ ଆଙ୍ଗିକ ଦୃଷ୍ଟିରୁ—ପାଶ୍ଚାତ୍ୟ ସାହିତ୍ୟର ପ୍ରଭାବ, ଭାବର ଅସ୍ୱଚ୍ଛଳତା ଓ ଭାଷାର କ୍ଲିଷ୍ଟତା ଏହାର କାରଣ ହୋଇପାରେ । ପରିବେଶଗତ ଅନ୍ୟାନ୍ୟ ବହୁ କାରଣର ଉଲ୍ଲେଖ କରାଯାଇ ପାରିବ । ଉତ୍ତର ପଞ୍ଚାଶ୍ର କାଳରୁ ଓଡ଼ିଆ କବିତାର ଭାଷା ଅଧିକ ପ୍ରାଞ୍ଜଳତା ଓ ବୋଧଗମ୍ୟତା ଆଡ଼କୁ ମୁହାଁଇଛି । ଆବେଦନ ବୌଦ୍ଧିକ ହେବା ସତ୍ତ୍ୱେ ବି ଆବେଗସଞ୍ଚାରୀ । ଗଦ୍ୟରୀତିକୁ ଅଧିକ ସଙ୍ଗୀତମୟ, ଶ୍ରୁତିସୁଭଗ କରିବା ଉଦ୍ୟମ ବେଶ ବର୍ତ୍ତମାନ । କବିତାର ଭାବଚେତନାରେ ଗଭୀରତର ଅନ୍ୱେଷାବୋଧ ପରିଲକ୍ଷିତ ହେଉଥିବାରୁ କାବ୍ୟଭାଷା ଅଧିକ ପରିଚ୍ଛନ୍ନ, କୋମଳ ଓ ଶାଣିତ ।

ଆଲୋଚନାର ଏ ପର୍ଯ୍ୟାୟରେ ଆଧୁନିକ ଓଡ଼ିଆ କବିତାର ଭାଷା ବ୍ୟବହାରର ବିବିଧ ଦିଗ ଓ ବିଭାଗର ପର୍ଯ୍ୟାଲୋଚନା କରାଯାଉଛି । ପ୍ରଥମରୁ ସ୍ଥୂଳ ପ୍ରଶ୍ନଟିଏ ଉଠୁଛି ଯେ, ଆଧୁନିକ କବିତାର ଆକାର କିପରି ? ତା'ର କଳେବର କେତେ ଦୀର୍ଘ ? ଅବଶ୍ୟ ଏ ପାଇଁ ନିର୍ଦ୍ଦିଷ୍ଟ ସୀମାରେଖା ନାହିଁ । ବକ୍ତବ୍ୟ ବା ଅଭିବ୍ୟକ୍ତିର ଦାବି ଅନୁସାରେ ତା'ର ଆକାର ନିର୍ଦ୍ଦିଷ୍ଟ ହୁଏ । ଶବ୍ଦର ମିତବ୍ୟୟିତା ଏବଂ ବର୍ଣ୍ଣନାର ସଂକ୍ଷିପ୍ତତା ବା ପରିମିତତାରେ ଏହା ଆସ୍ଥା ରଖେ । ସଚ୍ଚିଦାନନ୍ଦଙ୍କ ଦୀର୍ଘ କବିତା ଭିନ୍ନ ଊଣେଇଶ ଷାଠିଏ କାଳରେ 'କାଳପୁରୁଷ', 'ବାଘଶିକାର', 'ମାଟି ଓ ମଣିଷ', 'ଉତ୍ତରଣ' ଆଦି ଦୀର୍ଘ କବିତା ଲେଖା ହୋଇଛି । ପୁଣି ଊଣେଇଶ ପଞ୍ଚସ୍ତରି କାଳରେ ବହୁ ଦୀର୍ଘ କବିତା ରଚନା କରାଯାଇଛି ଯେଉଁଥିରୁ ଅଧିକାଂଶ ମିଥ୍ ନିର୍ଭର । ସ୍ୱଭାବତଃ ଆଧୁନିକ କବିତା ଦୀର୍ଘ ନୁହେଁ; ଅବଶ୍ୟ ଦୀର୍ଘ କବିତା ଲାଗି କବିଙ୍କୁ କିଛି ସଚେତନ ପରିକଳ୍ପନା କରିବାକୁ ପଡ଼େ । ପ୍ରାଚୀନ କବିଙ୍କ ପରି କେଉଁ ସର୍ଗରେ କେଉଁ ରାଗ, ଅଳଙ୍କାର ଇତ୍ୟାଦି ବିଷୟବସ୍ତୁ ବା କାହାଣୀଭିତ୍ତିକ ପରିବେଷଣ କରାଯିବ—ସେ ଲାଗି ଏକ ବିଧିବଦ୍ଧ ଗ୍ରନ୍ଥପ୍ରାୟ ଯୋଜନାରେ ଆଧୁନିକ କବି ଖୁବ୍ ଆସ୍ଥା ରଖେନା । ତା'ର କାବ୍ୟଭାଷା ପୂର୍ବଭଳି ଭାବନିର୍ଭର । ଏଇ ଭାବର ବିକାଶ ପର୍ଯ୍ୟାୟ ତା'ର ସ୍ୱତଃ ଦାବି ନେଇ ପରିଣତି ଆଡ଼କୁ ଗତିକରେ । ଏଣୁ ବର୍ଣ୍ଣନାକୁ ଏ କ୍ଷେତ୍ରରେ ନିର୍ଦ୍ଦିଷ୍ଟ କରାଯାଇପାରେ ନାହିଁ । ଦୀର୍ଘ କବିତାରେ ବ୍ୟାପକ ଏକ କାନ୍‌ଭାସ ଉପରେ ଅଧିକ ସ୍ୱାଧୀନ ଓ ମୁକ୍ତଭାବରେ ଆଙ୍ଗିକ କୁଶଳତା ଓ ଆତ୍ମିକ ମହତ୍ତ୍ୱ ପ୍ରଦର୍ଶନ କରିବାର ସୁଯୋଗ ରହିଛି । ମୌଳିକ ଜୀବନ ଦୃଷ୍ଟିର ପ୍ରତିଫଳନ ଏବଂ କାବ୍ୟଚିନ୍ତାର ଏକ ନିର୍ଦ୍ଦିଷ୍ଟ ଉନ୍ମେଷ ଉତ୍ତରଣ ପାଇଁ ମଧ୍ୟ ଦୀର୍ଘକବିତା ଏକ ବଳିଷ୍ଠ ମାଧ୍ୟମ । ଏଠାରେ ଅବଶ୍ୟ ବର୍ଣ୍ଣନା ବାହୁଲ୍ୟ ଯୋଗୁଁ କବିତାର ସଂଗଠନରେ ଆଞ୍ଚ ଆସିପାରେ । କବି ସୀତାକାନ୍ତ ମହାପାତ୍ର ଏ ସଂପର୍କରେ କହନ୍ତି—'ଦୀର୍ଘ କବିତା କେହି ଇଚ୍ଛା କରି ଲେଖେନି । କ୍ଷୁଦ୍ର କବିତା ଲେଖିବା ଅପେକ୍ଷା ଏହା ଯେ ଅଧିକତର କଷ୍ଟସାଧ୍ୟ ଓ ଅଧିକ ସଂଯମର ଅପେକ୍ଷା ରଖେ ଏହା ନିଃସନ୍ଦେହ; ତଥାପି କେତେକ ଭାବବୈଚିତ୍ର୍ୟ ଓ ଦୃଷ୍ଟି ବା Visionର ଚିତ୍ରଣ ପାଇଁ ଏହା ଆବଶ୍ୟକ ହୁଏ । (୧)

ଦୀର୍ଘ କବିତାରେ ବହୁ ଉପକରଣ ବା ଉପାଦାନର ସଂଯୋଜନା କରାଯାଏ ; ସାଧାରଣ କବିତାଠାରୁ ଏହାର କାବ୍ୟଭାଷା କେତେକ କାରଣରୁ ନିଶ୍ଚିତ ଭାବରେ ବ୍ୟତିକ୍ରମ । ଊଣେଇଶ ସତୁରି କାଳରେ ରଚିତ 'ଶବସଙ୍ଗମ' (ପ୍ରହରାଜ ସତ୍ୟନାରାୟଣ ନନ୍ଦ), 'ନିଜସନ୍ଧ ଶେଷେ ସାକ୍ଷାତକାର' (କମଳାକାନ୍ତ ଲେଙ୍କା), 'ଶଙ୍ଖନାଭି' (ହରିହର ମିଶ୍ର), 'ଶରଧାବାଲିର ବୁଢ଼ାଲୋକ', 'ଅରଣ୍ୟାନୀ' (ସୀତାକାନ୍ତ ମହାପାତ୍ର), 'ହୃଦୟେଶ୍ୱରୀ' (ସୌଭାଗ୍ୟ କୁମାର ମିଶ୍ର), 'ତମେ', 'ଶ୍ରୀରାଧା' (ରମାକାନ୍ତ ରଥ), 'ବୋଧିଜନ' (ରାଜେନ୍ଦ୍ର

(୧) କବି ସୀତାକାନ୍ତ ମହାପାତ୍ରଙ୍କ ସହ ଏକ ସାକ୍ଷାତକାର—ଇସ୍ତାହାର-୭

କିଶୋର ପଣ୍ଡା), 'ଭୂମା' (ଲକ୍ଷ୍ମୀନାରାୟଣ ମହାପାତ୍ର), 'ବର୍ଷା' (ପ୍ରସନ୍ନ ପାଟଶାଣି) ଆଦି ଦୀର୍ଘ କବିତାଠାରୁ ଆରମ୍ଭ କରି 'ଚନ୍ଦ୍ର' (ସନତଦାସ୍ ପଟ୍ଟନାୟକ), 'ନୀଳମାଧବ' (ଦିଲୀପ ଦାସ), 'ଶବରୀ' (ପ୍ରତିଭା ଶତପଥୀ), 'କାହ୍ନୁ' (ସୁରେଶ ପରିଡ଼ା), 'ଅହଲ୍ୟା' (ହୃଷୀକେଶ ମଲ୍ଲିକ) ଆଦି କବିତା ପର୍ଯ୍ୟନ୍ତ ଏ ଧାରା ପ୍ରଲମ୍ବିତ ଓ ସମୃଦ୍ଧ । ଏ ଦୀର୍ଘ କବିତାରେ କେଉଁଠି ଅଳ୍ପ ପରିଚ୍ଛେଦ, କେଉଁଠି ବହୁ ପରିଚ୍ଛେଦ ଆଉ ବା କେଉଁଠି ତାହା ପରିଚ୍ଛେଦ-ବିହୀନ । ପ୍ରାରମ୍ଭରୁ ଶେଷଯାଏ ଭାବସଂହତିର ସୂକ୍ଷ୍ମ ଯୋଗସୂତ୍ର ସେଠି ଅବ୍ୟାହତ ରହିଛି । ଏଇ ଦୀର୍ଘ କବିତାର ଧାରାକୁ ଲକ୍ଷ୍ୟ କରି ଉତ୍ତର ଅଶୀକାଳର କବିତାରେ ଯେଉଁ ସଚେତନ ଉଦ୍ୟମମାନ ଆରମ୍ଭ ହୋଇଛି—ତହିଁରୁ ଅନେକ କବିତା ଫେସନ ପ୍ରବଣତା, ଦୁର୍ବଳ ସଙ୍ଗଠନ ଆକ୍ରାନ୍ତ । ଏହା ଯେମିତି କହିବାକୁ ଗଲେ 'ଦୀର୍ଘ କବିତା ପାଇଁ ଦୀର୍ଘ କବିତା' । ଉପରୋକ୍ତ ଦୀର୍ଘ କବିତା ତାଲିକାରୁ କାବ୍ୟ ବୈଶିଷ୍ଟ୍ୟ ଦୃଷ୍ଟିରୁ କେତେକ ବେଶ୍ ଉଲ୍ଲେଖଯୋଗ୍ୟ । ସୀତାକାନ୍ତଙ୍କ ଦୀର୍ଘ କବିତା ବ୍ୟତୀତ ତାଙ୍କର କେତୋଟି ସଙ୍କଳନର ନିର୍ଦ୍ଦିଷ୍ଟ ଆଭିମୁଖ୍ୟଭିତ୍ତିକ ଅଙ୍ଗୀକାର ('ଅଷ୍ଟପଦୀ', 'ସମୁଦ୍ର' ଆଦି ସଂକଳନ), ରମାକାନ୍ତ ରଥଙ୍କ 'ଶ୍ରୀରାଧା', ସୌରୀନ୍ଦ୍ର ବାରିକଙ୍କର 'ଉପଭାରତ'ର ସଜ୍ଜୀକରଣ ଏ ପ୍ରସଙ୍ଗରେ ବିଚାର୍ଯ୍ୟ । ସେମିତି ଗୋଟିଏ ନିର୍ଦ୍ଦିଷ୍ଟ ଶୀର୍ଷକରେ ଏକପ୍ରକାର ଭାବର ବିକାଶ ଉନ୍ମେଷ ପାଇଁ କିମ୍ବା ବିଭିନ୍ନ ଭାବର ପ୍ରକାଶ ପାଇଁ ମଧ୍ୟ ଉଲ୍ଲେଖଯୋଗ୍ୟ କବିତା ଲେଖାଯାଇଛି । ଏ ଦିଗରେ ସଚ୍ଚିଦାନନ୍ଦ ରାଉତରାୟଙ୍କ 'ସ୍ୱର୍ଗତଃ', ସୌରୀନ୍ଦ୍ର ବାରିକଙ୍କର 'ଦ୍ରୌପଦୀ', ବଂଶୀଧର ଷଡ଼ଙ୍ଗୀଙ୍କର 'ସୂର୍ଯ୍ୟାସ୍ତ', ଗିରିଜା କୁମାର ବଳିଆରସିଂହଙ୍କର 'ଭାରତବର୍ଷ' ଆଦି କବିତା କେତୋଟି ଉଦାହରଣ ।

ଦୀର୍ଘ କବିତା ପରି ଶ୍ରେଷ୍ଠ କବିତାର ନିର୍ଦ୍ଦିଷ୍ଟ ସଙ୍କଳନମାନ ପ୍ରକାଶିତ ହୋଇଛନ୍ତି । କିନ୍ତୁ ଆମ ପରମ୍ପରାର ଖାସ୍ ଶ୍ରେଷ୍ଠ କବିତା ରଚନାର ଉଲ୍ଲେଖଯୋଗ୍ୟ ଧାରା ଦୀର୍ଘ କବିତା ପରି ଆଖିଦୃଶିଆ ନୁହେଁ । 'ଜୀଅନ୍ତା ଶାଳଗ୍ରାମ', 'ଶତଦ୍ରୁ ଅନେକ', 'ନିତ୍ୟନିସ୍ମିତ', 'ଅନ୍ୟ ଦେଶ ଭିନ୍ନ ସମୟ' ଆଦି ସଙ୍କଳନ ବା ସଙ୍କଳନଭୁକ୍ତ ହୋଇ ନଥିବା ଅନେକ ଶ୍ରେଷ୍ଠ କବିତାରୁ ଅଧିକାଂଶ କବିତା ସ୍ୱତଃସ୍ଫୂର୍ତ୍ତି ସୃଜନଧର୍ମୀତା ଅପେକ୍ଷା ସଚେତନ ପ୍ରୟାସକୁ ସାବ୍ୟସ୍ତ କରେ । କିନ୍ତୁ ସାଧାରଣ ସଂକଳନରେ ରହିଯାଇଥିବା ଶ୍ରେଷ୍ଠ କବିତା କିନ୍ତୁ ଅଧିକ ଶକ୍ତିଶାଳୀ । ସାଧାରଣତଃ ଶବ୍ଦର ମିତବ୍ୟୟିତା ପ୍ରତି ପ୍ରୟତ୍ନ କରି ହରପ୍ରସାଦ ଦାସ ( 'ଅଲେଖିତ ବନବାସ' ସଙ୍କଳନ ) କେତେକ ଉଲ୍ଲେଖଯୋଗ୍ୟ କବିତା ଲେଖିଛନ୍ତି । ଏ କ୍ଷେତ୍ରରେ ଦୁର୍ଗାଚରଣ ପରିଡ଼ାଙ୍କ କବିତାର ଆକାର ମଧ୍ୟ ଶ୍ରେଷ୍ଠ; ଫଳତଃ ଆବେଦନ ମଧ୍ୟ ତୀକ୍ଷ୍ଣ । ବର୍ଣ୍ଣନାର ଆଧିକ୍ୟ ବା ବାହୁଲ୍ୟ ବିରୁଦ୍ଧରେ ଏମାନେ ସାକ୍ଷ୍ୟ ଦିଅନ୍ତି । ଆଧୁନିକ ଓଡ଼ିଆ କବିତା ଏଣୁ କଳେବର ଦୃଷ୍ଟିରୁ କୌଣସି ନିର୍ଦ୍ଦିଷ୍ଟତାକୁ ଗ୍ରହଣ କରି ନାହିଁ । ଏଣୁ ବହୁପ୍ରକାର କବିତା ଲେଖାଯାଇଛି । କେହି କେହି ଭିନ୍ନଧର୍ମୀ

ପରୀକ୍ଷା (ଆକାର ସଜ୍ଜା ଦୃଷ୍ଟିରୁ କିମ୍ବା ଗାଣିତ୍ୟିକ ବିନ୍ୟାସ ଦୃଷ୍ଟିରୁ) କରିଥିଲେ ମଧ୍ୟ ତାହା ସଫଳ ହୋଇ ନାହିଁ ।

ଆଧୁନିକ କାବ୍ୟଭଣ୍ଡାର ଶ୍ରିବୃଦ୍ଧିର ସକାଶେ ଉଲ୍ଲେଖଯୋଗ୍ୟ ଦିଗ ହେଉଛି ଶବ୍ଦ ପ୍ରୟୋଗ ଓ ଶବ୍ଦ ସଂଯୋଜନା ବା ଗ୍ରନ୍ଥନ । ଶବ୍ଦର ସଜ୍ଜୀକରଣ, ବ୍ୟବହାରଗତ ନିପୁଣତା ସଫଳ କବିତାକୁ ଜନ୍ମଦିଏ । କବିତାର ଅସ୍ତ୍ର ଓ ଆଧାରହିଁ ଶବ୍ଦ । ଆଧୁନିକ କବିତାରେ ପାରମ୍ପରିକ ଶବ୍ଦ (ବୃନ୍ଦ, ପୁଷ୍ପ, ଫଗୁଣ ଆଦି) ମାନ ପ୍ରାୟ ନିର୍ବାସିତ ଏବଂ ଏଗୁଡ଼ିକ ବ୍ୟବହାରଗତ ଆବଶ୍ୟକତା ଦୃଷ୍ଟିରୁ ପ୍ରୟୋଗ ଗୌରବ ପାଉଛନ୍ତି । ଅପାରମ୍ପରିକ, ଏକାନ୍ତ ଲୌକିକ ଅପ୍ରଚଳିତ ଶବ୍ଦମାନ ଆଧୁନିକ କବିତାରେ ଗୁରୁତ୍ୱ ପାଉଛନ୍ତି । ଏହା ବ୍ୟତୀତ ଇଂରାଜୀ, ଯାବନିକ, ତତ୍ସମ, ହିନ୍ଦୀ ଭାଷାଭାଷୀ ଶବ୍ଦ ତଥା ପ୍ରାଚୀନ ପୁରାଣ ଓ କାବ୍ୟରେ ପ୍ରଯୁକ୍ତ ଶବ୍ଦମାନ ଆଧୁନିକ କବିତାରେ ବ୍ୟବହୃତ ହୋଇଛନ୍ତି; ଫଳରେ କବିତାର ଭାଷା ନୂତନ ସ୍ୱାଦ ମଣ୍ଡିତ ହୋଇଛି । ଆବେଦନ ବି ହୋଇଛି ନିଆରା । ଲୌକିକ କଥ୍ୟଗତ ଓ ଗ୍ରାମୀଣ ଶବ୍ଦାବଳୀକୁ ସୀତାକାନ୍ତ ମହାପାତ୍ର ଅଧିକ ଭାବେ ପ୍ରୟୋଗ କରିଛନ୍ତି । ଗ୍ରାମ୍ୟ ଶବ୍ଦାବଳୀମାନ କମଳାକାନ୍ତ ଲେଙ୍କା, ପ୍ରମୋଦ ମହାନ୍ତିଙ୍କଠାରୁ ଆରମ୍ଭ କରି ନୂତନ ପିଢ଼ିର ଅଶ୍ୱିନୀ କୁମାର ମିଶ୍ର, କୃଷ୍ଣବିହାରୀ ଧଳ, ହୃଷୀକେଶ ମଲ୍ଲିକଙ୍କ କବିତାରେ ବେଶ୍ ପରିଲକ୍ଷିତ; ଅବଶ୍ୟ ଅଭିଧାନର ବହୁ ଶବ୍ଦ ଆଧୁନିକ କବିତା ମଧ୍ୟକୁ ଆସିପାରୁନାହିଁ । ବିଭିନ୍ନ ପ୍ରକାର ଶବ୍ଦର ସମନ୍ୱୟ ଯୋଗୁଁ ଓଡ଼ିଆ କବିତାର ଭାଷା ନୂତନଶ୍ରୀ ଓ ଗୌରବ ମଣ୍ଡିତ ହେଉଛି । ଶ୍ରେଣୀବିଭାଗ ନକରି ଏଇ ବିଶେଷ ବିଶେଷ ଶବ୍ଦମାନଙ୍କର କିଛି ଉଲ୍ଲେଖ କରାଯାଇପାରେ । ଆମ ସମୟର ବିଶିଷ୍ଟ କବିମାନଙ୍କ କବିତାର ଏଇ ଶବ୍ଦଗୁଡ଼ିକୁ ନିଆଯାଇଛି—ଯଥା : ତିରୋଟ, ମିକାସ, ମୁଲ୍ୟମ୍, ଟହଲ, ଦିକ୍ଦାର ନିଧଡ଼କ, ସୁଲୁସୁଲୁ, ଆକ୍ରାମାକ୍ରା, ଝୁଲୁଝୁଲୁ, ଲେଗ୍ରିକୋଗ୍ରି, ଘୁମର ଘୁମର, ଚକ୍ଚକ୍, ହ୍ୟାଣ୍ଡବିଲ, ଟନେଲ, ସିଗ୍ନାଲ, ଫର୍ନେସ, ମାଫ୍, ହେଲ୍ପର, ନେଫେଡ଼ା, ତୋଫା, ଉଦ୍ବାର୍ଯ୍ୟ, ଅଯାଡ଼, ଜୌଲୁସ, ନିବାତ, ତକ୍ଷନକ୍ଷ, ଆହଙ୍ଗଲପ୍ସା, ଯଦୃଚ୍ଛା, ବିବାକ, ସ୍ୟୁଟକେଶ୍, ମାହାପ୍ରଭୁ, ଏଥୁଅନ୍ତେ, ଅପ୍ରାଧ, ପୂର୍ବକାଳସ, ଭ୍ରାଥ, ପାର୍ଷଦ, ଢୁଳୁଡ଼ା, ସାଙ୍ଗ୍, ଅବିକା, ଏଇନେ, ଗୁମସୁମ, ଗ୍ରୁଁଟକାଟ, ଫନ୍ଫିନ୍, ଧଡ଼ଧଡ଼, ଇଲବିଲ, କିଡି, ନିବାଡ଼, ବିନସିବା, ଖୁବ୍ସୁରତ୍, ବେଲସୁ ଦୁଷମନ୍, କଡ଼ଚି, ମୁଗୁଲିକା, ଓ୍ୟାରନା, ଧ୍ୱଜଭଙ୍ଗ, ଲିଏକ, ହାରିକର, ସନାକ୍ତ, ଲୋକସାନ, ପରାଙ୍ମୁଖ, ନଚପର, ଉଦାନ୍ତ, ଅନଭୋଗ, ଇସ୍ତାହାର, ରଫା ପ୍ରଭୃତି ଅଜସ୍ର ଶବ୍ଦାବଳୀ । କାବ୍ୟଆଭିମୁଖ୍ୟ ଦୃଷ୍ଟିରୁ ଶବ୍ଦମାନେ ବ୍ୟବହୃତ ହେଲେ ମଧ୍ୟ କେତେଗୁଡ଼ିଏ ବିଶେଷ ଶବ୍ଦ ଓ ସେଗୁଡ଼ିକର ବ୍ୟବହାର ପ୍ରତି ଜଣେ ଜଣେ କବିଙ୍କର ବିଶେଷ ଦୁର୍ବଳତା ରହିଥାଏ । ବିଶିଷ୍ଟ କବିମାନଙ୍କର ଶବ୍ଦ ନିର୍ବାଚନ ଓ ବ୍ୟବହାର ପଦ୍ଧତି ସ୍ୱତନ୍ତ୍ର ।

ଆଧୁନିକ କବିତାର ଭାଷାଶୈଳୀ ପାଇଁ ଶବ୍ଦ ସଂଯୋଜନା ବା ଗ୍ରନ୍ଥନ କୌଶଳ ତାତ୍ପର୍ଯ୍ୟପୂର୍ଣ୍ଣ । ଏହା ଉପମା ଓ ଚିତ୍ରକଳ୍ପକୁ ମୂର୍ତ୍ତିକରେ । କବିତାର ଭାବପ୍ରବୋଧକ (evocativeness) ଓ ନାନ୍ଦନିକ ଗୁଣରେ ଅଭିବୃଦ୍ଧି ଘଟାଏ । ଏଥିରୁ ସୃଜନ ଧର୍ମର ମୌଳିକ ପରିଚୟ ମିଳେ । ସଚ୍ଚି ରାଉତରାୟ ହିଁ ଏପ୍ରକାର ସଂଯୋଜନାର ଆଦ୍ୟପ୍ରବର୍ତ୍ତକ । ବିଭିନ୍ନ ପ୍ରତିଷ୍ଠିତ କବିଙ୍କ କବିତାରୁ ଶବ୍ଦସଜ୍ଜାର କିଛି ଉଲ୍ଲେଖ କରାଯାଉଛି ।

୧ । ଚର୍ବିପରି ସ୍ନିଗ୍ଧ ନଦୀ, ଖାକିର ହସ, ମାଇଲ୍ ଏ କ୍ଷୁଧା, କାଳରକ୍ତକଳା, ଗହମ ପନ୍ଦ୍ରହ, ଭେଲ୍‌ଭେଟ ଆଖି, ଘାସର ବକୁଳ ହ୍ରଦ, ରେଶମ ଶ୍ୱାସ (ସଚ୍ଚିଦାନନ୍ଦ ରାଉତରାୟ) ।

୨ । ଛିନ୍ନଭିନ୍ନ ବିଜୟର ଧୂଅଁ, ଆଷାଢ଼ର ଅସ୍ତ୍ରୂଳ ଉଦୟ, ବର୍ଷର ନଷ୍ଟ ଆତ୍ମା, ନିଶବ୍ଦ ସମସ୍ତ, ସଉଖର ପଳାତ ମୂର୍ଚ୍ଛନା, ନିହତ ଗୋଧୂଳି (ଗୁରୁପ୍ରସାଦ ମହାନ୍ତି) ।

୩ । ଫେଗା ଦୋଦୋପାନ୍ଥ ଫର୍ଦ୍ଦ, ବାକଲାଙ୍କ ପ୍ରାଚୀନ କାମନା, ଦକ୍ଷିଣା ହାଓ୍ୱାର ଶବ, ମଖମଲ ଟାହିଟାପରା, କାନ୍ଦି କାନ୍ଦି ଅଧୋଗତ, ଉଦାସ କାନ୍ଧ, ଚକ୍ ଚକ୍ ଦୁଃଖ, ନୀଳକଇଁ ରଙ୍ଗର କୁଣ୍ଡ, ବିବସନ ଅନ୍ତଃକରଣ (ରମାକାନ୍ତ ରଥ) ।

୪ । ଚନ୍ଦ୍ରର ଜଙ୍ଗଲ, ଆଖିଫିଟି ନଥିବା ଖରା, ରାଜସିକ ଅନ୍ଧକାର, ନିଚୁଙ୍କ ଲାବଣ୍ୟ, ମୃଗତୃଷ୍ଣାର ସ୍ନିଗ୍ଧ ଶୀତକାଳ, ଅନାହତ ଆଲୋକ, ମଳ୍ଲି ମଉଳିର ମଳ୍ଲି କଇଁବନ (ଦୀପକ ମିଶ୍ର) ।

୫ । ଝାପ୍‌ସା ଆଲୁଅର ମୁଗ୍ଧ ପଦାବଳୀ, ବାନସ୍ତୀ ଅହଂକାର, ହସନ୍ତିହ ଫରର ଔଜ୍ଜ୍ୱଲ୍ୟ, ଗୋପ୍ୟ ସନ୍ନ୍ୟାସ, ଛେଉଣ୍ଡ ନିର୍ବୋଧତା (କମଳାକାନ୍ତ ଲେଙ୍କା) ।

୬ । ଶୀର୍ଣ୍ଣ ନଦୀ ନିଷ୍ଫଳ ପାଣି, ପବନର ଅକୁଣ୍ଠିତ ଚୁମା, ଅପହୃତ କ୍ଷମାର ଶେଷ ସ୍ୱୈଳକ, ବୋକ୍‌ରା ବୁଢ଼ା ସମୟ, କ୍ଲୀବ ଆଘୂର୍ଣ୍ଣ, କଲବଲ ଉଚ୍ଛ୍ୱାସ (ସୌଭାଗ୍ୟ କୁମାର ମିଶ୍ର) ।

୭ । ସନ୍ତୃପ୍ତ ସ୍ତବ୍ଧତା, ପ୍ରଗଳଭ ସ୍ତନ, ସୁଗନ୍ଧି ସନ୍ନ୍ୟାସ, ଲୋମଶ କୁହୁଡ଼ି, ଉଦାସୀନ ସ୍ୱର୍ଗ (ଦେବଦାସ ଛୋଟରାୟ) ।

ଶବ୍ଦ ବ୍ୟବହାରର ସ୍ୱତନ୍ତ୍ରତା ଯୋଗୁଁ ବିଭିନ୍ନ କବିଙ୍କ ପଂକ୍ତି ସଂରଚନା ମଧ୍ୟ ଭିନ୍ନବାଗର । କବିତାର ଭାବ ଓ ପରିବେଶାନୁରୂପ ପଂକ୍ତି ସଂରଚନା କରାଯାଉଥିଲେ ମଧ୍ୟ ବିଭିନ୍ନ କାବ୍ୟ ଶିଳ୍ପୀଙ୍କର ଶବ୍ଦ ଏବଂ ପଂକ୍ତି ସଂରଚନା ପ୍ରତି ସ୍ୱତନ୍ତ୍ର ମୋହ ବା ଆକର୍ଷଣ ରହିଛି । ତାହା ହିଁ ସେମାନଙ୍କର ବିଶେଷତ୍ୱ ମଧ୍ୟ । ଏ ପ୍ରସଙ୍ଗରେ ଉଦାହରଣ ଦେବା

ପୂର୍ବରୁ ସମାଲୋଚକଙ୍କ ମତ ଉଦ୍ଧାର କରାଯାଇପାରେ । 'ହରିବାବୁଙ୍କ ଭାଷାରେ ସାଧୁ ଶବ୍ଦାବଳୀ ଓ ତତ୍ସମ ଶବ୍ଦପ୍ରତି ଅଧିକ ମୋହ ରହିଛି । ସୀତାକାନ୍ତଙ୍କ ଭାଷାରେ ଗ୍ରାମ୍ୟ କଥିତ ଭାଷାର ଦୃଷ୍ଟାନ୍ତ ମଧ୍ୟ ଅଧିକ । ଗୁରୁପ୍ରସାଦଙ୍କ ଭାଷା ଗ୍ରାମ୍ୟ ଓ ଅଭିଜାତ—ଉଭୟର ମିଶ୍ରଣରେ ବେଶ୍ ସ୍ୱଚ୍ଛବାହୀ ଓ ଶାଣିତ । × × × ରମାକାନ୍ତଙ୍କ ଭାଷା କବିତା ଅନେକ ପ୍ରକାଶିତ, ଅନେକ ଅପ୍ରକାଶିତ । ବୋଧହୁଏ ତାଙ୍କ କବିତାରେ ସ୍ୱରର ଜଟିଳତା ହେତୁ ଭାଷା ଏପରି ହେବାକୁ ବାଧ୍ୟ ହୋଇଛି । (୨)

ସମାଲୋଚକଙ୍କ ମତ ଅତ୍ୟନ୍ତ ଯଥାର୍ଥ । ସମକାଳର ବିନୋଦ ନାୟକ, ବେଣୁଧର ରାଉତ ଏବଂ ରାଜେନ୍ଦ୍ର ପଣ୍ଡାଙ୍କ କବିତାରେ ତତ୍ସମ ଶବ୍ଦପ୍ରତି ଅଧିକ ମୋହ ପ୍ରୟୋଗ ପରିଲକ୍ଷିତ ହୁଏ । କମଳାକାନ୍ତ ଲେଙ୍କାଙ୍କ କବିତାରେ ଗ୍ରାମ୍ୟ ଓ ଆଞ୍ଚଳିକ ଶବ୍ଦମାନ ବେଶୀ ବ୍ୟବହୃତ । ନିମ୍ନରେ କଥିତ ଗ୍ରାମ୍ୟ ଶବ୍ଦାବଳୀ ପ୍ରୟୋଗର ଦୁଇଟି ମାତ୍ର ଉଦାହରଣ ଦିଆଯାଉଛି ।

୧ । ଅନ୍ଧ ଗାଈଆଳ ପିଲାର / କଅଁଳ କରୁଣ ବଇଁଶୀସ୍ୱର
ଠୁକୁ-ଠୁକୁ ଆଣୁ ଆଗୋପାଳ ଗୃହରେ ଯାଏ;
ବୁଡ଼ିଯାଉଥିବା ସୂର୍ଯ୍ୟଙ୍କୁ / ଅନେଇ ଅଶଳ ତା' ଟିପରେ
ଥିର କରି ଛୁଇଁଦିଏ ଓ କହେ : ଯାଉଛୁ ତେବେ ?
ହଉ କାଲିକି ଏକା
'ସକାଳ ସକାଳ ଆସିବ ।'

(ଗ୍ରୀଷ୍ମ ସନ୍ଧ୍ୟାର ଦୃଶ୍ୟ : ସୀତାକାନ୍ତ ମହାପାତ୍ର)

୨ । ସ୍ୱା' ପତ୍ରେ ଗୁଆକାତିରେ କଟା ଆଙ୍ଗୁଳିରୁ
ଚୂଇଆସୁଥିବା ରକ୍ତ ଖଇବେଳର ଉଦାସୀ ସୂର୍ଯ୍ୟକୁ
ହୁଏତ ପସୁରେ; ନଦେଇ ଗଲେ ପୃଥ୍ୱୀ
ତମେ କ'ଣ କର ? ସାପେଇ ଗଲେ ସ୍ନେହ
କ'ଣ କରେ ପବନ ? ବନ୍ଧୁଟି ଭିତରେ ଯାଜପୁଜ ହୋଇ
ଲଟେଇଗଲେ ନୀରବତା କ'ଣ କରେ ଶୂନ୍ୟତା ?
ହେଲି : ଶୂନ୍ୟତା ହିଁ ଗଳ୍ପଟିର ନିର୍ଜନ ଆହ୍ଲାଦ ।

( କାଠକ୍ୟାବିନ୍‌ରେ ପାନ ଭାଙ୍ଗୁଥିବା ଗଳ୍ପଟି : କମଳାକାନ୍ତ ଲେଙ୍କା)

---

(୨) ଆଧୁନିକ କବିତାର ଭାଷା ଓ ଛନ୍ଦ—ଡକ୍ଟର ନିତ୍ୟାନନ୍ଦ ଶତପଥୀ— 'ଚନ୍ଦ୍ରବେଣୀ' ପୂଜା ୧୯୮୪ ।

ଆଗରୁ କୁହାଯାଇଛି ଯେ ଆଧୁନିକ କବିତାର ପ୍ରକାଶଭଙ୍ଗୀ ବ୍ୟକ୍ତିକୈନ୍ଦ୍ରିକ, 'ମୁଁ'କାର ଚହ୍ନିତ। ବର୍ଣ୍ଣନାତ୍ମକ ଭଙ୍ଗୀ ଭିନ୍ନ ଆଧୁନିକ କବିତାର ପ୍ରକାଶଭଙ୍ଗୀ 'ମୁଁ' ବ୍ୟତୀତ 'ତୁମେ' ସମ୍ବୋଧନ ଚହ୍ନିତ। ଏ କ୍ଷେତ୍ରରେ କାବ୍ୟପୁରୁଷର ଆନ୍ତରିକତା ଏତେ ନିବିଡ଼ ଯେ ସମ୍ବୋଧନାତ୍ମକ ଭଙ୍ଗୀମାନ ବଡ଼ ଆବେଗବାନ ଓ ପ୍ରାଣୋଚ୍ଛଳ। ଏଣୁ 'ତୁମେ'ରୁ ଏହା ସ୍ଥଳବିଶେଷରେ 'ତୁ'କୁ ଖସି ଆସିଛି। କବିତାର ଆବେଦନ ଏ କ୍ଷେତ୍ରରେ ସଫଳ ବା ସାର୍ଥକ ହୋଇପାରିଛି। ଏ ପ୍ରକାର ସମ୍ବୋଧନରେ ଯେ ଭାବପ୍ରବଣତା ସାବ୍ୟସ୍ତ ହୋଇ ନାହିଁ, ଏପରି ନୁହେଁ। ଏହି 'ତୁ'କାର ଚହ୍ନିତ କୋମଳ ଭଙ୍ଗୀଟି ସୀତାକାନ୍ତ ଓ ପ୍ରତିଭାଙ୍କ କବିତାରେ ଅଧିକ ଦୃଷ୍ଟିଗୋଚର। କାବ୍ୟପୁରୁଷର ନିଜକୁ ମଧ୍ୟ ଏଇ ସମ୍ବୋଧନ। ପୁଣି ଏଇ କଥନଭଙ୍ଗୀକୁ ତୁଷ୍ଟ କରିବା ପାଇଁ 'ଗୋ', 'ଆଗୋ', 'ଲୋ', 'ରେ', 'ଆ', 'ମ', 'ଯା', 'ବାବୁ', 'ତୋର', 'ଦେଇଁ', 'କହି', 'ରହି' ଆଦିର ପ୍ରୟୋଗ ହୋଇଛି। ମୁଖ୍ୟତଃ ଏଠାରେ ଭଙ୍ଗୀ ସମ୍ବୋଧନାତ୍ମକ। ନିମ୍ନରେ କେତୋଟି ଉଦାହରଣ :

୧। ଦୟା ମୁଁ ମାଗୁ ନାହିଁ ମ/କରୁଣା ମାଗୁନି;

( ନାମକରଣ—ସୀତାକାନ୍ତ ମହାପାତ୍ର )

୨। ମାଟିତଳ ଆତ୍ମା ମୋର ଜାଣେ ଗୋ ଜାଣେ।

( ଗୋଟିଏ ପ୍ରାର୍ଥନା—ସୀତାକାନ୍ତ ମହାପାତ୍ର )

୩। କୂଳରେ ଆଉ ଅଛୁ କ'ଣ ?
ଆ' ଡେଇଁ ପଡ଼ିବା ପାଣିକି। ( ନଈ ପହଁରି—ସୌଭାଗ୍ୟ କୁମାର ମିଶ୍ର )

୪। ଯାଅରେ ଚଢ଼େଇ ଯାଆ/ତିନିଟି କୁଟାରେ/ଡିଅଣ ବିହାରୁ ଉଡ଼ି ଗଛପତ୍ର ଶୂନ୍ୟ ଆକାଶରେ। ( ଆତ୍ମୀୟତାର ତିନୋଟି ପର୍ଯ୍ୟାୟ—ରମାକାନ୍ତ ରଥ )

୫। ମୋର ସକଳ ପ୍ରାର୍ଥନାର ନିର୍ଯ୍ୟାସରେ ଗଢ଼ା/ତୁମେ କାହିଁ ହେଲ ନାହିଁ ଆଗୋ ଜନ୍ମ ଜନ୍ମ ସଞ୍ଚିତ ମୋ ପ୍ରେମ ସୁଗନ୍ଧରେ/ତୁମେ କାହିଁ ଉନ୍ମୁଲ ନାହିଁ ଗୋ।

( ନିୟୁତର ନବଜନ୍ମ – ପ୍ରତିଭା ଶତପଥୀ )

୬। ସିଠିକୁ ଅଖି ପାଉ ନଥିବା, ସିଠିକୁ ହାତ ପାଉ ନଥିବା ମଣିଷ ଆମେ ରେ ଭୁପତି; ଖାଲି ମୁଖୁର/ଗନ୍ଧକୁ ଦୋହରେଇ ନାସଭଲ ଟାଣିନେବା ଆମ କାମ ରେ ଭୁପତି।

( ଗୋଲପୋଷ୍ଟ – ଦୀପକ ମିଶ୍ର )

ପ୍ରାଚୀନ ଲୋକଗୀତ, ନଗିତମାଳା, ଚର୍ଯ୍ୟାସାହିତ୍ୟ, ମାଦଳାପାଞ୍ଜି, ମହାଭାରତ, ରୁଦ୍ର ସୁଧାନିଧି, ଭାଗବତ, ପାଲା, ବ୍ରତକଥା ଏବଂ କମ୍ପୁଦନ୍ତୀମାନଙ୍କରୁ ପ୍ରସଙ୍ଗ ଓ ଉକ୍ତିକୁ ସୁଚ୍ଛୁରୁ ସଂଯୋଜନା କରି, ଏପରିକି ସମକାଳୀନ ସାହିତ୍ୟକୃତିକୁ ପ୍ରସଙ୍ଗ ମଧ୍ୟରେ ଅଣି

ଆଧୁନିକ କବିତାର ଭାଷା ସମୃଦ୍ଧ ହୋଇଛି । ଏ ପ୍ରକାର ପ୍ରୟୋଗରେ ବୈଶିଷ୍ଟ୍ୟ ହେଲା ପରମ୍ପରା ସହିତ ପାଠକର ଅବଚେତନକୁ ଯୋଡ଼ିବା । ଦ୍ୱିତୀୟତଃ ଏହା ପରମ୍ପରା-ମାନ୍ୟତାର କଥା । ଏହା କବିତାର ଆଙ୍ଗିକ ତଥା ଆତ୍ମିକ ସମୃଦ୍ଧି ପାଇଁ ଅନ୍ୟତମ ଉପାଦାନ । ଏ କ୍ଷେତ୍ରରେ ସବୁଠୁଁ ଗୁରୁତ୍ୱପୂର୍ଣ୍ଣ କଥା ହେଉଛି ଏହାର ପାଠକ-ଉନ୍ମୁଖ ଗୁଣ । କବିତାର ବିଷୟବସ୍ତୁ ସହିତ ଏମାନେ ସମନ୍ୱିତ ହୋଇ ତା'ର ଆଙ୍ଗିକସୌଷ୍ଠବ ବୃଦ୍ଧି ସହିତ ନୂତନ ସ୍ୱାଦ ପ୍ରଦାନ କରିଥାନ୍ତି । ଏ ପ୍ରକାର ପ୍ରୟୋଗ ବିଶେଷଭାବେ ରମାକାନ୍ତ ରଥ, ଶରତଚନ୍ଦ୍ର ପ୍ରଧାନ, ବଂଶୀଧର ଷଡ଼ଙ୍ଗୀ, ସୀତାକାନ୍ତ ମହାପାତ୍ର, ପ୍ରମୋଦ କୁମାର ମହାନ୍ତି, ହରିହର ମିଶ୍ର ପ୍ରମୁଖଙ୍କ କବିତାରେ ପରିଲକ୍ଷିତ ହୁଏ । ଚର୍ଯ୍ୟାଗୀତିର ଆଙ୍ଗିକରେ ବଂଶୀଧର ଷଡ଼ଙ୍ଗୀ କିଛି ଉଲ୍ଲେଖଯୋଗ୍ୟ କବିତା ଲେଖିଛନ୍ତି । ବିଭିନ୍ନ ପ୍ରସଙ୍ଗର ସମଧର୍ମୀ ଓ ଭିନ୍ନଧର୍ମୀ ବିବିଧ ଉଦ୍ଧୃତିର ଉଦାହରଣ ନିମ୍ନରେ ଦିଆଯାଇଛି । ଏପ୍ରକାର ଉଦ୍ଧୃତିମାନ ବିଶ୍ଳେଷଣର ଅପେକ୍ଷା ରଖନ୍ତି ନାହିଁ; ତେବେ ଏ ସମନ୍ୱୟ କିପରି ସ୍ୱତଃସ୍ଫୂର୍ତ୍ତି ବା ଅକୃତ୍ରିମ ହୋଇପାରିଛି ତାହା ଲକ୍ଷ୍ୟ କରିବାର କଥା; ନହେଲେ ଏହା ଚୁଛା ଚୋରିରେ ପରିଣତ ହେବ । ପାଠକମାନେ କବିତାଗୁଡ଼ିକ ଅଧ୍ୟୟନ ବା ବିଶ୍ଳେଷଣ କରିପାରନ୍ତି । ଓଡ଼ିଆ କବିତାର ଭାଷା ଏଇସବୁ ପ୍ରୟୋଗ ଦ୍ୱାରା ବେଶ୍ ସମୃଦ୍ଧ ।

୧ । କାଠଘୋଡ଼ା ପାଣି ପି'ରେ ପାଣି ପି'
ରଜାଘର ପୋଖରୀ ଏ ଜାଣି ପି' ।
ପଦ୍ମରୁ ଏଠି ବରଷଣ ମଧୁର
ପଦ୍ମରେ ସୁରଭିତ ଏଇ, ସୁଶୀତଳ ମଧୁର—
ଜାଣି, ପି'ରେ ଜାଣି ପି, କାଠଘୋଡ଼ା ପାଣି ପି' ।

(କାଠଘୋଡ଼ା ପାଣି ପି —ବେଣୁଧର ରାଉତ)

୨ । ଆସ ଆସ ପାରା ଯୋଡ଼ିକ
ମୋ ପିଣ୍ଡାରେ ବସ
ମୋ ପିଣ୍ଡାଟି ମୋଜାଇକ / ମସୃଣ ପାହାଚ ।

(ପୁନାର ହରିଣ—ଶରତ ଚନ୍ଦ୍ର ପ୍ରଧାନ)

୩ । ଟିକି ପିଲା ପରି ମୁଁ ଡାକେ :
ଆସ ଆସ ଧଳା ପାରା ମୋ ପିଣ୍ଡାରେ ବସ
ଖାଇବାକୁ ଦେବି ତମକୁ ମୋ'ର କଳା ଶୋଷ
ପିଇବାକୁ ଦେବି ତମକୁ ମୋ ଆତ୍ମାର ଅନ୍ଧାରି ନିର୍ଯ୍ୟାସ ।

(ଦିନଲିପି—ସୀତାକାନ୍ତ ମହାପାତ୍ର)

୪ । ସମୁଦ୍ର କି ଏକ କୂଳଭଙ୍ଗା ନଈ ?
ବାନ୍ଧ ଓଗାଳିବା ଅବା କୁଆଡ଼କୁ ଯାଇ ନ ପାଅଇ ମଳିନବସ୍ତ୍ର/
ପିନ୍ଧିଣ କିଏ ତୁମେ ଯାଉଛ କ୍ୱୋ ଘର ? ବାମହାତେ/
ଛତା ଏବଂ ଆର ହାତେ ଲଣ୍ଠନ ଧରିଛ । କହ କହ/
କିଏ ତୁମେ : ବର୍ଷା ନାହିଁ
ଦିନବେଳେ ଏକୁସବୁ ଧରିଛ କିପାଇଁ ?/
ଦେଖି ଦେଖି ନଦୀ ଏକ ସାପହୋଇ ସମୁଦ୍ରର ଗାତରେ ପଶଇ ।

( ମଲ୍ଲଲେକ ଓ ପାହାନ୍ତ୍ରା—ବଂଶୀଧର ଷଡ଼ଙ୍ଗୀ )

୫ । ଯନେ କ'ଣ ହେଲା/ଓଦା ବାଲି ଓଦା ରହିଗଲା
ସେ ଏତେ ଓଜନ ହେଲା, ବେକ ଲଇଁଗଲା
ବେକ ଲଇଁଗଲା ବେଳେ ଟ୍ରେଟମସ୍ ହେଲା
ଯନେ କ'ଣ ହେଲା ନା ଶୁଖିବା ଆଗରୁ ଲୁହ ବୋହିଗଲା ।

(ସମ୍ବନ୍ଧ—ରମାକାନ୍ତ ରଥ)

୬ । ସତରେ ମ—
କିଏ ଖାଏ ପାନଖିଲ୍ କା' ଦେହରେ ଛିଟା ।
ଛି ଛି···ଜାଲିଆ ମାଛ ତ ସବୁ ମୋଟାଦରେ ବିଦେଶକୁ, ବଜାରକୁ
କେଉଣ୍ଟି ଗଡ଼ଣା ପାଇଁ ଏତେ କିଏ ବନଶୀ ପକାଇ ବସି ନକାମା
ହେବ ଯେ ଆଉ ··

(ଅଣା ବାଇଆ—ଅମରେଶ ପଟ୍ଟନାୟକ)

୭ । ମଞ୍ଚରେ ପୋଡ଼ି ଯାଉଥିବା/ଥାକ ଥାକ ସୂର୍ଯ୍ୟାସ୍ତ ଓ ସାମ୍ନାଆଡ଼େ
ମେଟାଲ ସଡ଼କ—/ଯା'ର ମଝିରେ ଆତଯାତ ହୁଏ ଖଣ୍ଡାଲୋକ, ଆଙ୍ଗିବନ ।
ଅଥଚ ଅଥଚ ପାଦ ଯେ ବୋଲଇ ମନ, ସହସ୍ର ବଚନ ।
ଅନ୍ତରଙ୍ଗ ଈଶ୍ୱରଙ୍କ ଶବଧାବାଲିରେ, ଗୁଲିବାକୁ ଅଲଜୁକ ମନ ।

(ଖଣ୍ଡାଲୋକ — ପ୍ରମୋଦ କୁମାର ମହାନ୍ତି)

୮ । ପ୍ରଥମେ ବନ୍ଦନା କଲି ବୃକ୍ଷରାଜ ବଟ
ଦ୍ୱିତୀୟେ ବନ୍ଦିଲି ମୁହିଁ ନାଉଘର ଘାଟ
ଶେଷରେ ବନ୍ଦନା କରେ ଆପଣାର ଘଟ ।

(ଷଷ୍ଠ ଚେତନା—ରାଜେନ୍ଦ୍ର କିଶୋର ପଣ୍ଡା)

କାବ୍ୟ ଆଭିମୁଖ୍ୟରେ ପରମେଶ୍ୱର ସମୀକରଣ ତଥା ଅସ୍ୱୀକାର ସୂଚିତ କରିବା ପାଇଁ ଗୁରୁପ୍ରସାଦ ମହାନ୍ତି 'ସମୁଦ୍ର ସ୍ନାନ'ରେ 'ଧୂପ', 'କ୍ରନ୍ଦନ', 'ଗାର୍ଲ ସ୍କୁଲ' ତଥା ସରୋଜ ରଞ୍ଜନ ମହାନ୍ତି 'ବାଇଗେଣୀ ଋତୁ'ରେ 'ପ୍ରେମ ଋତୁ' ଓ 'ବିଷାଦ ଏକ ଋତୁ' ଗୁଚ୍ଛର ଉଲ୍ଲେଖ କରିଛନ୍ତି ।

ଆଧୁନିକ କବିତାର ଭଙ୍ଗୀ ଅନେକତ୍ର ପ୍ରଶ୍ନ ପଚାରିବା ଭଙ୍ଗୀ । ଏଣୁ ତା'ର ନାଟକୀୟ ପ୍ରୟୋଗ । ସେଠି ପ୍ରଶ୍ନଟିକୁ ଅନ୍ୟ ପ୍ରଶ୍ନକୁ ଡାକିଆଣେ । କବିତାର ସମଗ୍ର ଭାବକୁ ମଧ୍ୟ ଆଲୋକିତ କରେ । ପ୍ରଶ୍ନ ଭିତରେ ବି ଉତ୍ତର ନିହିତ ଥାଏ । ବକ୍ତବ୍ୟର ତାତ୍ପର୍ଯ୍ୟ ନିହିତ ଥାଏ । ପ୍ରଶ୍ନବାଚକ ଓ ବିସ୍ମୟସୂଚକ ଚିହ୍ନର ପ୍ରୟୋଗ ଏ ଭଙ୍ଗୀକୁ ସମୃଦ୍ଧ କରିଛି । ଏହା କଥ୍ୟସ୍ୱାଦର ନିକଟବର୍ତ୍ତୀ । ଭାଷାର ଆବୃତ୍ତି ସୁଭଗ ଗୁଣ ଏଇ ଭଙ୍ଗୀଦ୍ୱାରା ଅଧିକ ପ୍ରକାଶକ୍ଷମ ହୋଇ ପାରିଛି । କବିତାର ସଂହତି ଓ ଶୃଙ୍ଖଳା ପାଇଁ ଏଇ ଭଙ୍ଗୀଟି ବେଶି ଉପଯୋଗୀ । କବିତାର ପ୍ରାରମ୍ଭ ଓ ପରିଶେଷ ବିଶେଷତଃ ଏହାଦ୍ୱାରା ଚମକପ୍ରଦ ହୋଇପାରିଛି । ସିଧାସଳଖ ନାଟକୀୟତା ସମୃଦ୍ଧ ବାକ୍ୟକୁ ଛାଡ଼ି ମୂଳତଃ ଆଧୁନିକ କବିତାର 'ମୁଁ'କାର ଚିହ୍ନିତ ଭଙ୍ଗୀଟି କହିବାକୁ ଗଲେ ନାଟକୀୟ ପ୍ରକାଶଭଙ୍ଗୀ । ଅନେକ କବିଙ୍କ ଭାଷାଶୈଳୀରେ ଏଇ ନାଟକୀୟ ଭଙ୍ଗୀଟି ଆଖିଦୃଶିଆ । ଏଇ ଭଙ୍ଗୀଟି ବହୁ ସ୍ଥଳରେ ସୌନ୍ଦର୍ଯ୍ୟ ସିଦ୍ଧି ଗ୍ରହଣ କରିଛନ୍ତି । ବିଭିନ୍ନ ପ୍ରୟୋଗ ଭଙ୍ଗୀର କେତୋଟି ନମୁନା ନିମ୍ନରେ ପ୍ରଦତ୍ତ ।

୧ । ଏ ସନ୍ଧ୍ୟାର ଆକାଶରେ ଏତେ ତାରା ! ଏତେ ସ୍ୱପ୍ନ ! ଏତେ ନିର୍ଜନତା !
ପିଙ୍ଗଳାର ଏତେ ଦେହ ! ଏତେ ଜ୍ୱାଳା ! ଏତେ ଆତୁରତା !
ଆକାଶ ବି କେତେ ଶୂନ୍ୟ ! କେତେ କଳା ! କେତେ ମୂର୍ତ୍ତିମନ୍ତ !
ପିଙ୍ଗଳା କ୍ଷୁଭିତ କେତେ ! କ୍ଳାନ୍ତ କେତେ ! କେତେ ମ୍ଳାନ, ଅନ୍ତରେ ମଥିତ !

(ପିଙ୍ଗଳାର ସୂର୍ଯ୍ୟ—ବେଣୁଧର ରାଉତ)

୨ । କାହିଁକି/କାହିଁକି ଏତେ ଫ୍ଲାଟମଟରେ ଗାଣ୍ଡିଆଲ,
ତମ ଗାଁ ଏଠୁ କେତେଦୂର ?
ନଖର ତୀକ୍ଷଣ କାଣ୍ଟୋଣ୍ଟେ ଅଗରେ
ଚେନାଏ ମାଂସ ତମ ଗାଁ ?

(କଇଁଆ ଚଛ ଅଶରେ—ସୌଭାଗ୍ୟ କୁମାର ମିଶ୍ର)

୩ । ତଥାପି ବାଟକୁ କ'ଣ ମୁଁ ଛାଡ଼ି
ପାରୁଛି ? ମୁଁ ଛାଡ଼ିଲେ ବାଟ କ'ଣ ହରଯିବ ??
ନା ଭୁଲ୍‌ପଡ଼ି ରହିବ ମୁଁ କାହିଁକି ଓ କେଉଁଠି ଅଟକିଗଲି ?

ମୁଁ ତ ହାଣ୍ଡିଗୋପାଳ ତୁହି କି ମୋ
ଗୋଇଠିରେ ନୂପୁର ବାନ୍ଧ

(ନାଂଦେଢ ଡାକରା ମାୟା—ଦୀପକ ମିଶ୍ର)

୪। କାହାକୁ କ'ଣ ପଚାରିବୁ ବୋଲି ଉଦ୍‌ବିଗ୍ନତା ?
ଭାଗ୍ୟ !
ଓ' ହାତ ପାପୁଲି ଠୋଲରେ
ଧରିଥିବା କଙ୍କି ଟିର ପରକୁ ଛାଡ଼େଇ ଦେଇ
ତା'ର ଝଲଝଲ କୌତୂହଳେ ଦେଖୁଥିବା ଦୁରନ୍ତ ଶିଶୁଟି
ତୋ'ର ଭାଗ୍ୟ .. (ସାହାଡ଼ା ସୁନ୍ଦରୀ—ପ୍ରଫୁଲ୍ଲ ଶତପଥୀ)

୫। ସକାଳ କି ନାନାବାୟା ଗୀତର ସମୁଦ୍ର ?
ସମୁଦ୍ର କି ବର୍ଷାର ଚହଲା ନଈ ? ନଈ କ'ଣ
ଲକ୍ଷ୍ମୀମନ୍ତ ମଣିଷର ଲୁହ ଭର୍ତ୍ତି ଆଖି ?
ଆଖି କ'ଣ ଝାଲ ଏକ ଚନ୍ଦ୍ରଚନ୍ଦ୍ରୁ ? ଚନ୍ଦ୍ର କ'ଣ ଚନ୍ଦନର ଟିପା—
ଯୋଗୀ ପୁଅ କପାଳରେ ଝଲକ ପାଉଁଜ ?
ଯୋଗୀ କଣ ନିଜେ ଏକ ଗୀତ ଗାଇ ବୁଲିବାର ଧାରା ?—
ପାଇବାକୁ ମୁଠାଟିଏ ଭିକ୍ଷାର ଅଶିଷ ?
ଆଶିଷ କି ଆଲୋକ—ମାନସ ?

(ପର୍ଣ୍ଣ ଚେଷ୍ଟା—ପ୍ରମୋଦ କୁମାର ମହାନ୍ତି)

୬। ପ୍ରତାରଣାର ଇମାରତ୍ତ ତୋଳିଛୁ କିଏ ?
ଅନ୍ଧାରର ଉପାସନା କରୁଛୁ କିଏ ?
ମୃତ୍ୟୁର ବେନାମୀ ଚିଠିସବୁ କିଏ ଲେଖି ବୁଲୁଛୁ
ତୋର ନିଷ୍ପାପ ଠିକଣାକୁ ? ତୋ'ର ବିଶ୍ୱାସ ସବୁ ବନ୍ଧାପଡ଼ିଛି
କେଉଁ ସୁଧଖୋର ସମସ୍ତ ପାଖରେ ?

( ଆବିଷ୍କାର—ଆଶୁତୋଷ ପରିଡ଼ା )

ପ୍ରଶ୍ନବାଚୀ ଓ ବିସ୍ମୟସୂଚକ ଚିହ୍ନ ବ୍ୟତୀତ ସଂଳାପ ପ୍ରୟୋଗ ତଥା ଭିନ୍ନଧର୍ମୀ ଉପସ୍ଥାପନାଭଙ୍ଗୀରେ ମଧ୍ୟ ନାଟକୀୟତା ରହିଛି ।

ଅନୁପ୍ରାସିକ ଛଟା ଆଧୁନିକ କାବ୍ୟଭାଷାକୁ ବିଶେଷ କରି ମୁକ୍ତ ଗଦ୍ୟଛନ୍ଦକୁ ଆବେଦନଧର୍ମୀ କରିଛି । ଭାଷାର ଧ୍ୱନି ସୌନ୍ଦର୍ଯ୍ୟ ଯା' ଦ୍ୱାରା ସୁରକ୍ଷିତ । ଶବ୍ଦ

ବ୍ୟବହାରର କୌଶଳ ଏବଂ ତତ୍ସମ୍ଭୂତ ଚିତ୍ରକଳ୍ପ ସମନ୍ୱିତ ହୋଇ କାବ୍ୟଭାଷାକୁ ଅଧିକ ମସୃଣତା ଓ ପ୍ରାଣେ ଚଞ୍ଚଳତା ପ୍ରଦାନ କରୁଛି । ଅନନ୍ତ ପଟ୍ଟନାୟକ, ହରିହାନନ୍ଦଙ୍କ ପରେ ବିନୋଦ ନାୟକ, ଗୁରୁପ୍ରସାଦ ମହାନ୍ତି ଏହି ପ୍ରୟୋଗ ପ୍ରତି ଯତ୍ନ କରିଛନ୍ତି । ଗୋଟିଏ ଗୋଟିଏ ଶବ୍ଦ, ସମଉଚ୍ଚାରଣଧର୍ମୀ ଶବ୍ଦର ବାରମ୍ବାର ବ୍ୟବହାର ଏ ପ୍ରକାର ପ୍ରୟୋଗକୁ ଗତି ଦେଉଛି । ଏ ପ୍ରକାର ପ୍ରୟୋଗ ଊଣାଅଧିକେ ଅନେକଙ୍କ କବିତାରେ ପରିଲକ୍ଷିତ । ସୌଭାଗ୍ୟ କୁମାର ମିଶ୍ର 'ଅନ୍ଧ ମହୁମାଛି' କବିତାରେ 'କ' ଠୁଁ 'କ୍ଷ' ପର୍ଯ୍ୟନ୍ତ ଅକ୍ଷର ନିୟମରେ ଅଜସ୍ର ପ୍ରତୀକର ବ୍ୟବହାର କରିଛନ୍ତି । ଓଡ଼ିଆ କବିତାର ଭାଷାରେ ଏହା ଏକାନ୍ତ ନୂତନ ପ୍ରୟୋଗ । ଗୁରୁପ୍ରସାଦଙ୍କ 'ସମୁଦ୍ରସ୍ନାନ', ପ୍ରହରାଜ ସତ୍ୟନାରାୟଣ ନନ୍ଦଙ୍କ 'ଶବଚଙ୍ଗମ'ରେ ଏଇ ପ୍ରୟୋଗ ସୁଲଭ; ତେବେ ଗଦ୍ୟଭାବରେ ସୌଭାଗ୍ୟ ମିଶ୍ର ଏ ଦିଗରେ ଅଧିକ ସଚେତନ ।

(୧) ନିଃଶବ୍ଦ ଏ ବାଲିଚର, ବାଲି ଆଉ ବାଲି
ବିବର୍ଣ୍ଣ ଘାସ ଓ ବାଲି ପଥହୀନ ବିବର୍ଣ୍ଣ ପୃଥିବୀ
ଉପରେ ନିସ୍ତେଜ ଖରା ପଥହୀନ ବିବର୍ଣ୍ଣ ଆକାଶ
ବିବର୍ଣ୍ଣ ବାଲି ଓ ଘାସ ଶେଷହୀନ ଶୋଷ ଆଉ ଶୋଷ
ନିସ୍ତେଜ ଧୂସର ସ୍ତବ୍ଧ ବାଲି ପୁଣି ବାଲି ଓ ଆକାଶ ।

(କାଳପୁରୁଷ—ଗୁରୁପ୍ରସାଦ ମହାନ୍ତି)

(୨) ପିଙ୍ଗଳ ଗଛର ଛାଇ
ରଇରୁଦ୍ର ଖରା
ଅନେକ ପତ୍ରଙ୍କ ତଳେ ଗୁଞ୍ଜୁରୁଛି ଅଗମ୍ୟ ବର୍ଷା ।
ଖରାବେଳ ନିର୍ଘଣ୍ଟିଆ
ବୃନ୍ଦାବନ ସହରର ବାଟ
ଉତ୍ତାପର ଚହଟହ ହ୍ରଦ ମଧ୍ୟେ ପ୍ରେମିକ ଦମ୍ପତି ।

( ସୂର୍ଯ୍ୟାସ୍ତର ଖବର ଶେଷ ନୁହେଁ—ରମାକାନ୍ତ ରଥ )

(୩) ଏଠି ଏଣ୍ଟୁକ ଚକ୍‌ମିକ୍ କାକରରେ
ସେଠି କଣ୍ଠା ଚକ୍‌ମିକ୍ ଛୁଣ୍ଡା ସାସ୍ୱା ଚିନ୍ତାରେ ।

(ସକାଳ ବୋଧେ ସାଢ଼େ ସାତଟା—ସୌଭାଗ୍ୟ କୁମାର ମିଶ୍ର)

(୪) ତୋ' ପାଇଁ ହୃଦୟେଶ୍ୱରୀ ପାନ ରଖିଛି, ଗୁଆ ରଖିଛି,
ଘୋଡ଼ା ରଖିଛି, ଗାଡ଼ି ରଖିଛି, ମୟୂରପଙ୍ଖୀ ଶାଢ଼ି ରଖିଛି × × ×

( ହୃଦୟେଶ୍ୱରୀ—ସୌଭାଗ୍ୟ କୁମାର ମିଶ୍ର)

(୫) ବାଟ ମୁଁ ଚାଲୁଛି ଆଜି—ଛୁଇଁ ଛୁଇଁ ମାଈସଂଜବେଳେ
କେଉଁଠି ତୋ' ଚନ୍ଦ୍ରା ଗାଲେ ଥଣ୍ଟ ଘଷେ ବେନାମୀ ଚଢ଼େଇ ?

× × ×

ଧବଳ ସଉଦ ତୋ'ର ଟଗରଟା ହସୁଛି, ତଥାପି
କେଉଁଠି କେରାଏ ଘାସ ? କେଉଁଠି ତୋ' ଅସୀମ ଆକାଶ ?

(କଟକ : ୩ ଗିରିଜା କୁମାର ବଳିୟାରସିଂହ)

ଆଧୁନିକ କବିତାର ଭାଷାଶୈଳୀ ଉପରୋକ୍ତ ଉପାଦାନ ଓ ପ୍ରକାଶଭଙ୍ଗୀ ବ୍ୟତୀତ ମୁଖ୍ୟତଃ ଚିତ୍ରକଳ୍ପ, ମିଥ୍ ଓ ପ୍ରତୀକ ନିର୍ଭରଶୀଳ । କହିବାକୁ ଗଲେ ଆଧୁନିକ କବିତାର ଭାବ ଓ ଭାଷା ଏମାନଙ୍କର ସ୍ୱରୁ ସମବାୟ । ଭାଷା ଓ ଭଙ୍ଗୀର ପ୍ରାୟ ସମସ୍ତ ବିଭବ ଚିତ୍ରକଳ୍ପ ଓ ପ୍ରତୀକ ଆଶ୍ରିତ । ପ୍ରଥମେ ଚିତ୍ରକଳ୍ପର ଆଲୋଚନା କରାଯାଉ । ଶବ୍ଦ-ସଂଯୋଜନା, ବାକ୍ୟରଚନା, ପଂକ୍ତିଚୟନ ବା ଛନ୍ଦବିନ୍ୟାସ—ସବୁଠି ଚିତ୍ରକଳ୍ପର ଅନିବାର୍ଯ୍ୟ ଉପସ୍ଥିତି । ଚିତ୍ରକଳ୍ପକୁ ବାଦ୍‌ଦେଇ ଆଧୁନିକ କବିତାର ସଙ୍ଗଠନଗତ ସ୍ଥିତି ନାହିଁ କହିଲେ ଅତ୍ୟୁକ୍ତି ହେବ ନାହିଁ । ପ୍ରାୟତଃ ଦୃଶ୍ୟଧର୍ମୀ ଚିତ୍ରକଳ୍ପ । ଚିତ୍ରକଳ୍ପ ତା'ର ଦୃଶ୍ୟ ଉଦ୍‌ବୋଧନା ଭାବବାହୀ ଗୁଣକୁ ଛାଡ଼ିଦେଲେ ପ୍ରତୀକତା କରେ । ଆଧୁନିକ କବିତାରେ ଚିତ୍ରକଳ୍ପ, ପ୍ରତୀକ ଓ ମିଥ୍ ବେଳେବେଳେ ଏପରି ସମ୍ପୃକ୍ତ ଯେ, ସେମାନେ ଯେପରି ଗୋଟିଏ ଫୁଲର ବୃନ୍ତ, ପାଖୁଡ଼ା ଓ କେଶର । ଚିତ୍ରକଳ୍ପର ଭାବପ୍ରବୋଧନା ଗୁଣ ସବୁଠୁଁ ଅଧିକ । ବିଭିନ୍ନ ଅବସ୍ଥା ଓ ଧାରଣାକୁ ଏହା ଅତ୍ୟନ୍ତ ଉଦ୍ଭାସିତ କରିଦିଏ, ଦୃଶ୍ୟ ସହିତ ଅଦୃଶ୍ୟକୁ ଯୋଡ଼ିଦିଏ । ଏହା ବର୍ଣ୍ଣନାକୁ ସଂହତ ଓ ସତେଜତା ଦିଏ । ଆଧୁନିକ କବିତାରେ କେଉଁଠି ବାକ୍ୟାଂଶ, କେଉଁଠି ପୂର୍ଣ୍ଣବାକ୍ୟ, କେଉଁଠି ପରିଚ୍ଛେଦ ତ ଆଉ କେଉଁଠି ସମଗ୍ର କବିତାଟି ମଧ୍ୟ ଚିତ୍ରକଳ୍ପଟିଏ ବା ମାଳମାଳ ଚିତ୍ରକଳ୍ପଙ୍କର ସମବାୟ । କୁହାଯାଇଛି ଯେ ଜୀବନକାଳରେ ବହୁତ ଲେଖିବା ଅପେକ୍ଷା ଗୋଟିଏ ମୌଳିକ ଚିତ୍ରକଳ୍ପ ରଚନା କରିବା ଅଧିକ ସାଫଲ୍ୟ ଓ ଗୌରବର କଥା । ପାଶ୍ଚାତ୍ୟ କବିତାର ଚିତ୍ରକଳ୍ପ ଆନ୍ଦୋଳନର ପ୍ରଭାବ ବେଶ୍ କିଛିବର୍ଷ ପରେ ଓଡ଼ିଆ କବିତାକୁ ଅନୁପ୍ରାଣିତ କରିଥିଲା । ଏଣୁ ଆହରଣଗତ ପ୍ରଭାବରୁ ତାହା ମୁକ୍ତ ନଥିଲା । ସେ ଯାହାହେଉ, ପରବର୍ତ୍ତୀକାଳରେ ସ୍ୱକୀୟ ପରିବେଶ (ବିଶେଷତଃ ପ୍ରକୃତି)କୁ ନେଇ ଏହା ବୁଦ୍ଧିମନ୍ତ, ସନ୍ଦର୍ଭତାକେନ୍ଦ୍ରିତ ଚିତ୍ରକଳ୍ପ ସେଠି ପ୍ରାୟ ଅନୁପସ୍ଥିତ । କବିତାର ଭାଷାରେ ଚିତ୍ରକଳ୍ପର ଭୂମିକା ସମ୍ପର୍କରେ ଏହି ଆଲୋଚନାର ବିଭିନ୍ନ ପ୍ରସଙ୍ଗରେ ସ୍ଥାନ ପାଇଥିବା ଉଦ୍ଧୃତିମାନଙ୍କୁ ବିଶ୍ଳେଷଣ କରାଯାଇପାରେ । ଚିତ୍ରକଳ୍ପର ବିବିଧ ପ୍ରୟୋଗ ସକାଶେ ସମକାଳର ଅନେକ ବିଶିଷ୍ଟ କବିଙ୍କ ତୁଳନାତ୍ମକ ଅଧ୍ୟୟନ କରାଯାଇପାରେ । ନମୁନାରେ 'ସନ୍ଧ୍ୟା', 'ଖରା', 'ଜହ୍ନ', 'ମୃତ୍ୟୁ' ସକାଶେ ବ୍ୟବହୃତ ବିଭିନ୍ନ କବିଙ୍କର ବିଭିନ୍ନ

ସ୍ୱଭାବାନୁଯାୟୀ କେତେଟି ଚିତ୍ରକଳ୍ପର ଉଦାହରଣ ଦିଆଯାଇଛି । ବିଭିନ୍ନ ପରିବେଶ, ଅବସ୍ଥା ଓ ଅନୁଭବ ନେଇ ଏଇ ଚିତ୍ରକଳ୍ପଗୁଡ଼ିକ ରଚିତ । ଏଇ ପ୍ରକାର ଉଦାହରଣ ଅନେକ ସଂଗ୍ରହ କରାଯାଇ ପାରିବ । ଚିତ୍ରକଳ୍ପକୁ ବି କେତେକ ଭାଗରେ ଶ୍ରେଣୀଭୁକ୍ତ କରାଯାଇ-ପାରିବ; ତେବେ ଏହା କବିତାର ଭାଷାଶୈଳୀର ସବୁଠୁ ସୂକ୍ଷ୍ମ ଉପାଦାନ । ପ୍ରାୟ ଚିତ୍ରକଳ୍ପମାନ 'ଉପମା'ର ପୃଷ୍ଠପୋଷକତା କରୁଥିଲେ ମଧ୍ୟ ଭାବଗତ ଯୋଗାଯୋଗ ଏହାର ବୈଶିଷ୍ଟ୍ୟ ।

ଉଦାହରଣ—

ସନ୍ଧ୍ୟା :

(୧) ଧୀରେ ଧୀରେ ସନ୍ଧ୍ୟା ଆସେ ଠିକ୍ ଏକ ଭଙ୍ଗୁର ଆର ପରି
ସ୍ମୃତିକୁ ସେ ଫୁସୁଲାଏ କାନ୍ତିମୟ ସ୍ୱର୍ଗର ଗଳିରେ । (ଭାନୁଜୀ ରାଓ)

( ) ସନ୍ଧ୍ୟା ଆସେ ହାତପରି, ମହାଶୂନ୍ୟ ଗାତରୁ ବାହାରି । (ବଂଶୀଧର ଷଡ଼ଙ୍ଗୀ)

(୩) ସନ୍ଧ୍ୟା ଆସେ ଦୂରାଗତ କ୍ଳାନ୍ତ କାଫୋଇଭ
ନକ୍ସେଜ ଆଖିରେ ଅଣି ଅଦରକ୍ତ କାଠର ନିରାଶା । (ଗୁରୁପ୍ରସାଦ ମହାନ୍ତି)

(୪) ସନ୍ଧ୍ୟା କେବେ ଜଳଯାଏ ଗାଢ଼ ନାଲି ବତି ନିଆଁ ପରି
ଆକାଶର କଳାଧଳା ବହୁଦୂର ପାହାଡ଼ ଉପରେ । (ଗୁରୁପ୍ରସାଦ ମହାନ୍ତି)

(୫) ଆଜ ଟିକକରେ ସନ୍ଧ୍ୟା ମନ୍ଦିର ଦୁଆରେ
ଘଣ୍ଟର ଗୁଳ ଗୁଳ ଦୂରାଗତ କ୍ଳାନ୍ତ ଭକ୍ତ ପରି । (ସୀତାକାନ୍ତ ମହାପାତ୍ର)

ଖରା :

(୧) ପାଣିଖରା, ମଂଡ଼ୁଖରା, ପଣସର କୋହାପରି
ହଳଦିଆ ଚକଣିଆ ଖରା
ନାନା ରଙ୍ଗେ ଭରିଦିଏ ମୋ ମନର ନଷ୍ଟଚିଆ ସହସ୍ର କଟରା ।
(ସଚ୍ଚି ରାଉତରାୟ)

(୨) ଖରା ଆସେ କୁହୁଡ଼ିର ପଛେ ପଛେ କେଉଁ
ଗୋରା ତକ ତକ ମୁମୂର୍ଷୁ ଝିଅ ମାଆର
କାନ୍ଧ ଧରି ଉଠିଆସେ ଆକାଶର ପାହାଚ ଉପରେ । (ରମାକାନ୍ତ ରଥ)

(୩) ପ୍ରଥମ ପ୍ରବୃତ୍ତି ପରି ଓଦାବାଲିରେ ଶୋଇଥିବ ଖରା । (ଦୀପକ ମିଶ୍ର)

(୪) ସନ୍ତରର ମହଲ ଖରା ମଥାନରେ ଶୋଇଯାଏ
ଅଭିମାନୀ ଝିଅପରି ମୁହଁନନ୍ଦ ଗାଲ ପାରିଦେଇ । (ପ୍ରଭାତୀ ଶତପଥୀ)

ମୃତ୍ୟୁ :

(୧) ମୃତ୍ୟୁକୁ ଦେଖିଲେ ଖାଲି ହସମାଡ଼େ, ମୃତ୍ୟୁ ଏକ ଚପଳ ବାଳକ
ବଙ୍କା ଟଙ୍କା ଅକ୍ଷରରେ ବାଜେକଥା ଲେଖୁଚି କାନ୍ଥରେ
ବାର୍ଦ୍ଧକ୍ୟ ଝାଧରୀ ଅବା ଦାସୀଙ୍କର । (ରମାକାନ୍ତ ରଥ)

(୨) ମୃତ୍ୟୁ ସବୁଜ ଦୁର୍ବାଦଳ
ଆହତ ପ୍ରଜାପତିଙ୍କ ଡେଣାରେ । (ସୌଭାଗ୍ୟ କୁମାର ମିଶ୍ର)

(୩) ମୃତ୍ୟୁ ପଡ଼େ ଝର
ବିଶ୍ବର ବିଭୂତି ପରି ଲୋକଙ୍କ କାନ୍ଧରେ । (ଦୀପକ ମିଶ୍ର)

(୪) ମୃତ୍ୟୁ :

ବାପା ମାଆ ହାରିଥିବା ଛେଉଣ୍ଡ ପିଲାଟି
ପାଚୁଥାଏ ଭିତରର କରୁଣ ଅନ୍ଧାରେ । (ସୀତାକାନ୍ତ ମହାପାତ୍ର)

(୫) ସଦ୍ୟ ସେକା ପାଉଁରୁଟି ପରି
ମୃତ୍ୟୁ ମୋତେ ଗ୍ରାସ କରେ । (ହରି ପ୍ରଉତରାୟ)

ଜହ୍ନ :

(୧) ଆକାଶରେ ଫିକା ଜହ୍ନ—ହାବୁଳର ଫେଣପରି ଫଫା
ଆଲୋକ ଅଂଧାର ମଧ୍ୟରେ ଯିଏ କରିଅଛୁ ରଫା । (ହରି ପ୍ରଉତରାୟ)

( ଶ୍ରୀ ପ୍ରଉତରାୟ ଅନ୍ୟତ୍ର ଜହ୍ନକୁ ଟିଣର ଜହ୍ନ, ରୁଟିର ଜହ୍ନ ବୋଲି ମଧ୍ୟ ବର୍ଣ୍ଣନା କରିଛନ୍ତି । ଜହ୍ନକୁ ନେଇ ତାଙ୍କର ଅଜସ୍ର ଚିତ୍ରକଳ୍ପ । )

(୨) ସଦ୍ୟ ପ୍ରସୁତ ଜହ୍ନ ଉଠୁଛି
ହାଦାର ମାତାର କୁମାରୀ ଯୋନି
ରକ୍ତର ଜଳେ ଗାଧୋଇ ପାଧୋଇ
ନଦୀର ହାସ୍ୟ ଓଠରେ ଘେନି । (ରମାକାନ୍ତ ରଥ)

(୩) ସେ ଜହ୍ନ
ହାଣୁଚି ଗୋଟିଏ ରୁପାର ଡଙ୍ଗା
ଆକାଶର ସମୁଦ୍ର ପାରହେବାକୁ ମୋଡ଼ୁଛି ତା'ର ମଂଗ । (ଭାନୁଜୀ ରାଓ)

(୪) ଜହ୍ନ
ଦୂର ନୀଳ ଆକାଶରୁ ନଇଁଥିବା ଥମଥମ ଜହ୍ନ
ହାତପାହାନ୍ତାରେ
କଳସୀ ଚହଲା ଓଦା ଦେହ ଲତା ଚୋପା ଜହ୍ନ ସ୍ତନ ।

(ସୀତାକାନ୍ତ ମହାପାତ୍ର)

ଉପରୋକ୍ତ ଉଦାହରଣରେ ଚିତ୍ରକଳ୍ପ ନିମିତ୍ତ କେତୋଟି ବାକ୍ୟ ବା ପଂକ୍ତି ମାତ୍ର ଉଦ୍ଧାର କରାଯାଇଛି ।

ଚିତ୍ରକଳ୍ପ ପରେ ପ୍ରତୀକର ଭୂମିକା । ଆଧୁନିକ କବିତାର ଭାଷାଶୈଳୀରେ ବ୍ୟକ୍ତିଗତ ପ୍ରତୀକୀକରଣ ଭିନ୍ନ ସ୍ୱାଦ ସୃଷ୍ଟି କରିଛି । କୁହାଯାଇଛି ଯେ, କବିତା ଏକ ବୃହତ୍ତର ପ୍ରତୀକ । ଆଧୁନିକ କବିତାର ପ୍ରକାଶଭଙ୍ଗୀ ସିଧାସଳଖ ହୋଇ ନଥିବାରୁ ତହିଁରେ ପ୍ରତୀକଟିଏ ବା ପ୍ରତୀକପ୍ରାୟ ଉପାଦାନଟିଏ ସହଜାତ ଭାବରେ ରହିଥାଏ । କବିର ଜାଣତରେ ବା ଅଜାଣତରେ ପ୍ରତୀକ ତା' ପାଖେ ପାଖେ ରହିଥାଏ । ପାରମ୍ପରିକ ପ୍ରତୀକ ଭିନ୍ନ ଆମର ପ୍ରତୀକଧର୍ମୀ ବହୁ ବସ୍ତୁ ରହିଛି । ଆମର ପ୍ରାୟ କବିତା ସଙ୍କଳନର ନାମ ପ୍ରତୀକଧର୍ମୀ । ଆଧୁନିକ କବିତାରେ ବହୁଳ ଭାବେ ବ୍ୟକ୍ତିଗତ ପ୍ରତୀକର ପ୍ରୟୋଗ ସୁଲଭ । ଯଥାଯଥ ନିପୁଣତାର ଅଭାବ ହେଲେ ଏହା ଯୋଗାଯୋଗ ପ୍ରତିଷ୍ଠା କରିପାରେ ନାହିଁ । ପ୍ରତୀକ କବିତାର ଭାଷାକୁ ନିୟନ୍ତ୍ରିତ କରେ, ସଂକ୍ଷିପ୍ତ କରେ ଓ ସଂହତି ଆଣେ । 'ପ୍ରତୀକ ପାଇଁ ପ୍ରତୀକ' ପ୍ରୟୋଗ କରାଗଲେ କୃତ୍ରିମତା ସୃଷ୍ଟି ହୁଏ । କବିତାର ପଂକ୍ତିସଜ୍ଜା ଭିତରୁ ପ୍ରତୀକର ରୂପ ଓ ତାତ୍ପର୍ଯ୍ୟ ନିରୂପଣ କରିବାକୁ ହୁଏ । କେବେ କେବେ ପ୍ରତୀକଟିଏକୁ କେନ୍ଦ୍ର କରି କବିତାଟି ଗଢ଼ିଉଠେ । ଏଣୁ ପ୍ରତୀକ ନିର୍ବାଚନ ଓ ତା'ର ପ୍ରୟୋଗ ବଡ଼ କଥା । କାବ୍ୟ-ପୁରୁଷର ଅବଚେତନ କେତୋଟି ପ୍ରତୀକ ପ୍ରତି ବେଶ୍ ଦୁର୍ବଳ । ପ୍ରତୀକ ଅଧିକ ସୂଚନାଧର୍ମୀ ହେଲେ ପାଠକ ସହ ବ୍ୟବଧାନ ସୃଷ୍ଟି ହୁଏ । ପାଠକର ଅନୁଭବ ଓ ମନନର ଶକ୍ତି ପ୍ରତୀକର ତାତ୍ପର୍ଯ୍ୟ ବୁଝିବା ପାଇଁ ଅପରିହାର୍ଯ୍ୟ । ନିମ୍ନରେ ପ୍ରତୀକର ଚିତ୍ରୀକରଣକୁ ଲକ୍ଷ୍ୟ କରନ୍ତୁ ।

(୧) ଦୃଶ୍ୟମାନ ଏହିପରି :

ଧାଇଁର ହାତରେ ରକ୍ତ, ବେଳେବେଳେ
ଧାଇଁ ହସୁଥାଏ, ବର୍ଗବନ୍ଧନୀ ଭିତରେ ଅଙ୍କ ମାଡୁଥାଏ,
କଙ୍କି ଉଡ଼ି ବୁଲୁଥାନ୍ତି ଅରଖ ଗଛରେ,
ସିଡ଼ି ଠିଆ ହୋଇଥାଏ ଦରୁଆନ ପରି

ହିଁଅ ଛବି ଆଙ୍କୁଥାଏ, ବଡ଼ିଲା ଘଣ୍ଟରେ କାଠିଲୁହା
କେତେ କ'ଣ ଭାସି ଯାଉଥାଏ × × ×

(ଦୃଶ୍ୟାନ୍ତର : ସୌଭାଗ୍ୟ କୁମାର ମିଶ୍ର)

(୨) କେଉଁଠି ଜୀବନ ମହକୁ ନାହିଁ, ଉହକୁ ନାହିଁ ଯେ କହ :
ଘାସ ଗଜୁରିବାର ଦୃଶ୍ୟ କି ଝଡ଼ାପତ୍ରର ମର୍ମର,
ଫଟା ଭୂଇଁର ବିପୁଳ କ୍ଷତ କି ଶୁଖିଲା ମଞ୍ଜିର ଅଙ୍କୁରିବାର ସ୍ତବ,
ବଉଦର ମେଲା କି ବର୍ଷାପାଣିର ଅବାରିତ ପ୍ରବାହ,
ସାପର ଉଦ୍ଧତ ଫଣା କି ମେଞ୍ଚ ଛୁଆର ନିଶ୍ୱାସ,
ଚକ୍‌କର କାଟୁଥିବା ରଙ୍ଗୀନ ଗୁଡ଼ି କି ହଜା ବଳଦର ପେଜୁଆ ଆଖି
କେଉଁଠି ଜୀବନ ମହକୁ ନାହିଁ, ଉହକୁ ନାହିଁ ଯେ ?

(ନଈ : ଡଙ୍ଗାଖେଳ—ଶତ୍ରୁଘ୍ନ ପାଣ୍ଡବ)

ସୌଭାଗ୍ୟ କୁମାର ମିଶ୍ର 'ଜ୍ୱାଳାଲମ୍ଫର' (ପ୍ରଶ୍ନର······), 'ଯାତ୍ରା ସଙ୍ଗୀତ' (ଯଦି ଫେରେ······), 'ଅନ୍ଧ ମହୁମାଛି' (ସବୁଠି ମହୁ······) ପ୍ରଭୃତି କବିତାମାନଙ୍କରେ ନୂଆ ଭାବେ ପ୍ରତୀକର ପ୍ରୟୋଗ କରିଛନ୍ତି । ଏହା ନୂଆ ପ୍ରୟୋଗ ହେଲେ ବି ଭାରି ଜଟିଳ । ଆଧୁନିକ କବିତାର ଭାଷା ସହ ପରିଚିତ ହେବାପାଇଁ ପାଠକର ପ୍ରଥମ ଦାୟିତ୍ୱ ପ୍ରତୀକର ଅର୍ଥ ଦ୍ୟୋତନା ସହ ପରିଚିତ ହେବା, ଏହା ପରେ ପରେ କବିତା ବୋଧିତା ଆଡ଼କୁ ଗତିକରେ । ବିଶିଷ୍ଟ କବିମାନଙ୍କର ପ୍ରତୀକ ପ୍ରୟୋଗ ପ୍ରତି ନିଜସ୍ୱ ଅନୁରାଗ ରହିଛି । କେତେକ କବିତାରେ ପ୍ରତୀକ ଏକାଧିକ ଅର୍ଥ ପ୍ରତୀତି ଆଣିଦିଏ । କେତେକ କବିତାରେ ମୂଳ କେନ୍ଦ୍ର ପ୍ରତୀକଟି ବହୁ ପ୍ରତୀକଙ୍କୁ ଡାକିଆଣେ । କୁହାଯାଇପାରେ, ଆଧୁନିକ କବିତାର ଭାଷାରେ ଚିତ୍ରକଳ୍ପ ପରି ପ୍ରତୀକର ମଧ୍ୟ ଅନୁରୂପ ଭୂମିକା ରହିଛି ।

ଲୋକଗୀତ ଓ ପ୍ରାଚୀନ ସାହିତ୍ୟର ଉଦ୍ଧୃତିର ସଂଯୋଜନା ବ୍ୟତୀତ ପୁରାଣ କଳ୍ପ ବା ମିଥ୍ (Myth)ର ଅବତାରଣା ଆଧୁନିକ କବିତାର ଭାଷାକୁ ନୂତନ କ୍ଷେତ୍ର, ସ୍ଫୂର୍ତ୍ତି ବା ଜୀବନୀଶକ୍ତି ଯୋଗାଇଛି । ଉଣାଅଧିକେ ପ୍ରାୟ ପ୍ରୟୋଗବାଦୀ କବି ମିଥ୍‌ଭିତ୍ତିକ କବିତା ରଚନା କରୁଛନ୍ତି । ମିଥ୍ ଜରିଆରେ କାବ୍ୟ ବକ୍ତବ୍ୟ ବାଢ଼ିବା ଆମ କାବ୍ୟ ପରମ୍ପରାର ନୂତନ ଉଦ୍‌ଭାବନ । ମିଥ୍ କେଉଁଠି ସହାୟକ ଓ କେଉଁଠି ସୂଚନା । କେଉଁଠି ଆଙ୍ଗିକ ତ କେଉଁଠି କବିତାର ଆତ୍ମା । ତେବେ ମୁଖ୍ୟତଃ ମିଥ୍‌ର ପ୍ରତୀକ ମୂଲ୍ୟ ଗୁରୁତ୍ୱ ପାଏ । ମିଥ୍ ଉପାଦାନକୁ କାବ୍ୟ ବକ୍ତବ୍ୟ ସହିତ ସମନ୍ୱିତ କରାଇ ପାରିବାର ଦକ୍ଷତା ନ ରହିଲେ ତାହା ବର୍ଣ୍ଣନାଧର୍ମୀ ଅବସ୍ଥାରେ ବ୍ୟଞ୍ଜନାହୀନ ଭାବେ ରହିଯିବ । ମିଥ୍ ପ୍ରୟୋଗ

କରୁଥିବା କବିଙ୍କ ପାଇଁ ପ୍ରସଙ୍ଗ ନିର୍ବାଚନ ସକାଶେ ଅନ୍ତର୍ଦୃଷ୍ଟିର ଯେପରି ପ୍ରୟୋଜନ, ପାଠକ ପାଇଁ ବହୁପାଠୀ ହେବା ଅନୁରୂପ ଭାବେ ଆବଶ୍ୟକ । 'ଅଷ୍ଟପଦୀ' (ସୀତାକାନ୍ତ ମହାପାତ୍ର), 'ଉପଖ୍ୟାନ' (ସୌଭାଗ୍ୟ ବାରିକ), 'ଶ୍ରୀରାଧା' (ରମାକାନ୍ତ ରଥ) କବିତା ଗ୍ରନ୍ଥକୁ ପାଠକେ ସାମ୍ନାକୁ ଆଣନ୍ତୁ । ମିଥ୍ ହିଁ ଏଠାରେ ସାମଗ୍ରିକ ଭାବରେ କବିତାର କାନ୍‌ଭାସ୍ । ପ୍ରତ୍ୟେକର ପ୍ରୟୋଗ ଢଙ୍ଗ—ଉଦ୍ଦେଶ୍ୟ ଓ ବକ୍ତବ୍ୟ ଦୃଷ୍ଟିରୁ ଭିନ୍ନଧରଣର । ସଚ୍ଚିଦାନନ୍ଦ, ଜ୍ଞାନୀନ୍ଦ୍ର, ଗୁରୁପ୍ରସାଦ ସ୍ୱାଧୀନୋତ୍ତର ଓଡ଼ିଆ କବିତାରେ ମିଥ୍‌ର କୁଶଳ ପ୍ରୟୋଗ କରିଛନ୍ତି । ପରେ ପରେ ବେଣୁଧର, ଚିନ୍ତାମଣି, ରମାକାନ୍ତ, ସୀତାକାନ୍ତ, ଶରତ, ଦୀପକ, ସୌଭାଗ୍ୟ, ବ୍ରଜନାଥ, ରାଜେନ୍ଦ୍ର, ହରପ୍ରସାଦ ଦାସ ପ୍ରମୁଖଙ୍କ ହାତରେ ତାହା ବହୁ ବାଗରେ ପ୍ରୟୋଗ ମଣ୍ଡିତ ହୋଇଛି । ସୀତାକାନ୍ତ ମହାପାତ୍ର ସମକାଳରେ ଅଧିକ ମିଥ୍‌ଭିତ୍ତିକ କବିତା ଲେଖିଛନ୍ତି । ଆମର ସାଂସ୍କୃତିକ ଅବଚେତନରେ ପୌରାଣିକ ପ୍ରସଙ୍ଗ ଓ ଚରିତ୍ରଲାଗି ବେଶ୍ ଶ୍ରଦ୍ଧାଶୀଳ ଓ ମର୍ଯ୍ୟାଦାବନ୍ତ ଜାଗାଟିଏ ରହିଛି । ମିଥ୍‌ର ପରିବେଶ, ଭାବବିନ୍ୟାସ, ଚରିତ୍ରମାନଙ୍କର ବିଶେଷତ୍ୱକୁ ଆଧୁନିକ ସମସ୍ୟା, ଚେତନା ଓ ଦର୍ଶନ ପରିପ୍ରେକ୍ଷୀରେ ପ୍ରାୟତଃ ଉପଯୋଗ କରାଯାଇଛି । ବେଦ, ଉପନିଷଦ, ସଂସ୍କୃତ ପୁରାଣ ସାହିତ୍ୟଠୁଁ ତା'ର ପରମ୍ପରା ଓ ପରିସର ଲମ୍ବିଛି । ଏହା କୌଣସି ଏକ ତାତ୍ପର୍ଯ୍ୟକୁ ପ୍ରକାଶ କରିବାଲାଗି ଅଭିପ୍ରେତ । ଏଇ ମିଥ୍ କବିତା ଅନ୍ୱେଷଣର କବିତା, ସତ୍ୟ ସନ୍ଧାନର କବିତା, ନିଜର ମୂଳକୁ ଖୋଜିବାର କବିତା । ବିଂଶଶତାବ୍ଦୀର ଶେଷପାଦରେ ଏଣୁ କୁହାଯାଇପାରେ ଯେ ଆଧୁନିକ କବିତା ତା'ର ମୂଳକୁ ପ୍ରତ୍ୟାବର୍ତ୍ତନ କରୁଛି (Back to the root) । ଅର୍ଥାତ୍ ମୂଳସହିତ ନିଜକୁ ଯୋଡ଼ୁଛି, ସମନ୍ୱୟ କରୁଛି । ଆଧୁନିକ କାଳର ଆର୍ତ୍ତି, ଆକୁଳତା, ବିପର୍ଯ୍ୟସ୍ତ ମୂଲ୍ୟବୋଧ, ନିଃସଙ୍ଗତା ପାଇଁ, ଦୁଃଖକୁ ସମର୍ପିତ କରିଦେବା ପାଇଁ, ଉତ୍ତୀର୍ଣ୍ଣ ଓ ଆଲୋକିତ ହେବା ପାଇଁ କାବ୍ୟପୁରୁଷ ଏକ ମାଧ୍ୟମ ଖୋଜୁଛି । ଏଇ ମାଧ୍ୟମ ମିଥ୍‌ର ରୂପଚେତନା—ଏକ ଆଧ୍ୟାତ୍ମିକ ଉତ୍ତରଣ ସ୍ପର୍ଶ । ଏହି ମିଥ୍‌ଭିତ୍ତିକ କବିତା ବିଶେଷତଃ ତା'ର ପରମ୍ପରାରୁ ଗୁଣସଂଗ୍ରହ କରି ସୁଧିକଳାନ୍ତର ସହ ପରମ୍ପରାକୁ ସମୃଦ୍ଧ କରେ । ମିଥ୍ ସଂଯୋଜିତ କବିତାର ଭାଷା ଏଣୁ ନିଆରା । ମିଥ୍‌ର ପ୍ରତୀକ ମୂଲ୍ୟ ତାତ୍ପର୍ଯ୍ୟପୂର୍ଣ୍ଣ । ମିଥ୍ କେନ୍ଦ୍ରିତ ବହୁପ୍ରକାର କବିତା ଅଛି । କେତେକ କବିତାର ଭାଷା ବେଶ୍ ଯନ୍ତ୍ରଣାକ୍ତ ଓ ପ୍ରାର୍ଥନାମୟ । ଅନେକଙ୍କ 'ମୁଁ' କାର ଆରୋପିତ କାବ୍ୟପୁରୁଷ । ଓଡ଼ିଆ କବିତାରେ ଏ ନେଇ ବହୁ ଉଦାହରଣ ସୁଲଭ । ନିମ୍ନରେ କେତୋଟି ପଂକ୍ତିର ନମୁନା । ସମୁଦାୟ କବିତାର ବକ୍ତବ୍ୟକୁ ଏମାନେ କିଛି ଭାବେ ବହନ କରନ୍ତି ।

(୧) ଏକ ଦେହେ ଜନ୍ମନେଲି ପୁରୁଷ ମୁଁ ସେହି ଦେହେ ନାରୀର ଶୃଙ୍ଗାର
ମୋ ପାଖେ ଏକାଠି ହେଲା ସିଲ୍‌କ ଶାଢ଼ୀ ପେଣ୍ଟ କୋଟ—

ଧ୍ୱଜଭଙ୍ଗ ପ୍ରସୂତ ଯନ୍ତ୍ରଣା

ମୁଁ କାନ୍ଦିଲି ଯେତେବେଳେ ଯାଜପୁର କଟକରେ
ରାଜାଙ୍କର ଥିଲେ ନାମେ ଏକମାତ୍ର ପୁତ୍ର ଓ ଦୁହିତା···

(କାଳପୁରୁଷ : ଗୁରୁପ୍ରସାଦ ମହାନ୍ତି)

(୨) ଏ ମୋହର ବ୍ୟର୍ଥତାରେ ବ୍ୟାକୁଳିତ ସାରା ପୃଥ୍ୱୀ
ଆଲୋଡ଼ିତ ସାଗର ଧରା/ମଥୁରାରେ ପ୍ରାଣ ନାହିଁ, ଅନେକ ମୃତ ହୃଦୟ
ଯୌବନାଙ୍କ କୁଞ୍ଜାସନ/ଅଶ୍ଳୀଳ ଦେହ ଓ ପ୍ରାଣ
ଅଭିଶପ୍ତ ନଗରଲୋକେ/ଚନ୍ଦନରେ ଅଭିଲିପ୍ତ ହେଲେ ଅବା
ମୃତଦେହ, ମୃତପ୍ରାଣ/ମୃତ୍ୟୁର ଶୀତଳ ସ୍ପର୍ଶେ ସକଳ ଶରୀର ।

(କୁବ୍ଜା ପାଇଁ ଗୋଟିଏ ସଂଗୀତ : ସୀତାକାନ୍ତ ମହାପାତ୍ର)

(୩) ସତେକି ପୋଷ୍ୟ ହେଲା ହିରଣ୍ୟର ଗର୍ଭ
ଏବଂ ମୁଁ ନୃସିଂହ ରୂପରେ
ତୁମର ସ୍ତୁତିକୁ କଲି ନରମ ସଦୀର୍ଣ୍ଣ,
ଶାନ୍ତ ହେଲା ତୁମ ଦୃଷ୍ଟିର ପ୍ରହ୍ଲାଦ ପ୍ରାର୍ଥନା ।

(ଉତ୍ସ : ଦୀପକ ମିଶ୍ର)

(୪) ତମର ଯଦି ମେଘ ବର୍ଷା ପବନ
ପଠାଇବାକୁ ଇଚ୍ଛା ପଠାଇବ ତ ରକ୍ତ ।
ମୁଁ ଟିକିଏ ଆଗକୁ ଯାଏ, ପଛରେ ବ୍ୟାଧକୁ
କାହିଁକିରେ ତୋ'ର ଏ ଆୟୋଜନ !
ତୋ ପିଲାଙ୍କୁ ଆଙ୍କ ଖେଳ ନା ତୋ ଶ୍ରେଣୀ ଭଉଣୀର
ଦୋହଦ ହୋଇଛି ମୃଗ ମାଂସରେ ?

(ମୃଗୁଣୀ ସ୍ତୁତି : ସୌଭାଗ୍ୟ କୁମାର ମିଶ୍ର)

(୫) ହେଉଦଲୁ ପର୍ଣ୍ଣାଗାରେ/କିବା ଘରେ ଅବନତା ଶବରୀ ମୁଁ
ଆଖିର ସାଉକାଟିକୁ ଦୂରକୁ ଉଡ଼େଇ ଦିଏ/କେତେ ଝାଡ଼ ଜଙ୍ଗଲ ଓ
ପାହାଡ଼ ପାରେଇ ଡେଇଁ/କାଲେ ତୁମେ ଆସୁଥିବ
କୋକନଦ କରତଳ ତୋଳି, କାଲେ ବା ଆସିବ ଉଇଁ
କୋମଳ ନକ୍ଷତ୍ରପର/ଆସିବ ଓ କୁଡ଼ିଆରେ ମୋର
ଯତନେ ସଂଯାଦ ଥିବା/କୋଳିପସରାକୁ ଛୁଇଁଦେବ,
ଛୁଇଁଲା ମାତ୍ରକେ ଖଟା, ମିଠା, ପିତା, କଷା ଅମୃତ ହିଁ ହେବ ।

(ଶ୍ରମଣା : ପ୍ରତିଭା ଶତପଥୀ)

ଆଧୁନିକ କାବ୍ୟଭାଷା ବ୍ୟାକରଣ ନିୟମକୁ ସବୁବେଳେ ଗ୍ରହଣ କରୁନାହିଁ । ସାଂପ୍ରତିକ କବିଙ୍କ ଭିତରେ ଜଗନ୍ନାଥ ପ୍ରସାଦ ଦାସ କବିତାରେ ଆଦୌ ପୂର୍ଣ୍ଣଚ୍ଛେଦ ବ୍ୟବହାର କରନ୍ତି ନାହିଁ । ଯେହେତୁ ତାଙ୍କ ମତରେ କାଳ ଅଖଣ୍ଡିତ, ଚେତନା ଅଖଣ୍ଡିତ । ପୁନଶ୍ଚ ତାଙ୍କ କବିତାରୁ ଶୀର୍ଷକମାନେ କାଢ଼ିନେଲେ ତାହା ଦୀର୍ଘ କବିତାର ଭ୍ରମ ସୃଷ୍ଟି କରିପାରେ । କେତେକ ମୌଳିକ ବିଷୟବସ୍ତୁ ଓ ଚେତନା ଉପରେ କବି ତା'ର ବକ୍ତବ୍ୟ ପ୍ରକାଶ କରି ଚାଲିଥିଲେ, କବିତାର କାନ୍‌ଭାସ ବୃହତ୍ତର ହୋଇଯାଏ । ରମାକାନ୍ତ ରଥଙ୍କ ବହୁ କବିତାର ଶୀର୍ଷକ ଉଠାଇ ଯଥାର୍ଥଭାବେ ସଂଯୋଜିତ କରିଦେଲେ ତା' ରସ ଉପଭୋଗରେ ବାଧା ସୃଷ୍ଟି କରିବ ନାହିଁ ।

କିନ୍ତୁ କିଛି ଫେସନ୍ ପ୍ରବଣତା ଓ ତ୍ରୁଟିସତ୍ତ୍ୱେ ପୂର୍ଣ୍ଣଚ୍ଛେଦ ଓ କମାବର୍ଜନ, ଶବ୍ଦବିନ୍ୟାସ, ଧାଡ଼ି-ସଜ୍ଜୀକରଣ ଆଦିରେ ଓଡ଼ିଆ କବିତାର ଭାଷାରେ କିଛି ନୂତନତା ଓ ସଚେତନତା ପ୍ରକାଶ ପାଇଛି । ଶବ୍ଦମାନଙ୍କର ଭିନ୍ନଧର୍ମୀ ବ୍ୟବହାର ଏବଂ ଧ୍ୱନି ସୃଷ୍ଟି କରି ପଂକ୍ତିକୁ ଶ୍ରୁତିସୁଭଗ କରିବା ମାନସିକତା ( ଭସ୍ମାଙ୍କୁ, ହାତଙ୍କ, ମତେ କ'ଣ ଛୁଆଁଇ ଦେବ ସୀମାପର୍ବତଙ୍କ ?—ରମାକାନ୍ତ ରଥ ) କେତେକ କବିତାରେ ଲକ୍ଷ୍ୟ କରାଯାଏ । ଏତଦ୍‌ବ୍ୟତୀତ ହିଁ, ମିଁ, ନା, ନାରେ ନା, ତ, ଯେ ଆଦିଙ୍କ ସହିତ ଯଦି, ଯଦିଓ, କିନ୍ତୁ, ଅଥଚ, ବରଂ, ତେବେ, ତଥାପି, ସୁତରାଂ, ଅତଏବ, ଏଣୁ ଆଦି ଶବ୍ଦମାନଙ୍କର ବହୁଳ ବ୍ୟବହାର ପରିଲକ୍ଷିତ ହେଉଛି ।

ଆଧୁନିକ ଓଡ଼ିଆ କବିତାର ଅନ୍ୟତମ ରୂପବିଭବ ସନେଟ୍, ଓଡ଼ି ଇତ୍ୟାଦିର ଧାରା ପାରମ୍ପରିକତା ସର୍ବସ୍ୱ ନହୋଇ ତା'ର ଭଙ୍ଗୀ ଓ ଭାବନାରେ ଭିନ୍ନରୂପ ନେଇଛି । ସନେଟ୍‌ର ନିର୍ଦ୍ଦିଷ୍ଟ ଶୃଙ୍ଖଳାକୁ କବି ନିହାତି ଗ୍ରହଣ କରିନେବାକୁ ଚାହୁଁ ନାହିଁ । 'ସମୁଦ୍ର ସ୍ନାନ'ରେ ଗୁରୁପ୍ରସାଦଙ୍କର କେତୋଟି ସାର୍ଥକ ସନେଟ୍ ରହିଛି । ଏଇ ଧାରାଟି କଳାତ୍ମକଭାବେ ବିଭୂଦତ୍ତ ମିଶ୍ର, ପ୍ରହରାଜ ସତ୍ୟନାରାୟଣ ନନ୍ଦ, ଗିରିଜା କୁମାର ବଳିଆରସିଂହ ପ୍ରମୁଖଙ୍କ କବିତାରେ ଅବ୍ୟାହତ ରହିଛି । ସମକାଳର କବିତାରେ ସମ୍ଭବତଃ ସନେଟ୍‌ଇ ଏକମାତ୍ର ଛନ୍ଦମୟ ଧାରା । କିନ୍ତୁ ଏଇ ଧାରାଟିର ସାର୍ଥକ ବିକାଶ ଓ ଉତ୍ତରଣ ବିଡ଼ମ୍ବିତ ହୋଇଛି, ନୂଆପ୍ରକାର ଛନ୍ଦ ଯୋଜନା, ପଂକ୍ତିରଚନା ଦ୍ୱାରା ଏଇ ଧାରାଟି ସମୃଦ୍ଧ ହୋଇ ପାରନ୍ତା ।

ଆଧୁନିକ ଓଡ଼ିଆ କବିତାର ଭାଷାଶୈଳୀ କେତୋଟି ବ୍ୟକ୍ତି ଚରିତ୍ର ଓ ଅଜସ୍ର ମାନବେତର ଚରିତ୍ରଙ୍କୁ ନେଇ ନୂଆ ପ୍ରୟୋଗ ମଣ୍ଡିତ ହୋଇଛନ୍ତି—ପ୍ରତିମା, ଅଳକା, ମାଧବୀ, ଚନ୍ଦ୍ରମା, ହରେକୃଷ୍ଣ ଦାସଙ୍କଠୁଁ ଆରମ୍ଭ କରି ଶୁକ୍ରଦେବ ଜେନା, ଶୁକ ବଢ଼େଇ, ସୁଚେନ୍ଦୁ ଧାମଲ ଆଦି ବ୍ୟକ୍ତିଚରିତ୍ରମାନେ ଯୁଗଯନ୍ତ୍ରଣାର ପ୍ରତିନିଧିଭାବେ କଳାତ୍ମକ ରୂପ ନେଇଛନ୍ତି । ଏକ ଯନ୍ତ୍ରଣାକ୍ତ ମହାଲଣ ସ୍ୱରକୁ ପ୍ରକାଶ କରୁଥିବା ଏଇ କବିତାମାନଙ୍କରେ

ଶବ୍ଦ ପ୍ରୟୋଗ, ଚମତ୍କାର ବିନ୍ୟାସରେ ସ୍ୱାଗତ କରାଯାଇପାରେ । କେଉଁଠି ବର୍ଣ୍ଣନାତ୍ମକ ଓ କେଉଁଠି ସମ୍ବୋଧନାତ୍ମକ ଭଙ୍ଗୀ—ଶ୍ଳେଷ ଓ କାରୁଣ୍ୟ ଜର୍ଜରିତ । ପ୍ରତୀକାତ୍ମକ ପଦପ୍ରକାଶ ତଥା ବ୍ୟଙ୍ଗବିଦ୍ରୂପର ପ୍ରୟୋଗ ନିମିତ୍ତ ବିଶେଷତଃ ପଶୁପକ୍ଷୀ, କୀଟପତଙ୍ଗ ଆଧୁନିକ କବିତା ପାଇଁ ରୂପକ ପାଲଟିଛନ୍ତି; ଫଳରେ ବକ୍ତବ୍ୟ ଓ ଚରିତ୍ର ଅନୁରୂପ ଭାଷାର ପ୍ରୟୋଗ ହୋଇଛି । ଏଗୁଡ଼ିକୁ କବିତାମାନଙ୍କୁ ଏକତ୍ର ସଂକଳନଭୁକ୍ତ କରାଯାଇପାରନ୍ତା । ଏହି କବିତାମାନଙ୍କର ଭଙ୍ଗୀ ଅନେକାଂଶ ସମ୍ବୋଧନାତ୍ମକ ।

ଆଧୁନିକ କବିତା ଯେହେତୁ ପ୍ରାୟତଃ ଗଦ୍ୟଛନ୍ଦର ସେଇହେତୁ ତା' ଆବୃତ୍ତି ଉପଯୋଗୀ ହେବା ବଡ଼ କଥା । ମୋର କାହିଁକି ମନେହୁଏ ଯେ ଭାଷା ପ୍ରୟୋଗ ଏପରି ସ୍ତରକୁ ଯାଉଛି ଯେଉଁଠି କବିତାକୁ ଆବୃତ୍ତି କରି ପଢ଼ିବାର ଆବଶ୍ୟକତା ସୃଷ୍ଟି ହୁଏ ନାହିଁ, ଦୃଷ୍ଟି ପହଁରିଯାଇ କବିତାର ଅଭିବ୍ୟକ୍ତିକୁ ଧରିନିଏ । ନାୟିକା ଓ ପତ୍ନୀ ଆଶ୍ରିତ ମାନସିକତାର କବିତାରେ ଭାଷା ତଥାକଥିତ ରୋମାଣ୍ଟିକ ହୋଇ ରହୁ ନାହିଁ, ତହିଁରେ ବିପନ୍ନ ବା ବିରକ୍ତ ଆକୁଳତାର ଭାଷା ଶୁଭୁ ନାହିଁ । ସେ ସ୍ୱର ବଡ଼ ନୀରବିତ । ରମାକାନ୍ତ ରଥଙ୍କ 'ସପ୍ତମ ଅନ୍ଧାର'ର 'ତୁମେ' ଏବଂ 'ଶ୍ରୀରାଧା' ଏହାର ଉଦାହରଣ । ଅବଶ୍ୟ 'ଶ୍ରୀରାଧା'ର ବକ୍ତବ୍ୟ ଓ ଉପସ୍ଥାପନା ଅନେକ ଭିନ୍ନ । ସୌଭାଗ୍ୟ ବାରିକଙ୍କ 'ଆକାଶ ପରି ନିବିଡ଼' (୧୯୮୫)ର ଅଧିକାଂଶ କବିତା ଏବଂ କମଲାକାନ୍ତ ଲେଙ୍କାଙ୍କ 'ଚିତା ଅଙ୍କା କାନ୍ଥ ଓ ବାହାରେ ଅପେକ୍ଷାରତ ପୃଥିବୀ' (୧୯୮୭) ସଂକଳନର କେତେକ କବିତା ଏକ ପ୍ରକାର କୋମଳ ଭାଷା ବହନ କରିଛନ୍ତି ।

ପ୍ରୟୋଗବାଦୀ ଓଡ଼ିଆ କବିତାରେ ବ୍ୟଙ୍ଗବିଦ୍ରୂପର ପ୍ରୟୋଗରେ ଯେଉଁ ସମାଜ ସଚେତନଭିତ୍ତିକ କବିତା ପରିଲକ୍ଷିତ ହୋଇଥିଲା (ଗୋଦାବରୀଶ ମହାପାତ୍ରଙ୍କ 'ଶାଗୁଣା'; 'ପେଗୁ' 'ବିଲୁଆ' ପ୍ରଭୃତି), ସେଇ ପରମ୍ପରାର ଖୁବ୍ ବିକାଶ ଘଟି ନାହିଁ । ଗୋଦାବରୀଶଙ୍କର ଏଇ ପର୍ଯ୍ୟାୟର ଅନେକ ଲଘୁ ମନୋରଞ୍ଜକ ଅଥଚ ଶାଣିତ ବିଦ୍ରୂପପୂର୍ଣ୍ଣ କବିତା ରହିଛି ଯା'ର ପରବର୍ତ୍ତୀ ବିକାଶ ଘଟି ନାହିଁ । ଏ ଧାରାଟି ସମୃଦ୍ଧ ହେଲେ ଆଧୁନିକ ଓଡ଼ିଆ କବିତାର ଭାଷା ନୂଆ ମୋଡ଼ ପାଆନ୍ତା । ଏ କ୍ଷେତ୍ରରେ ବ୍ରଜନାଥ ରଥଙ୍କ ପ୍ରକାଶୋନ୍ମୁଖୀ 'ଲଘୁଶତକ'ର ପ୍ରୟୋଗ ବୈଚିତ୍ର୍ୟ ସ୍ୱାଗତଯୋଗ୍ୟ । ଗୋଟିଏ ଉଦାହରଣ :

ସିଂହର ଶିଶୁ ଆମେ

କିଏ କରିବ ସନ୍ଧି

ହାତେ ଧରି ବନ୍ଧୁକ

ପଢ଼ୁ ଗୁରୁ ଗ୍ରନ୍ଥ ।

ଧର୍ମକୁ ଆଖି ଠାରି

ଗୁରୁ ନାମ ଜପ କରି

ତାଜା ନର ରକ୍ତରେ

ପଖାଉଛନ୍ତି ଦାନ୍ତ

ଶାନ୍ତ ଶାନ୍ତ ଲୋକ ମାରି

ବୋଲାଉଛନ୍ତି ସନ୍ଥ । (ସନ୍ଥ)

କିଛି କିଛି ଲଘୁ ବ୍ୟଙ୍ଗକବିତା ('ଡଗର' ପତ୍ରିକାରେ ବିଶେଷଭାବେ ପ୍ରକାଶିତ) ଲେଖାଯାଉଥିଲେ ମଧ୍ୟ ଏ ଦିଗରେ କୌଣସି ବିଶେଷ ପ୍ରଚେଷ୍ଟା ପରିଲକ୍ଷିତ ହୁଏ ନାହିଁ । ଉତ୍ତରସବୁଜର ଓଡ଼ିଆ କବିତାର ଭାଷାକୁ ଲୋକମୁଖୀ ଓ ଗୀତଧର୍ମୀ କରିବା ପାଇଁ 'ଅନାମ' ଗୋଷ୍ଠୀର କବିମାନେ ପଦକ୍ଷେପ ନେଇଥିଲେ । ତାହା ଚିରକାଳ ଓ ପ୍ରଭାବ ନିର୍ଭର ନଥିଲା । ତାହା ବିକଶିତ ହୋଇପାରି ନାହିଁ । ସମକାଳୀନ କବିମାନଙ୍କ ଭିତରେ ଅମରେଶ ପଟ୍ଟନାୟକ ଓ ରାଜେନ୍ଦ୍ର କିଶୋର ପଣ୍ଡାଙ୍କ କବିତାରେ ଗଦ୍ୟଶୈଳୀର ପରୀକ୍ଷାନିରୀକ୍ଷା ଅବ୍ୟାହତ ରହିଛି । ଅମରେଶ ଶବ୍ଦର ବୈପରୀତ୍ୟ ବ୍ୟବହାରରେ ଭଙ୍ଗୀ ଚମତ୍କାରିତା ପ୍ରଦର୍ଶନ କରି ଗଦ୍ୟରେ ଗୀତଧର୍ମୀତାର ପ୍ରୟୋଗ କରୁଛନ୍ତି । ରାଜେନ୍ଦ୍ର ଅପ୍ରଚଳିତ ଅନେକ ଶବ୍ଦ ବ୍ୟବହାର କରି ଧ୍ୱନିଦ୍ୱାରା କବିତାର ଆବେଦନ ସୃଷ୍ଟି ପାଇଁ ଯତ୍ନ କରୁଛନ୍ତି । ଏବର କବିତାରେ କେଉଁ କେଉଁ ନୂଆପ୍ରକାର ଶବ୍ଦ ଯୋଜନାରେ ଛନ୍ଦକବିତା ଲେଖୁଛନ୍ତି ।

ଏ ପ୍ରବନ୍ଧର ପରିସର ଭିତରେ ବିଭିନ୍ନ କବିଙ୍କର ବ୍ୟକ୍ତିଗତ ପ୍ରକାଶଭଙ୍ଗୀ ଓ ତା'ର ବିକାଶ ବିବର୍ତ୍ତିକୁ ଚିହ୍ନିତ କରିବାର ଅବକାଶ ନାହିଁ; କିନ୍ତୁ ଉତ୍ତର-ସ୍ୱାଧୀନତା-କାଳର ନୂତନ ପିଢ଼ିର କବିମାନଙ୍କର ଯେଉଁ ପରୀକ୍ଷା ବା ପ୍ରଚେଷ୍ଟା ପରିଲକ୍ଷିତ ହେଉଛି ତାହା ଦର୍ଶାଇବା ସମ୍ଭବ ହୋଇ ନାହିଁ । ଉପସଂହାରରେ କୁହାଯାଇପାରେ ଯେ ଆଧୁନିକ ଓଡ଼ିଆ କବିତାର ଭାଷାଶୈଳୀ ନୂତନତା ନାଁରେ ତଥାକଥିତ ଅପ୍ରତ୍ୟାଶିତ କିଛି ନୂତନତାକୁ ଆରୋପ କରି ବସି ନାହିଁ; ବରଂ ତା'ର କାବ୍ୟପରମ୍ପରାକୁ ଯଥିମାନ ନୂଆ ନୂଆ ନିର୍ମାଣ କରି ଚାଲିଛି । ଗଭୀର ଚିନ୍ତନ ଓ ଅନ୍ୱେଷାବୋଧରେ ତା'ର ଭାଷାଶୈଳୀ ଅଧିକ କୋମଳ ଓ ଆନ୍ତରିକ ହୋଇଛି ।

(୧୯୮୮) ମସିହା ଜାନୁୟାରି ୩୧ରେ ଓଡ଼ିଶା ସାହିତ୍ୟ ଏକାଡ଼େମୀ ଆନୁକୂଲ୍ୟରେ ଅନୁଗୁଳଠାରେ ଅନୁଷ୍ଠିତ ଆଧୁନିକ କବିତା 'ଗତି ଓ ପ୍ରବୃତ୍ତି' ଶୀର୍ଷକ ଆଲୋଚନା ଚକ୍ରରେ ପଠିତ ଓ ଆଲୋଚିତ)



# କ୍ରୌଂଚର କାରୁଣ୍ୟଠୁଁ କର୍କି-ପ୍ରଜାପତିର ଡେଣାଯାଏ

( ସାଂପ୍ରତିକ କବିତାରେ ମାନବେତର ଚରିତ୍ର ପ୍ରସଙ୍ଗ )

ଏକ :

କ୍ରୌଂଚର କାରୁଣ୍ୟରୁ ଝରିଥିବା ଶ୍ଲୋକ ମହାକବି ବାଲ୍ମୀକିଙ୍କୁ ଭାରତୀୟ ପୁରାଣ ସାହିତ୍ୟର ଆଦ୍ୟସ୍ରଷ୍ଟା ଭାବେ ସ୍ମରଣୀୟ ଓ ବରଣୀୟ କରିଛି । ତତ୍ପରବର୍ତ୍ତୀ କାଳରେ କାବ୍ୟ-ସାହିତ୍ୟ ତଥା ଗଦ୍ୟ-ସାହିତ୍ୟରେ ମାନବେତର ଚରିତ୍ରମାନଙ୍କର ପ୍ରୟୋଗ ଏବଂ ତା'ର ବହୁ ରୂପାନ୍ତର ଘଟିସାରିଲାଣି । ମାନବେତର ବସ୍ତୁସକଳ ଭାବେ ଘର, ବୃକ୍ଷ, ପୋଲ, ଡଙ୍ଗା ଇତ୍ୟାଦି କବିତାରେ ଚରିତ୍ରାୟିତ ହୋଇଛନ୍ତି; ଏଠାରେ ମାନବେତର ଚରିତ୍ର ପରିପ୍ରେକ୍ଷୀରେ ସାଂପ୍ରତିକ ଓଡ଼ିଆ କବିତାରେ ପଶୁପକ୍ଷୀ ପତଙ୍ଗ ଇତ୍ୟାଦିର ପ୍ରତୀକୀକରଣ ଓ ପ୍ରାସଙ୍ଗିକତାର ସ୍ୱରୂପ ସମ୍ପର୍କରେ ଅବତାରଣା କରାଯାଉଛି । ମାନବେତର ଚରିତ୍ରଭିତ୍ତିକ ଆମ କ୍ଷୁଦ୍ରଗଳ୍ପ ବିଶ୍ୱବନ୍ଦି ବେଶ୍ ସମୃଦ୍ଧ ଓ ପ୍ରାଣବନ୍ତ । ପ୍ରାଚୀନ ଲୋକସାହିତ୍ୟ (କଥା ଓ ଗୀତ)ରେ ଏଇ ମାନବେତର ଚରିତ୍ରମାନେ ଏକାନ୍ତ ପରିଦୃଷ୍ଟ । ଏମାନଙ୍କର ପ୍ରତୀକମୂଲ୍ୟ ଅପରିହାର୍ଯ୍ୟ; ତେବେ ମନୋରଞ୍ଜନ ଓ ଅଲୌକିକତାର ଉପାଦାନ, ନୀତିଉପଦେଶ ବା ନ୍ୟାୟଅନ୍ୟାୟ ବିଚାରକଳର ଦ୍ୱନ୍ଦ୍ୱାତ୍ମକ ଭାବେ ଏମାନେ ରୂପାୟିତ ହୋଇଛନ୍ତି । ଆମ କାବ୍ୟ-ସାହିତ୍ୟରେ ଏମାନଙ୍କର ପ୍ରୟୋଗ ଲୋକସାହିତ୍ୟ ପରି ସେତେ ଉଲ୍ଲେଖଯୋଗ୍ୟ ନୁହେଁ ।

ମାନବେତର ଚରିତ୍ର ସକଳ ପାରିପାର୍ଶ୍ୱିକ ବିପୁଳ ପ୍ରକୃତିର ଗୁରୁତ୍ୱପୂର୍ଣ୍ଣ ଦାନ । ପୃଥିବୀର କୋଣ ଅନୁକୋଣରେ ଏମାନଙ୍କର ବସତି ଓ ବିଚରଣ । ବ୍ୟକ୍ତି ମଣିଷର ଜୀବନ ଧାରା ସହ କେତେକ ଓତପ୍ରୋତ ଭାବେ ଜଡ଼ିତ । ସାହିତ୍ୟ ସର୍ଜନାରେ ଏମାନେ ସ୍ଥାନିତ ହେବା ଖୁବ୍ ସ୍ୱାଭାବିକ । ମାନବେତର ଚରିତ୍ରମାନଙ୍କୁ ବହୁ କାରଣରୁ ସାହିତ୍ୟରେ ପ୍ରୟୋଗ କରାଯାଇଥାଏ । ପ୍ରଥମତଃ ଏଇ ମାନବେତର ଜଗତର ବିଚିତ୍ର ଜୀବନ ଯାତ୍ରା ଓ ଆଚରଣରେ ଚିତ୍ର, ଦ୍ୱିତୀୟତଃ ଏମାନଙ୍କ ପ୍ରତି ମନୁଷ୍ୟର ଶ୍ରଦ୍ଧା ଓ ସମ୍ବେଦନା ଏବଂ ସ୍ଥଳବିଶେଷରେ ଉପେକ୍ଷା ଓ ଅବହେଳାର ଚିତ୍ର ପ୍ରଦାନ । ତୃତୀୟତଃ ଏମାନେ ପ୍ରତୀକାତ୍ମକ ଭାବେ ଆମ ସମାଜ ବା ବ୍ୟକ୍ତିସତ୍ତାର ପ୍ରତିନିଧିତ୍ୱ କରନ୍ତି । ଏଇ ବିଶେଷତ୍ୱଗୁଡ଼ିକ ବିଶେଷତଃ କ୍ଷୁଦ୍ରଗଳ୍ପମାନଙ୍କରେ ଅଭିବ୍ୟଞ୍ଜିତ ହୋଇଥାଏ । ଏ ପରିପ୍ରେକ୍ଷୀରେ କବିତା

ପ୍ରତୀକ-ମୂଲ୍ୟକୁ ଅଧିକ ଗୁରୁତ୍ୱ ଦେଇଥାଏ । ମାନବେତର ଚରିତ୍ରରୁ ଅନେକେ ଆମ ପରମ୍ପରା ଓ ଲୋକବିଶ୍ୱାସର ସାମଗ୍ରୀ ହୋଇଥିବାରୁ ପରମ୍ପରା ଦାୟରେ କବିତାରେ ପ୍ରୟୋଗ ଗୌରବ ପାଇଥାନ୍ତି । ପୁନଶ୍ଚ ପରମ୍ପରା-ମାନ୍ୟତା ନ୍ୟାୟରେ ଏମାନଙ୍କର ପ୍ରସଙ୍ଗୋଚିତ ନବୀକରଣ ମଧ୍ୟ ହୋଇଥାଏ । ସଖାଦର୍ଶୀ ଭାବରେ ଏମାନେ କବିତାରେ ଭାବପ୍ରକାଶର ସହାୟକ ହୋଇଥାନ୍ତି । କବିତାରେ ଉପମା, ରୂପକ ପ୍ରୟୋଗ କାଳରେ ଏମାନେ ମାନବୀୟ ପ୍ରବୃତ୍ତିର ପ୍ରତୀକ ହୋଇ ବେଳେବେଳେ ବିଶେଷଣ ଭାବେ ବ୍ୟବହୃତ ହୁଅନ୍ତି । ମୋଟାମୋଟି ଭାବେ ଏମାନେ କବିତାରେ ପରମ୍ପରାର ସାମଗ୍ରୀ ଓ ବ୍ୟକ୍ତିସତ୍ତାର ପ୍ରତୀକାତ୍ମକ ଚିତ୍ରଲିପି ।

ସାଂପ୍ରତିକ କବି ମାନବେତର ଚରିତ୍ରର କାରୁଣ୍ୟ ନେଇ ହୁଏତ ବ୍ୟଥିତ ହୁଏ; ତା' ଅନ୍ତରାଳରେ ଥାଏ ମାନବିକ କାରୁଣ୍ୟ । ଆମ ଓଡ଼ିଆ କବିତାରେ କବି ରାଧାମୋହନ ଗଡ଼ନାୟକ ପୁରାଣ ଓ ଇତିହାସର ମାନବେତର ଚରିତ୍ର (ବାଘ, ସିଂହ, ଅଶ୍ୱ, ହସ୍ତୀ, ଗୃଧ୍ର, ଗାଭୀ, କ୍ରୌଂଚ, କପୋତ, ଇଗଲ, ବୁଲ୍‌ବୁଲ୍, ହଂସ ଇତ୍ୟାଦି) ମାନଙ୍କୁ 'ପଶୁପକ୍ଷୀର କାବ୍ୟ' (୧୯୫୯) କବିତା ଗ୍ରନ୍ଥରେ ରୂପ ଦେଇଛନ୍ତି । ଓଡ଼ିଆ କବିତା କ୍ଷେତ୍ରରେ ଏହା ସମ୍ପୂର୍ଣ୍ଣ ନୂତନ ସଂଯୋଜନା । ଏଗୁଡ଼ିକ ମୁଖ୍ୟତଃ ଗଡ଼ନାୟକୀୟ ଶ୍ଲେଷସିକତା ସହ ସେହି ଚରିତ୍ରମାନଙ୍କ ମହତ୍ତ୍ୱକୁ କେନ୍ଦ୍ରକରି ଘଟିଥିବା ନିର୍ଦ୍ଦିଷ୍ଟ ଘଟଣା ବା କାହାଣୀର କବିତାୟନ । ଆମ ଆଲୋଚନାର ପରିସରରୁ ଏହାକୁ ବାଦ ଦେଉଛୁ । ସାଂପ୍ରତିକ ଓଡ଼ିଆ କବିତାରେ ମାନବେତର ଚରିତ୍ରମାନେ କିପରି ଭାବେ ପ୍ରତୀକାୟିତ ଓ ପ୍ରସଙ୍ଗାୟିତ ହୋଇଛନ୍ତି ତାହା ବିଭିନ୍ନ ଉଦାହରଣ ଜରିଆରେ ଦର୍ଶାଇଦେବା ଏ ଆଲୋଚନାଟିର ଉଦ୍ଦେଶ୍ୟ । ମୋଟାମୋଟି ଭାବେ ପ୍ରାଣୀ-ପ୍ରତୀକ ଓ ପ୍ରାଣୀ-ରୂପକର ସ୍ୱରୂପ ସନ୍ଧାନ ।

## ଦୁଇ :

ପ୍ରାଚୀନ କବିତାରେ ହଂସ (୧) ଓ ପାରା (୨) ଅତି ପରିଚିତ ପକ୍ଷୀ-ପ୍ରତୀକ ଭାବେ ବ୍ୟବହୃତ । ଏଇ ପକ୍ଷୀଦ୍ୱୟ ବ୍ୟକ୍ତିର ମନ, ହୃଦୟ ବା 'ଆତ୍ମା' ଅର୍ଥରେ ପ୍ରୟୋଗ ମୂଲ୍ୟ ପାଇଛନ୍ତି । ବିଶେଷତଃ ହଂସ-ପ୍ରତୀକଟି ଆଧୁନିକ ସାହିତ୍ୟରେ ବହୁ ଜାଗାରେ ବ୍ୟବହୃତ । ପୁନଶ୍ଚ କୋଇଲିକୁ ନେଇ ଏକ ସ୍ୱୟଂବଦ୍ଧ 'କୋଇଲି ସାହିତ୍ୟ' ସୃଷ୍ଟି ହୋଇଛି । (୩) କୋଇଲି ବିଷାଦ-ବିଚ୍ଛେଦର ସାକ୍ଷୀ—ପ୍ରାଚୀନ ସାହିତ୍ୟରେ ତତ୍ତ୍ୱଗତ ମୂଲ୍ୟ

(୧) ବାଇମନ ହୋ, ବସି ହଂସକୁ ଖେଳା ଇତ୍ୟାଦି ।

(୨) ଓଲଟ ବୃକ୍ଷେ ଖେଳୁଛି ଲୋଟଣି ପାରା । ଅଠାକାଠି ପଞ୍ଜୁରିରେ ନ ପଡ଼େ ଧରା ।।

(୩) କେଶବ କୋଇଲି, ଅର୍ଥ କୋଇଲି, ବାରମାସୀ କୋଇଲି ଇତ୍ୟାଦି ।

ମଧ୍ୟ ପାଇଛି । ପ୍ରତିଷ୍ଠିତ ଓ ପରବର୍ତ୍ତୀ ଯେକୌଣସି ଓଡ଼ିଆ କବିଙ୍କ କବିତାରେ ପକ୍ଷୀଙ୍କ ସମାବେଶ ଅବଶ୍ୟ ପରିଲକ୍ଷିତ ହେବ । ଭିନ୍ନ ଭିନ୍ନ ଅର୍ଥ ଉଦ୍ଦେଶ୍ୟ ନେଇ ଏଗୁଡ଼ିକର ପ୍ରୟୋଗ । ଆମେ ଏଠାରେ ପ୍ରାୟ ସମଧର୍ମ ସୂଚକ କେତୋଟି ସିଧାସଳଖ ପ୍ରୟୋଗକୁ ଉଦ୍ଧାର କରୁଛୁ ।

ଯାଆରେ ଚଢ଼େଇ ଯା
ତିନିଟି କୁଟାରେ
ତିଆରି ବସାକୁ ଉଡ଼ି
ଗନ୍ତବ୍ୟ ଶୂନ୍ୟ ଆକାଶରେ ।
ସୂର୍ଯ୍ୟ ଚନ୍ଦ୍ର ହୁଅନ୍ତୁ ତୋ'
କାନର ଝୁମ୍ପା
ନିଷ୍ଫଳ ପବନେ ଉଡ଼ୁ
ତୋ' ଉଡ଼ନ୍ତା ନାଆର ପତାକା ।

(ଆତ୍ମୀୟତାର ତିନୋଟି ପର୍ଯ୍ୟାୟ : ସଚିତ୍ର ଅନ୍ଧାର : ରମାକାନ୍ତ ରଥ)

ଚଢ଼େଇରେ ଚଢ଼େଇ ତୁ ଫେରିଆ ।।
ତୁ ଯେ ଆକାଶକୁ ଚିହ୍ନିନୁ
ପବନକୁ ଚିହ୍ନିନୁ
ତୁ ଯେ କ୍ଳାନ୍ତ ହୋଇ ହାରିବୁଣି ଫେରିଆ ।।
ରକ୍ତ ଚୋସିବ ପବନର ଚେଣ୍ଟା ମାଡ଼ରେ
ଆକାଶରେ କୋଉଠି ମୁଣ୍ଡ ଗୁଞ୍ଜିବୁ ଚଢ଼େଇ × × ×

(ଚଢ଼େଇ ୧ : ଆରଦୃଶ୍ୟ : ସୀତାକାନ୍ତ ମହାପାତ୍ର)

କ'ଣ ଝରିକୂଳରେ ପକ୍ଷୀ ଦେଇ ଲାଗି ଅବସନ୍ନ ଡେଣା ଉହାଡ଼ରେ
କ'ଣ ତୋ' କୁଟୁମ୍ବ ତଳେ ଗୁଡ଼ିଗଲେ—
ନା, ତୁ ହୁଡ଼ିକୁ ବାଟ ନକାଞ୍ଚନ ଦୂରତ୍ୱ ହାତରେ × × ×

(ନିମନ୍ତ୍ରଣ : ସପ୍ତମ ପୃଥିବୀ : ଦୀପକ ମିଶ୍ର)

କାବ୍ୟ ପୁରୁଷର ଆନ୍ତରିକତାପୂର୍ଣ୍ଣ ସମ୍ବୋଧନକୁ ଲକ୍ଷ୍ୟ କରନ୍ତୁ । ପକ୍ଷୀମାନେ ନିର୍ଦ୍ଦିଷ୍ଟ ନାମବିଶେଷର ନୁହନ୍ତି । ଏଠାରେ କାବ୍ୟ ପୁରୁଷର ହୃଦୟ ବା ଆତ୍ମା ଭାବେ ତଥା ବିଷାଦଗ୍ରସ୍ତ ବ୍ୟକ୍ତିସତ୍ତ୍ୱଭାବେ ଏମାନଙ୍କର ପ୍ରୟୋଗ । ପ୍ରାଣୀ-ଜଗତ ପ୍ରତି ଏପ୍ରକାର ସିଧାସଳଖ ଆନ୍ତରିକ ସମ୍ବୋଧନ ପ୍ରାଚୀନ କବିତାରେ ଲକ୍ଷିତ ହୁଏ ନାହିଁ । ଆଧୁନିକ

କବିତାର ଏହା ଏକ ଲକ୍ଷିତ ଭଙ୍ଗୀ । କାବ୍ୟପୁରୁଷର ଭାଷାରେ ବିଷାଦ ଓ ମାନବିକ ସହୃଦୟତା ପରିସ୍ଫୁଟିତ । ଏଇ ଆନ୍ତରିକତା କବିତାକୁ ବୋଧଗମ୍ୟତା, ଗତି ଓ ସ୍ପର୍ଶକାତରତା ଦେଇଛି । ବ୍ୟକ୍ତିଗତ ଆତ୍ମାର କାରୁଣ୍ୟ ସହିତ ଏହା ହୃଦୟ ସ୍ପନ୍ଦ ପରିବେଷଣ କରିଛି । କେବଳ ମନୁଷ୍ୟକୁ ସିଧା ସମ୍ବୋଧନ କରିବା କବିତା ପାଇଁ ଯଥେଷ୍ଟ ହୁଏନ୍ତା ନାହିଁ ଏବଂ କବିତା ଖାଲି ଉପଦେଶାତ୍ମ ବା ଆବେଦନପୂର୍ଣ୍ଣ ହୁଏନ୍ତା ନାହିଁ । କବିତା-ଟିର ସାମଗ୍ରିକ ଭାବେ ଅଧ୍ୟୟନ କରାଯାଇପାରେ । ଏଠାରେ ପ୍ରତୀକ-ମୂଲ୍ୟ ଏକାନ୍ତ ଉଲ୍ଲେଖଯୋଗ୍ୟ ।

ଆମର କବିଏ ପ୍ରାଣୀ-ପ୍ରତୀକ ପ୍ରୟୋଗରେ କବିତା ସଙ୍କଳନର ନାମକରଣ କରିଛନ୍ତି । କମଳାକାନ୍ତ ଲେଙ୍କାଙ୍କ 'ଗୀତ ଗା'ନାରେ ପକ୍ଷୀ' କିମ୍ବା ଡଃ ପ୍ରସନ୍ନ କୁମାର ମିଶ୍ରଙ୍କ 'ଆ ପକ୍ଷୀ ଫେରିଆ'ର କାବ୍ୟ ଆଭିମୁଖ୍ୟ ଏ ପରିପ୍ରେକ୍ଷୀରେ ସ୍ୱତନ୍ତ୍ର । ସମ୍ବୋଧନ-ଗତ ଆନ୍ତରିକତାକୁ ଦେଖନ୍ତୁ । ସୌଭାଗ୍ୟ କୁମାର ମିଶ୍ର ସଦ୍ୟ ପ୍ରକାଶିତ ଷଷ୍ଠ କାବ୍ୟ ଗ୍ରନ୍ଥର ନାଁ 'ଦ୍ୱାସୁପର୍ଣ୍ଣା' (୧୯୮୫) । ଏଇ ନାମକରଣର ସୂଚନା ଦେବା ଅବକାଶରେ ବେଦାନ୍ତର ତତ୍ତ୍ୱଦର୍ଶୀଙ୍କ ଶ୍ଳୋକ ଉଦ୍ଧାର ସହିତ ପ୍ରଚ୍ଛଦ ଚିତ୍ରରେ ତା'ର ତାତ୍ପର୍ଯ୍ୟର ଚିତ୍ରରୂପ ମଧ୍ୟ ଅବତାରଣା କରାଯାଇଛି । ବୃକ୍ଷ ଡାଳରେ ପକ୍ଷୀଟିଏ ଫଳ ଭକ୍ଷଣ କରୁଛି ଏବଂ ଅନ୍ୟ ଏକ ପକ୍ଷୀ ନୀରବ ସନାତନ ସାକ୍ଷୀ ଭାବରେ ରହିଛି । ଗୋଟିଏ ପକ୍ଷୀ ଏଠାରେ ମାୟାର ପ୍ରତୀକ ଏବଂ ଅନ୍ୟଟି ନିର୍ଲିପ୍ତଦ୍ରଷ୍ଟା ଭାବେ ମାୟାମୁକ୍ତ ଆତ୍ମାର ପ୍ରତୀକ । ଶ୍ରୀ ମିଶ୍ରଙ୍କ ସମଗ୍ର ଗ୍ରନ୍ଥଟିରେ ଏଇ ସୂଚନାଟି କିପରି ଆଭିମୁଖ୍ୟାନ୍ୱିତ ହୋଇଛି ତାହା ଅନୁସନ୍ଧାନ କରାଯାଇପାରେ ।

ମୃତ୍ୟୁଚେତନାର ଦୁଇଟି ଅମଙ୍ଗଳମୟ ବା ଅଶୁଭ ପ୍ରତୀକ ରୂପେ ପୁରାଣ ଓ ପ୍ରାଚୀନ କାବ୍ୟ ସାହିତ୍ୟ ଏବଂ ଲୋକବିଶ୍ୱାସରେ ଶାଗୁଣା ଓ ପେଚା—ଏ ଦୁଇ ପକ୍ଷୀ ବହୁ ଭାବରେ ବ୍ୟବହୃତ । ମଇଁଷି ମଧ୍ୟ ମୃତ୍ୟୁଚେତନାର ପ୍ରତୀକ (ଏ ପ୍ରସଙ୍ଗ ପରେ ଆଲୋଚିତ ହୋଇଛି) । ବେଶୀ ଦୂରକୁ ନଯାଇ ଭକ୍ତଚରଣଙ୍କ 'ମଥୁରାମଙ୍ଗଳ'ରୁ କଂସର ଦୁଃସ୍ୱପ୍ନ ବୃତ୍ତାନ୍ତଟିର ଦୃଶ୍ୟଟି ଉଲ୍ଲେଖ କରାଯାଇପାରେ ।

ଯାହାଁ ମାରଇ ନିଃଶ୍ୱାସ ପ୍ରଖର । ସପନରେ ଦେଖାଇ ନିଜ ଶିର ।।
ଶଙ୍ଖ ଶବଦ ନିଃଶ୍ୱାସ ପବନ । କରେ ଦକ୍ଷିଣ ଦିଗକୁ ଗମନ ।।
କଣ୍ଠେ ମନ୍ଦାର ମାଳ ବିଭୂଷଣ । କରି ମଇଁଷି ଯାନ ଆରୋହଣ ।।
ଚର୍ମ ଦେଶରେ ପଡ଼ିଛି କବରୀ । ଫିଟି ପବନେ ଉଡ଼େ କେଶ କେଶ ।।
ଗୃହଦିଗେ ଶୃଗାଳ ଶ୍ୱାନ ପେଚା । ଗୃଧ୍ର ଅହିମଣ୍ଡଳି ଧ୍ୱନି ଉଚ୍ଚ ।।
ତ୍ରାଣ ନ ରହିଲ ଯେଉଁ ସ୍ୱପନେ । କଂସ ଦେଖିଲା ତା' ବେନି ନୟନେ ।।

ସାଂପ୍ରତିକ କବିତାରେ ଏଇ ପ୍ରତୀକଦ୍ୱୟ କେଉଁଠି ପରମ୍ପରାକୁ ଗ୍ରହଣ କରିଛି ତ କେଉଁଠି ଏହାକୁ ଗ୍ରହଣ କରି ମଧ୍ୟ ବକ୍ତବ୍ୟରେ ବିରୋଧାଭାସ ରହିଛି । ପୁନଶ୍ଚ କେତେ-ବେଳେ ଏହା ବ୍ୟକ୍ତିଗତ ପ୍ରତୀକ ରୂପ ପରିଗ୍ରହଣ କରିଛି । ଗୋଦାବରୀଶ ମହାପାତ୍ରଙ୍କ 'ଶାଗୁଣା' ଓ 'ପେଚା' କବିତା ଦୁଇଟିକୁ ବିଚାର ପାଇଁ ଗ୍ରହଣ କରନ୍ତୁ । ଏଠାରେ ସମ୍ପୂର୍ଣ୍ଣ ଭାବେ ବ୍ୟକ୍ତିଗତ ଦୃଷ୍ଟିକୋଣରୁ ପ୍ରତୀକର ପ୍ରୟୋଗ । ଆବେଦନଟି ସାର୍ବଜନୀନ । ଆଭିମୁଖ୍ୟଗତ ଦୃଷ୍ଟିକୋଣରୁ ଏପ୍ରକାର ସଂଯୋଜନା ବେଶ୍ ଚମକପ୍ରଦ । ଦୁଇଟି ପଂକ୍ତି ଉଦ୍ଧାର କରିବା—

ତୁମ ଅବତାର ଆଜି ପରିଗ୍ରହି ଏକାମ୍ର ମଣ୍ଡଳେ
ମାଇଚାଙ୍ଗା, ସଞ୍ଜୟବାଦୀ, ଶ୍ରେଣୀବଦ୍ଧ ନରଗୃଧ୍ରଦଳେ
ବ୍ୟସ୍ତ, ବୁଭୁକ୍ଷୁ ନାମେ କରୁଛନ୍ତି ମହା କୋଳାହଳ
ତୁମ ଆଗମନ ପାଇଁ ହଫାକରି ବିରାଟ ଉତ୍କଳ । × × ×

(ଶାଗୁଣା : କଣ୍ଟା ଓ ଫୁଲ)

କବିଙ୍କ ସ୍ୱଦେଶ ଭାବନା ଓ ବ୍ୟଙ୍ଗବିଦ୍ରୂପ ଆଶ୍ରିତ ସମାଜସଚେତନତାର ପ୍ରତିଫଳନ ସହିତ ଶୋଷଣ ଓ ଅତ୍ୟାଚାରର ଚିତ୍ର ଏ କବିତାରେ ପ୍ରକାଶ ପାଇଛି । ଶାଗୁଣାର ପ୍ରତୀକ ରୂପକୁ ଲକ୍ଷ୍ୟ କରନ୍ତୁ ।

ମାନବ ଭଜିବ ପେଚା, ପେଚାମୟ ଆଜି ଏ ସମାଜ × × ×
ତୁମକୁ ମଣେ ମୁଁ ମନ୍ତ୍ରୀ, ତୁମେ ଏବେ ଏ ଦେଶ ପାଳକ
ମୃତ୍ୟୁ ପଥେ ନେବାପାଇଁ ତୁମେ କବେ ହୋଇବ ଚାଳକ ? × × ×

(ପେଚା : କଣ୍ଟା ଓ ଫୁଲ)

ଶାଗୁଣା ପରି ଏ କବିତାଟି ସ୍ପଷ୍ଟ ପ୍ରକାଶ୍ୟ ସମାଜ-ସଚେତନ କବିତା । ପେଚା ପ୍ରତୀକର ପ୍ରୟୋଗ ମୂଳ୍ୟ ଏଠାରେ ବେଶ୍ ନୂତନ ଏବଂ ବସ୍ତୁଭାବକୁ ସମ୍ପ୍ରସାରଣ କରି କବିତାକୁ କଳାତ୍ମକ ରୂପ ଦେବାରେ ଏହା ଏକାନ୍ତ ସାର୍ଥକ । ସମଗ୍ର କବିତା-ଦ୍ୱୟ ଅଧ୍ୟୟନ କରାଯାଇପାରେ ।

ରମାକାନ୍ତ ରଥଙ୍କ କବିତାରେ ପ୍ରୟୋଗ କରାଯାଇଥିବା ଶାଗୁଣା ଓ ପେଚା ପ୍ରତୀକ ଦୁଇଟି ଆମ ପରମ୍ପରାରୁ ସଂଗୃହୀତ । ମୃତ୍ୟୁ ଚେତନାର ପ୍ରତୀକ ହେଲେ ହେଁ ଏହା ଭୟ ଓ ହିଂସ୍ରତାର ସୂଚକ ନୁହେଁ । ତା'ର ବିରୋଧାଭାସ । ମୃତ୍ୟୁପ୍ରତି ଶ୍ରୀ ରଥଙ୍କ କବିତାରେ ଅଛି ସ୍ନେହ ଉଦାର ଦୃଷ୍ଟିଭଙ୍ଗୀ । ଏଣୁ ଏ ପ୍ରତୀକ ଉପସ୍ଥାପନରେ ବିରୋଧାଭାସ ସହିତ ନୂତନତ୍ୱ ମଧ୍ୟ ରହିଛି । ପରମ୍ପରାର ସାମଗ୍ରୀମାନଙ୍କର ଏହିପରି ଭାବରେ ନବୀକରଣ ହୋଇଥାଏ । ଉଦାହରଣ ଦେବା —

(କ) ଅବିଶ୍ରାମ ମୃତ୍ୟୁର ଏ ଚଳନ୍ତା, ଏଠାରେ
ନରକଙ୍କାଳର ପଣ ଦେଖାଯିବା ଲାଗି
ବଞ୍ଚିଥିବା ଲୋକମାନେ ଯତ୍ନ ସହକାରେ
ଚେଷ୍ଟା କରୁଥାନ୍ତି, ପ୍ରତ୍ୟେକ ପ୍ରଥମେ
ଶାଗୁଣାକୁ ଡର, କିଛି କାଳ ପରେ
ଅଭ୍ୟାସ ବଶତଃ କମ୍ପ ସହଜ ଭାବରେ ।
ଏଠାରେ ମରିବା କିନ୍ତୁ ବହୁତ ଆରାମ
ମୁର୍ଦ୍ଦାରଙ୍କ ଚତୁର୍ଦ୍ଦିଗେ ଅନବଚ୍ଛିନ୍ନ
ପ୍ରାକୃତିକ ସୌନ୍ଦର୍ଯ୍ୟ, ନାନାଦ ପକ୍ଷୀଙ୍କ
କାକଳିରେ ମୁଖରିତ ଗଗନ ପବନ । (ଶାଗୁଣା : ସପ୍ତମଋତୁ)

ଏଠାରେ ମଧ୍ୟ ପକ୍ଷୀର ପ୍ରୟୋଗକୁ ଲକ୍ଷ୍ୟ କରନ୍ତୁ ।

(ଖ) ଶାଗୁଣାଙ୍କୁ ଦେଇଛି ମୋ ଶରୀର, ତମକୁ
ଦେଇଛି ମୋ ସାରା ଭବିଷ୍ୟତ । (ଶରତର ସନ୍ଧ୍ୟାଟିଏ : ସତର ଅନ୍ଧାର)

(ଗ) ସାରା ସତ ହଣ ଅପେ ପେଚା କୁହାଟଇ
ବାହାନରୁ ମୁଁ ଓହ୍ଲାଇ ତାକୁ ଦେଖିବା/ଲାଗି ମୋର
ଆଖି ବୁଜିଦିଏ । (ଶରପ୍ରତିମା : ସପ୍ତମଋତୁ)

ଚନ୍ଦ୍ରାମଣି ବେହେରାଙ୍କ କବିତାରେ 'ପେଚା' ପ୍ରତୀକର ରୂପାନ୍ତର ଘଟିଛି । ତାଙ୍କର 'ପେଚା' ଶୀର୍ଷକ କବିତାରେ ତା' ସତ୍ୟଦ୍ରଷ୍ଟା ସାଧକ ଭାବେ ପ୍ରତୀକିତ । ପୃଥିବୀ ଅଚେତନ ଥିଲାବେଳେ ସେ ଜାଗ୍ରତ । ପେଚା ଏଣୁ ଅମଙ୍ଗଳ ବା ଅଶୁଭର ପ୍ରତୀକ ନହୋଇ ସତ୍ୟଦ୍ରଷ୍ଟାର ମର୍ଯ୍ୟାଦା ପାଇଛି । ଗଳ୍ପକାର ଅଚ୍ୟୁତାନନ୍ଦ ପତିଙ୍କ 'ଅଶୁଭ ପୁଚର କାହାଣୀ' ଗଳ୍ପରେ 'ପେଚା' ଅନ୍ଧକାରର ଅବହେଳିତ ଅଥଚ ଆଲୋକପିପାସୀ ଶକ୍ତିର ପ୍ରତୀକଭାବେ ଚିତ୍ରିତ । ଏଇ ଲେଖକଙ୍କ 'ପେଚା' କବିତାରେ ପେଚାକୁ ମୃତ୍ୟୁଚେତନାର ଚିରନ୍ତନ ପ୍ରତୀକରୂପେ କଳାତ୍ମକ ରୂପ ଦିଆଯାଇଛି । ଜୀବନର ବିପୁଳ ଜୟଯାତ୍ରା ନିକଟରେ ମୃତ୍ୟୁ ମ୍ଳାନ ଓ ପରାସ୍ତ । ବ୍ୟକ୍ତିର ମୃତ୍ୟୁକୁ ଅତିକ୍ରମ କରିବା ଆକାଂକ୍ଷା ଜୀବନମୟତା ସପକ୍ଷରେ ଯୁକ୍ତି ବାଢ଼େ । ପଂକ୍ତିଟି ଏହିପରି—

କିନ୍ତୁ ଏମୁଣ୍ଡର କୁଆଁ କୁଆଁ ଶବ୍ଦରେ
ସେ ଅଶୁଭକ ମଝିରେ ମଝିରେ ଚମକି ପଡ଼େ ଏବଂ
ଅତର୍କ୍କେ ଠେକା ମାଡ଼ରେ ନିଜକୁ ଲୁଚାଏ ତାଳର ଉହାଡ଼େ ।
(ପେଚା : ହୀଂଶ୍ଵାଦର ତାଳପତ୍ର)

କେବଳ ଶାଗୁଣା ଓ ପେଚା ନୁହନ୍ତି, ଚିଲ ମଧ୍ୟ ମୃତ୍ୟୁର ପ୍ରତୀକରୂପେ ଓଡ଼ିଆ କବିତାରେ ବ୍ୟବହୃତ ।

ରହ ଚିଲ ! ସକାଳ ହୋଇଲେ
ତୁ ମୁଁ ଯିବା ସାଙ୍ଗହୋଇ ।
ଚନ୍ଦନ କାଠରେ ତିଆରି ମୋର ହାଡ଼ରୁ ଗୋଟିଏ
ମୁଁ ମୁଣ୍ଡେଇବ × × × 'ପକ୍ଷୀ ସହିତ'·· (୪)

କୋଇଲି ରୋମାଣ୍ଟିକ ଭାବର ପ୍ରତୀକରୂପେ ଓଡ଼ିଆ କବିତାରେ ପ୍ରାୟତଃ ବ୍ୟବହୃତ । ଏଥିରେ ଦୁଃଖ ଓ ବିଷାଦର ଦିଗଟି ଅଧିକଭାବେ ଫୁଟିଛି । କୋଇଲି ବସନ୍ତ ଋତୁର ପ୍ରକୃତିକ ସୌନ୍ଦର୍ଯ୍ୟ, ଗ୍ରାମ୍ୟ ସୁଷମା ତଥା ଅପାସୋରା ଶୈଶବର ପ୍ରତୀକ ଭାବେ ମଧ୍ୟ ବହୁ କବିତାରେ ପ୍ରକାଶିତ । (୫) ପ୍ରସନ୍ନ କୁମାର ମିଶ୍ର 'ଦୁଃଖ କୋଇଲି' ଭିନ୍ନ ଏକାଧିକ କବିତାରେ ପ୍ରାଚୀନ କୋଇଲି ସାହିତ୍ୟକୁ ମାନ୍ୟକରି ସାଂପ୍ରତିକ ସମୟର ଦୁଃଖ ଓ ଜ୍ୱଳନକୁ ରୂପ ଦେଇଛନ୍ତି । (୬) ହଳଦୀବସନ୍ତକୁ ନେଇ ତାଙ୍କର ଶୀର୍ଷକ କବିତାଟିଏ ରହିଛି । ଶ୍ରୀ ସୌରୀନ୍ଦ୍ର ବାରିକଙ୍କର 'ହଳଦୀବସନ୍ତ' ଶୀର୍ଷକରେ ମଧ୍ୟ ସୁନ୍ଦର କବିତାଟିଏ ରହିଛି । ଉଭୟ କବିତାରେ କବିଙ୍କର ରୂପ ପ୍ରୀଣତା ଓ ମୁଗ୍ଧ ସୌନ୍ଦର୍ଯ୍ୟ ଦୃଷ୍ଟି ପରିସ୍ଫୁଟିତ । ଶ୍ରୀ ମିଶ୍ରଙ୍କ 'ହଳଦୀବସନ୍ତ'ରେ ପାର୍ଥିବ ଜଞ୍ଜାଳ ଓ ଦୁଃଖ ଭିତରେ ଏକ ଅପାର୍ଥିବ ବ୍ୟାକୁଳତା ପାଇଁ ସ୍ୱର ଶୁଭିଲାବେଳେ ଶ୍ରୀ ବାରିକଙ୍କ 'ହଳଦୀବସନ୍ତ'ରେ ଏକ ମୁଗ୍ଧ ସମାହିତ ସମ୍ବୋଧନର ଭାବକୁ ଠାବକରି ହୁଏ ।

ଏହିପରିଭାବେ ସଂଖ୍ୟାଧିକ ଓଡ଼ିଆ କବିତା ନିର୍ଦ୍ଦିଷ୍ଟ ପକ୍ଷୀବିଶେଷଙ୍କୁ ନେଇ ରୂପାନ୍ୱିତ ଓ ଭାବାନ୍ୱିତ । କହିବାକୁ ଗଲେ କଳ୍ପନାଠାରୁ ବାସ୍ତବତା, ବିଷାଦଠାରୁ ସମ୍ବୋଧନ, ରୂପଠାରୁ ଅରୂପ, ଅଶୁଭଠାରୁ କଲ୍ୟାଣ, ସ୍ନେହସଂପ୍ରୀତିଠାରୁ ଘୃଣା ଓ ବିଦ୍ରୋହ ଯାଏ ବହୁ ଭାବ ଏହି ପକ୍ଷୀ-ପ୍ରତୀକ ଭିତରେ ପ୍ରସଙ୍ଗାୟିତ । ଏସବୁ ପ୍ରୟୋଗ ନାନା ଭାବରେ ଆମ ଚିତ୍ତବୃତ୍ତିକୁ ଉଜ୍ଜୀବିତ କରନ୍ତି ।

ମାନବେତର ଚରିତ୍ର ଭିତରୁ ପ୍ରାଣୀ-ପ୍ରତୀକଭାବେ ଓଡ଼ିଆ କବିତାରେ ବାଘ, ହରିଣୀ, ମଇଁଷି ଆଦିର ବହୁଳ ବ୍ୟବହାର ପରିଲକ୍ଷିତ ହୁଏ । ମଇଁଷି ପ୍ରଥାସିଦ୍ଧଭାବେ ମୃତ୍ୟୁ ଚେତନାର ପ୍ରତୀକ । ହରିଣୀ ପ୍ରତୀକଟି ପ୍ରାୟତଃ ପରମ୍ପରା ଅନୁସରଣରେ ଆମ କବିତାରେ

---

(୪) 'ପକ୍ଷୀ ସହିତ'—ଡଃ ପ୍ରସନ୍ନ କୁମାର ମିଶ୍ର—ଇସ୍ତାହାର-୧୧, ୧୯୮୦

(୫) 'କୋଇଲି ଲୋ'—ପ୍ରମୋଦ କୁମାର ମହାନ୍ତି, ଦେଶ୍ରୀପାଦ ସଙ୍କଳନ

(୬) ସାଂପ୍ରତିକ ଓଡ଼ିଆ କବିତାର ପରମ୍ପରାମାନ୍ୟତା ଏକ : ସୂଚନା, ଇସ୍ତାହାର-୧୭ ଦ୍ରଷ୍ଟବ୍ୟ

ପ୍ରୟୋଗ-ମୂଲ୍ୟ ପାଇଛି । କିନ୍ତୁ ବାଘ ପ୍ରତୀକଟିର ବିବିଧ ବ୍ୟବହାର ଓ ପ୍ରୟୋଗ ହୋଇଛି । ରମାକାନ୍ତ ରଥଙ୍କ ଦୀର୍ଘ କବିତା 'ବାଘଶିକାର'ରେ ବାଘ ଏକ ଶକ୍ତିଶାଳୀ କେନ୍ଦ୍ର ପ୍ରତୀକଟିଏ । ଏହି ପ୍ରତୀକକୁ ସମାଲୋଚକ ଧ୍ୱଂସ, ମୃତ୍ୟୁ ବା ମହାକାଳର ପ୍ରତୀକ, ଦୈବିକ ଚେତନାର ପ୍ରତୀକ ବା ପରମାର୍ଥିକ ସତ୍ତାର ପ୍ରତୀକଭାବେ ଗ୍ରହଣ କରିଛନ୍ତି । (୭) ଶ୍ରୀ ରଥଙ୍କ ବହୁ କବିତାରେ ଏହି ବାଘ ପ୍ରତୀକର ପ୍ରୟୋଗ । ତାଙ୍କର 'ସନ୍ଦିଗ୍ଧ ମୃଗୟା' କାବ୍ୟ ଗ୍ରନ୍ଥର ପ୍ରଚ୍ଛଦ ମଧ୍ୟ ଅନୁରୂପ ଭାବାନୁଯାୟୀ । 'ବାଘଶିକାର' କବିତାର ନିର୍ମାଣରେ ସେ ପ୍ରାଚୀନ ସାହିତ୍ୟର ଶିକାବାଘ ଉପାଖ୍ୟାନକୁ ଗ୍ରହଣ କରିଛନ୍ତି । ପଂକ୍ତିଟି ସୂଚନାତ୍ମକଭାବେ କବିତାରେ ଏହିପରି ରହିଛି—

> ସେ କେଉଁ ଶେହେଲ୍ଲକ କେମା ମଧୁଶଯ୍ୟାପରେ ନିଦ୍‌ଯାଇ
> ସ୍ୱାମୀକୁ ଦେଇଛି ଠେଲି ତତ୍‌କ୍ଷଣରେ କାଟିବାପଇଁ
> ଖଡ୍ଗଗୋଟାକରେ ବାଘ × X X

ଏଇ ଅନୁରୂପ ଉପାଖ୍ୟାନଟିକୁ ନେଇ ସଚ୍ଚିଦାନନ୍ଦ ରାଉତରାୟଙ୍କ କବିତା ୧୯୮୩ରେ ରଚିତ 'ଶିକାବାଘ' କବିତାଟି ଜୈବିକ ଚେତନାର ଏକ କଳାତ୍ମକ ପ୍ରକାଶ । ଏହି ଗ୍ରନ୍ଥର 'ବାଘ ମଙ୍ଗଳା' କବିତାଟିରେ ଲୋକବିଶ୍ୱାସ ଏବଂ ବାସ୍ତବତା ମଧ୍ୟରେ ଦ୍ୱନ୍ଦ୍ୱ ପ୍ରକଟିତ ହୋଇଛି । କିନ୍ତୁ ରାଉତରାୟଙ୍କ 'ବାଘ' (୮) କବିତାଟିରେ ହିଂସ୍ରତା ନୁହେଁ ବାଘର ସୌନ୍ଦର୍ଯ୍ୟ ଓ ପ୍ରାଣୋଚ୍ଛଳତା । ବାଘ ଏଠାରେ ସୃଷ୍ଟିକର୍ତ୍ତା ପରମେଶ୍ୱର ବା ଦେବତ୍ୱର ପ୍ରତୀକ ଭାବେ ରୂପାୟିତ ।

ଲୋକଗଳ୍ପରେ ମାଙ୍କଡ଼-କୁମ୍ଭୀର କାହାଣୀ ନୀତି ଉପଦେଶ ପର୍ଯ୍ୟାୟଭୁକ୍ତ କାହାଣୀଟିଏ । କିନ୍ତୁ ଏହି କାହାଣୀଟି ସୌଭାଗ୍ୟକୁମାର ମିଶ୍ରଙ୍କ ବାନର ମକର କବିତାରେ କାବ୍ୟିକ ପ୍ରୟୋଗଭଙ୍ଗୀ ପାଇଛି । ବାନର ମକରଙ୍କ ଆଚରଣକୁ ମାନବୀୟ ରୂପ ପ୍ରଦାନ କରାଯାଇଛି ।

> ଏବେ ପ୍ରାଣୀ ଆଉ ଥାଉ
> ମତେ କାହିଁକି ସାଙ୍ଗ କଲ କେଜାଣି । × × ×
> ଏକଥା ସତ ଯେ ମୋ ଅଧିକାରରେ
> କୋଳି ଗଛଟିଏ ଥିଲା, × × × (ବାନର-ମକର କଥା, ଦ୍ୱାସୁପର୍ଣ୍ଣା)

---

(୭) ବାଘଶିକାର ବିଶେଷାଙ୍କ—ମୂଲ୍ୟାୟନ ୧୫-୧୬ ସଂଖ୍ୟା ଦ୍ରଷ୍ଟବ୍ୟ ।

(୮) ବାଘ—ସଚ୍ଚିଦାନନ୍ଦ ରାଉତରାୟ—ତାଙ୍କର ପୂଜାସଂଖ୍ୟା, ୧୯୮୪ ।

ମୃତ୍ୟୁର ପ୍ରତୀକ ହିସାବରେ ମଇଁଷି ପ୍ରାଚୀନ ସାହିତ୍ୟରୁ ସାଂପ୍ରତିକ ସାହିତ୍ୟ ପର୍ଯ୍ୟନ୍ତ ପ୍ରୟୋଗ ଗୌରବ ପାଇଛି । ରମାକାନ୍ତ ରଥଙ୍କ 'ଅନନ୍ତ ଶୟନ' କବିତାକୁ ଦେଖନ୍ତୁ । ତା'ର ଆରମ୍ଭରେ 'ସାପ ବି ଗୋଟିଏ ଶେଯ' । ବିଷ୍ଣୁଙ୍କ ଅନନ୍ତ ଶୟନ ମିଥ୍‌କୁ କବିତା ପାଇଁ ଗ୍ରହଣ କରାଯାଇଛି । ଆମର ଆଲୋଚନାରେ ପୂର୍ବରୁ ଦିଆଯାଇଥିବା 'ମଥୁରାମଙ୍ଗଳ'ର ଭକ୍ତଚରଣଙ୍କ ଉକ୍ତିକୁ ମଧ୍ୟ ଲକ୍ଷ୍ୟ କରନ୍ତୁ । ଦକ୍ଷିଣଦିଗ, ମନ୍ଦାର ମାଳ, ମଇଁଷି ସବୁ ଆମ ପରମ୍ପରାର ସମ୍ପତ୍ତି ।

> ନାଲି ମନ୍ଦାରର ମାଳେ ତମେ ଗଲ ଦକ୍ଷିଣ ଦିଗକୁ
> ମଇଁଷି ପିଠିରେ ଚଢ଼ି । × × × ତମ୍ବୁତଳେ ଶୋଇଥିବା ମଣିଷ ଦେଖୁଛି
> ସତରଞ୍ଜି ତଳ କୁଟା ଖାଉଛନ୍ତି କେତେଟା ବାଛୁରି
> ଓ ସାମ୍ନାର ପୋଖରୀରେ କେତେଜଣ ପିଲା ଶୋଇଛନ୍ତି
> ବେକଯାଏଁ କାଦୁଅରେ ବୁଡ଼ିଥିବା ମଇଁଷିଙ୍କ ନିର୍ଲିପ୍ତ ପିଠିରେ ।
>
> —'ଅନେକ କୋଠରୀ'

( ଏଠାରେ ତମ୍ବୁ, କୁଟା, ବାଛୁରି, ପିଲା ଓ ମଇଁଷି ସମସ୍ତେ ପ୍ରତୀକ । ) ଦୀପକ ମିଶ୍ରଙ୍କ କେତୋଟି କବିତାରେ ମଇଁଷି ପ୍ରତୀକର ବ୍ୟବହାର ପରିଲକ୍ଷିତ ହୁଏ । ତାଙ୍କ କବିତା ଓ କବିତାଗ୍ରନ୍ଥର ନାଁ 'ଅରଣା ମଇଁଷି' । 'ଅରଣା ମଇଁଷି ରହିଛି ଅନାଇ, ମଇଁଷିର ପାଶ ନଯାଅ ଦିନାଇ'—ମଧୁସୂଦନଙ୍କ ଏହି ପଙ୍‌କ୍ତିକୁ ମୂଳକେନ୍ଦ୍ରକରି ଏହା ଏକ ଚମତ୍କାର ବିସ୍ଫୋରଣ । ସାନପିଲାଙ୍କ ପାଇଁ 'ବର୍ଣ୍ଣବୋଧ'ରେ ଏ ପଦ୍ୟଟି ଲେଖା ଯାଇଛି । ମଧୁସୂଦନ ଖୁବ୍ ବେଶୀ ହେଲେ ମୃତ୍ୟୁକୁ 'ଅରଣା ମଇଁଷି' ଓ ଦିନେଇକୁ ସାଧାରଣ ସାଂସାରିକ ମଣିଷଟିଏ ବୋଲି ଭାବିଥିବେ । କିନ୍ତୁ ଶ୍ରୀ ମିଶ୍ରଙ୍କ ଦୃଷ୍ଟିରେ ଦିନେଇର ଭାଗ୍ୟହିଁ ପ୍ରତିଟି ମଣିଷର । ଭାଗ୍ୟ ମୃତ୍ୟୁର ମଧ୍ୟ ଏକ ସ୍ୱୟଂସମ୍ପୂର୍ଣ୍ଣ ଜୀବନ ଅଛି । × × × ଏ କବିତାରେ ଜୀବନ ମୃତ୍ୟୁମୟ ଏବଂ ମୃତ୍ୟୁ ଜୀବନମୟ । (୯)

ଅନ୍ୟ ଏକ ପ୍ରାଣୀ-ପ୍ରତୀକ ହରିଣୀ ବା ମୃଗୁଣୀର ପ୍ରୟୋଗ କେତୋଟି କବିତାରେ ଲକ୍ଷ୍ୟ କରାଯାଏ । ହରିଣୀ ବା ମୃଗୁଣୀର ଅଙ୍ଗବିଶେଷ ମଧ୍ୟ ବହୁ କବିତାରେ ଉପମା ଓ ଚିତ୍ରକଳ୍ପ ଭାବେ ବ୍ୟବହୃତ ପୁରାଣର ସୁନାହରିଣୀ କିମ୍ବା ଭାଗବତର ବ୍ୟାଧ-କବଳିତ ହରିଣୀ ଆଧୁନିକ କବିତାରେ ତତ୍ତ୍ୱଗତ ଓ ଅର୍ଥଗତ ଗୌରବ ପାଇଛି । ପୃଥିବୀର ମାୟାମୟ ଜୀବନଚର୍ଯ୍ୟା ଓ ନିୟତିର ଲୀଳାଖେଳା ତଥା ଅନିବାର୍ଯ୍ୟତା ପ୍ରସଙ୍ଗରେ ସୀତାକାନ୍ତ ମହାପାତ୍ର ଏଇ ରୂପକଟିକୁ ପ୍ରୟୋଗ କରିଛନ୍ତି ।

---

(୯) ସାଂପ୍ରତିକ ଓଡ଼ିଆ କବିତାର ପରମ୍ପରା ମାନ୍ୟତା : ଏକ ସୂଚନା—ଇସ୍ତାହାର ୨୭—୧୯୮୪

ସୁନାହରଣ ପଛରେ ଧାଇଁବା ଆମରି ଭାଗ୍ୟ
ଆମର ନିୟତି ନ ବୁଝିବା ସୁନାହରଣ କେବେହେଁ
ସମ୍ଭବେନ ଏଇ ଧରଣୀରେ
ସ୍ୱପ୍ନ ପରି, ଜଳଛବି ପରି ହରିଣ ନାଚଇ
ମାୟାବୀ ହୃଦୟର ସଂଗୁପ୍ତ ଗୁହାରେ । (୧୦)

ଭାଗବତର ବ୍ୟାଧ କବଳିତ ମୃଗୁଣୀର ଅସହାୟତା ସାଂପ୍ରତିକ କାବ୍ୟ ନାୟକଙ୍କୁ ବ୍ୟଥିତ କରିଛି । ମୃଗୁଣୀର କାତର ଆଖିରେ ଏକ ଚିରନ୍ତନ ଅସହାୟତାର ସ୍ୱର । ଏ ସ୍ୱରକାତରତା ଜର୍ଜରିତ ଯେକୌଣସି ମଣିଷର ମଧ୍ୟ । ପ୍ରତିଭା ଶତପଥୀଙ୍କ 'ମୃଗୁଣୀ ସ୍ତୁତି' କବିତାରେ ଏଇ ସ୍ୱରଟି କଳାତ୍ମକ ରୂପନେଇଛି ।

ବସୁଧା ଉଦାର
ଆପଣା ଗ୍ରନ୍ଥିର ରୁଦ୍ଧଦ୍ୱାର ଖୋଲି
ଗୁହାରି କରୁଥିଲି ସେ,
ଏ ହୀନ ମୂଢ଼ ପାମରେ ଦୟାହେଉ, ମହାବାହୁ,
ଆଉ କେବେ ଜନ୍ମ ନୋହୁ ମୃଗାୟୁ କୁଳରେ । —'ନିୟତ ବସୁଧା'

ମଧୁସୂଦନ ରାଓଙ୍କ 'ଦଉଡ଼ନା ବଡ଼ ଝରି, ହରିଣ ନଦଏ ଧରି' ପରମ୍ପରା-ମାନ୍ୟତା ନ୍ୟାୟରେ ଦୀପକ ମିଶ୍ରଙ୍କ 'ମଧ୍ୟାହ୍ନର ଗ୍ରନ୍ଥି' କବିତାଟିକୁ ନିର୍ମାଣ କରିଛି । ଜୀବନ-ମୃଗୟାରେ ଯନ୍ତ୍ରଣାପିଷ୍ଟ କାବ୍ୟପୁରୁଷ ତା'ର ଯାତ୍ରାପଥରେ ନୈରାଶ୍ୟରୁ ପରିତ୍ରାଣ ପାଇବା ସକାଶେ ଆଶା ଓ ଆଲୋକର କଥା ବାରମ୍ବାର ଘୋଷଣା କରୁଛି ।

ଆଜିଠାରୁ ମୁକ୍ତି ହେଲା ଝଡ଼ର ସାମ୍ରାଜ୍ୟ
ଯେଉଁଠି ଫୁଲମାନେ ଫୁଟିବେ ଏବେ ନିଜ ସ୍ୱଇଚ୍ଛାରେ
ଏବଂ ସେମାନଙ୍କ କ୍ଷୁଦ୍ର ଗ୍ରନ୍ଥି ମଣ୍ଡଳରେ
ହରିଣୀ ମେଲିବ ତା'ର ଅୟୁତନୟନ ।

ଚନ୍ଦ୍ରମଣି ବେହେରାଙ୍କ 'ମୃଗୟା' କବିତାଟି ଶିକାର ହୋଇଥିବା ମୃତ ହରିଣୀକୁ ଉପଜୀବ୍ୟ କରି, ବାସ୍ତବପୃଷ୍ଠଭୂମି ଉପରେ ମାନବିକ ସଂବେଦନଶୀଳତାର ଏକ ସାର୍ଥକ ରୂପାୟନ । ଶ୍ରୀ ବେହେରା ମୃତ ହରିଣୀର ଶବ ଭିତରେ କେବଳ ରୋମାଣ୍ଟିକ ଚେତନାର ମୃତ୍ୟୁକୁ ପ୍ରତ୍ୟକ୍ଷ କରି ନାହାନ୍ତି, ମଣିଷର ଅସହାୟତା ଓ ହାହାକାର ଏବଂ ଅନ୍ୟ ପକ୍ଷରେ ହିଂସ୍ରତା ଓ ହୃଦୟହୀନତାର ଦୃଶ୍ୟ ମଧ୍ୟ ପରିବେଷଣ କରିଛନ୍ତି ।

(୧୦) ଲକ୍ଷ୍ମଣ —'ଆରଦୃଶ୍ୟ' ସଂକଳନ ।

ସାଂପ୍ରତିକ କବିତାରେ ଉପରୋକ୍ତମତେ ପ୍ରାଣୀ-ପ୍ରତୀକ ବା ଚରିତ୍ରର ପ୍ରୟୋଗ ପରମ୍ପରା ଓ ବାସ୍ତବ ପୃଷ୍ଠଭୂମିକୁ ଆଧାର କରି ଗତିଶୀଳ । ବିଭିନ୍ନ କବିତାଂଶରେ ମଧ୍ୟ ଏଇ ପ୍ରାଣୀ-ପ୍ରତୀକର ପ୍ରୟୋଗ ସୁଲଭ ।

ଏବେ ଆଲୋଚନାର ପର୍ଯ୍ୟାୟରେ ପତଙ୍ଗ ପ୍ରସଙ୍ଗ ପର୍ଯ୍ୟାଲୋଚନା କରିବା । ପତଙ୍ଗ ବିଶେଷଭାବେ ମହୁମାଛି, ଭ୍ରମର, କର୍କି, ପ୍ରଜାପତି, ପିମ୍ପୁଡ଼ି ଇତ୍ୟାଦି ସାଂପ୍ରତିକ କବିତାରେ ପ୍ରୟୋଗ ହୋଇଛନ୍ତି । ପ୍ରାଚୀନ କାବ୍ୟକବିତାରେ ବହୁଭାବେ ଉପମା ରୂପେ ବ୍ୟବହୃତ ଭ୍ରମର (ଭଅଁର)ର ପ୍ରୟୋଗ ଏବର କବିତାରେ ଏତେ ଦେଖି ନାହିଁ । ସୌଭାଗ୍ୟ କୁମାର ମିଶ୍ର 'ଅନ୍ଧ ମହୁମାଛି' କବିତାରେ କାବ୍ୟପୁରୁଷକୁ 'ଅନ୍ଧ ମହୁମାଛି' ବୋଲି ବଡ଼ ସ୍ପର୍ଦ୍ଧା ଓ ବିଶ୍ୱାସର ସହ ନାମିତ କରିଛନ୍ତି । ମହୁମାଛିଟି ତେବେ କେଉଁ ଭାବରେ ଅନ୍ଧ ? ଉତ୍ତର ଖୋଜାଯାଇ ପାରେ । ତା'ର (କାବ୍ୟପୁରୁଷର) ଆବେଗ, ଆକୁତି, ଆବେଦନ, ସମ୍ମୋହନ, ସ୍ୱପ୍ନ ଓ ପିପାସା ନିଶ୍ଚିତ ଭାବରେ ଅନ୍ଧ । ପାର୍ଥିବ୍ ଲାଭକ୍ଷତି ଓ ଜୀବନଯନ୍ତ୍ରଣାର ସ୍ୱଭାବ ନିକାଶରେ ଜୀବନକୁ ଗ୍ରହଣ କରି ହୁଏନା । କୋଳେଇ ନେଇ ହୁଏନା ବୋଲି କାବ୍ୟପୁରୁଷ ବୁଝିଛି । ଏଣୁ ଖାଲି ଫୁଲରେ ନୁହେଁ (ଫୁଲରେ ମହୁତ ସ୍ୱାଭାବିକ କଥା), 'କୁଷ୍ଠରୋଗୀର ଘା'ରେ ଜୀବନ (ମହୁ) ଭରି ରହିଛି ବୋଲି ସେ ଉଦାତ୍ତ ଭାବେ ଘୋଷଣା କରିଛି । ଶ୍ରୀ ମିଶ୍ରଙ୍କ 'ପ୍ରଜାପତି ପ୍ରତି' କବିତାରେ ମଧ୍ୟ ସ୍ନେହସ୍ପୃଷ୍ଟ ଜୀବନଧର୍ମୀ ଉଚ୍ଚାରଣ :

ତୁ ଏତେ ବେଶୀ ଆମପରି ମଣିଷଙ୍କ ପରି ଯେ<br>
ମନହୋଉଚି କୁଣ୍ଢେଇ ପକାନ୍ତି ତତେ ।<br>
ତୋ' ଦେହର ରଙ୍ଗରେ ବୁଡ଼ାଇ ଦେଇ ତୁଳି<br>
ଆଙ୍କି ଯାଆନ୍ତି ଆକାଶ ସାରା, ପବନ ସାରା,<br>
ସେ ସ୍ୱପ୍ନ ଆମକୁ ଯା' କେବେ ପାସୋରି ଦେବନାହିଁ × × ×<br>
('ଦ୍ୱା ସୁପର୍ଣ୍ଣା')

ସୀତାକାନ୍ତ ମହାପାତ୍ର ପ୍ରଜାପତି ଭିତରେ ଯଦିଓ କାବ୍ୟନାୟକର ସତ୍ତାକୁ ଉଦ୍ଭାସିତ କରିଛନ୍ତି ତଥାପି ତାଙ୍କର ପ୍ରଜାପତି ବିମୁଗ୍ଧ ସୌନ୍ଦର୍ଯ୍ୟ ଦୃଷ୍ଟି ରହିଛି । ପ୍ରଜାପତି ପ୍ରତୀକଟି ଏଠି ଇନ୍ଦ୍ରିୟଙ୍କର ବାଣ୍ଟବଣା ଜଗତର ପାର୍ଥିବ ଚରିତ୍ରଟିଏ । ଏ କବିତାର ରୂପକଳ୍ପ ପ୍ରୟୋଗକୁ ଲକ୍ଷ୍ୟ କରନ୍ତୁ ।

କୁନି ପ୍ରଜାପତିଟି, ଏକଦା ଇନ୍ଦ୍ରିୟଙ୍କର ବାଣ୍ଟବଣା ଗହଳ ଗୁଡ଼ି-ଅନ୍ଧାର ଗହନ କାନନ ବନ, ଟୋପି ଟୋପି ଇନ୍ଦ୍ରଧନୁ, ରଙ୍ଗ ବାକ୍ସ, ହଳଦୀ-ଆଲୁଅ ଦୀପ, ମର୍ମରିତ ସ୍ୱନ । (୧୧ କ)

---

(୧୧ କ) ପ୍ରଜାପତି—ଶବ୍ଦନଦୀ—ସୀତାକାନ୍ତ ମହାପାତ୍ର

ପୁନଶ୍ଚ 'ପ୍ରଜାପତିର ମୃତ୍ୟୁ' (୧୧ ଖ) କବିତାରେ ପ୍ରଜାପତିର ମୃତ୍ୟୁ ପରିପ୍ରେକ୍ଷୀରେ ସେ ସୃଷ୍ଟିର ପ୍ରଳୟ ଏବଂ ସମସ୍ତ ସୌନ୍ଦର୍ଯ୍ୟର ବିନାଶକୁ କଳାତ୍ମକ ରୂପ ଦେଇଛନ୍ତି । ସାଂପ୍ରତିକ କବିତାରେ କାବ୍ୟନାୟକ ନିଜର ମ୍ରିୟମାଣ ସ୍ଥିତିରୁ ଉର୍ତ୍ତୀର୍ଣ୍ଣ ହେବାପାଇଁ ପ୍ରଜାପତିର ରୂପଚେତନା ଭିତରୁ ଆଶ୍ୱାସନା ସନ୍ଧାନ କରୁଛି । (୧୨)

ଭାଗବତର ବୁଢ଼ିଆଣୀ ବା ଊର୍ଣ୍ଣନାଭି ପ୍ରତୀକଟିରୁ ରମାକାନ୍ତ ରଥଙ୍କ 'ବାଘ ଶିକାର' କବିତାର ନିର୍ମାଣ । (୧୩) ପ୍ରତୀକଟି ସଂପ୍ରସାରିତ ହୋଇ ଆଉ ଏକ ପ୍ରତୀକକୁ ଜନ୍ମ ଦେଇଛି । ବୁଢ଼ିଆଣୀ ନିଜେ ଜାଲ ତିଆରି କରି ତା' ଭିତରେ ବଞ୍ଚେ ଏବଂ ପରେ ତାକୁ ନଷ୍ଟ କରେ, ମହାକାଳ ସେହିପରି ସୃଷ୍ଟି ଓ ଧ୍ୱଂସର ପ୍ରତୀକ । ସୃଷ୍ଟି ଏବଂ ବିପର୍ଯ୍ୟୟ ଭିତରେ ମାୟାମୟ ଜୀବନଚର୍ଯ୍ୟା ଏବଂ ମହାକାଳର ମାୟାରୁ ଉତ୍ତୀର୍ଣ୍ଣ ହେବାର ପ୍ରଚେଷ୍ଟା ଏ କବିତାର ପ୍ରତିପାଦ୍ୟ । ଏଠାରେ ଊର୍ଣ୍ଣନାଭି, ଜାଲ, ରାତି, ସୂର୍ଯ୍ୟୋଦୟ ସବୁ ପ୍ରତୀକ । ବାଘ ଶିକାର ମଧ୍ୟ ଏକ ପ୍ରତୀକ । ଊର୍ଣ୍ଣନାଭି ପ୍ରତୀକ ଭିତରୁ ବାଘର ପ୍ରତୀକଟିଏ ଜନ୍ମ ନେଇଛି । ଉକ୍ତିର ମୂଳବିନ୍ଦୁରୁ ଉକ୍ତିକୁ ଆଣି କରି କବିତା ସଂପ୍ରସାରିତ ହୋଇଛି । (୧୪)

କର୍କିକୁ ନେଇ ସୀତାକାନ୍ତ ମହାପାତ୍ରଙ୍କ 'ନିଷ୍ଠୁର' ('ସମାଜ'ରେ ପ୍ରକାଶିତ) ଏବଂ ସୌଭାଗ୍ୟ କୁମାର ମିଶ୍ରଙ୍କ 'କର୍କି' ନାମଧେୟ ଦୁଇଟି ଭିନ୍ନ ସ୍ୱାଦର କବିତା ରହିଛି । ଉଭୟର ଘଟଣା ଏକ : ସାନପିଲାଙ୍କ ହାତରେ ନିଷ୍ଠୁର ଭାବେ କର୍କିର ପ୍ରାଣବାୟୁ ଉଡ଼ିଯିବା । ଶ୍ରୀ ମହାପାତ୍ର ଏ ନେଇ ଈଶ୍ୱରଙ୍କୁ ସୃଷ୍ଟି ସମ୍ପର୍କୀୟ ଗମ୍ଭୀର ପ୍ରଶ୍ନଟିଏ ଉତ୍ଥାପନ କରି ତାଙ୍କୁ ଏକାନ୍ତ ଲୌକିକ ସ୍ତରକୁ ଓହ୍ଲାଇ ଆଣିଛନ୍ତି ।

---

(୧୧ ଖ) ପ୍ରଜାପତିର ମୃତ୍ୟୁ—ଶବରୀ—ସୀତାକାନ୍ତ ମହାପାତ୍ର

(୧୨) ମୁଁ ତ ମୋ ଦୁଃଖ ଓ ଅପାରଗତାର ଖୋଳପାରେ ଆବଦ୍ଧ
ଯେମିତି ଗୋଟେ ସିଁବାଳୁଆ ଅଧୁଷିତ ସେମ୍ଭି ଗଛ···
ତୁ ସାମ୍ନାରୁ ପୂରା ଅଦୃଶ୍ୟ ହେବାଯାଏ
ମୁଁ ତତେ ଦେଖିଲାଗିଥାଏ···'ପ୍ରଜାପତି କଥା'—ଶତ୍ରୁଘ୍ନ ପାଣ୍ଡବ

—'ଅମୃତାୟନ' ଜାନୁୟାରୀ ୧୯୮୬ ।

(୧୩) ଯେସନେ କୀଟ ଊର୍ଣ୍ଣନାଭି, ନିଜ ବଦନୁ ସୂତ୍ର ଭାବି ।
ଜାଲ ନିର୍ମାଣି ରଚି ମୁଖେ, ମଧ୍ୟେ ବିହରେ ନାନା ସୁଖେ ।
ଏକାନ୍ତେ ବସେ କ୍ରୀଡ଼ା କରେ, ସୂର୍ଯ୍ୟ ଉଦୟେ ତା' ସଂହରେ ।

(୧୪) ସାଂପ୍ରତିକ ଓଡ଼ିଆ କବିତାର ପରମ୍ପରା-ମାନ୍ୟତା : ଏକ ସୂଚନା, ଇସ୍ତାହାର ୨୭ ।

ଆମକୁ ସଂସାରର ଯାବୁ ପଞ୍ଜରେ ଗୁପି ଧରି
ମାୟାଜାଲରେ ଗୁରେଇ ବୁରେଇ ଧନ୍ଦାଧାନ୍ଦ
କନ୍ଦେଇ କନ୍ଦେଇ
ତମେ ଯୋଉଠି ଆପନା କାହିଁକି ଭଗବାନ
ତମେ କ'ଣ ଏମିତି ବେଳେ ବେଳେ ବିବ୍ରତ ହୋଇପଡ଼ ?
ତମେ ବି କ'ଣ ଲୁଚେଇ ଲୁଚେଇ ଲୁହ ଝାର
ନିଜର ଅନିଚ୍ଛାକୃତ ନିଷ୍ଠୁରତାରେ ? —'ନିଷ୍ଠୁର'

ଅମାନିଆ ପିଲାଙ୍କ ହାତରେ ଦାରୁପଞ୍ଜରେ ଝର୍କି ସଦୃଶ ଈଶ୍ୱର ମନୁଷ୍ୟ-ପିଲାଙ୍କୁ କନ୍ଦେଇ କନ୍ଦେଇ ଖେଳନ୍ତି । କିନ୍ତୁ ସୌଭାଗ୍ୟ ମିଶ୍ରଙ୍କ 'ଝର୍କି' କବିତାରେ ପିଲାଙ୍କ ଖିଆଲି ମନର ଆନନ୍ଦ ଓ ଚଞ୍ଚଳତା ଝର୍କିର ନିଷ୍ଠୁର ମୃତ୍ୟୁରେଇ ପ୍ରକାଶପାଇଛି । ଶିଶୁ ମନସ୍ତତ୍ତ୍ୱର ରଙ୍ଗ କ'ଣ ? ଶ୍ରୀ ମିଶ୍ର କହନ୍ତି —

ପର ଛିଣ୍ଡାଇଲି ବେଳେ
କୌଣସି କାର୍ଯ୍ୟ ଅଟକାଇ ଦିଏନା ହାତକୁ,
ଢେଲ ମାରି ଦେଲି ବେଳେ
କୌଣସି ପବନ ଛଡ଼ାଇ ପାରେନା ପଥରକୁ ।
କିଏ ଜାଣେ ସଠିକ ଆନନ୍ଦର ରଙ୍ଗ କ'ଣ ! (ଝର୍କି—ଦ୍ୱାସୁପର୍ଣ୍ଣା)

ଉପଯ୍ୟୁକ୍ତ କବିମାନଙ୍କ ବ୍ୟତୀତ ଓଡ଼ିଆ କବିତାରେ ପଶୁ, ପକ୍ଷୀ, ପତଙ୍ଗକୁ ଆଶ୍ରୀକରି ସାମଗ୍ରିକ ଭାବରେ ବସ୍ତୁ ପ୍ରତୀକ, ରୂପକ, ଉପମା ଓ ରୂପକଳ୍ପର ବ୍ୟବହାର ଦୃଷ୍ଟିଗୋଚର ହୁଏ । ସରୀସୃପ, ମେଣ୍ଢା, କଇଁଚ, ଓଟ, ଠେକୁଆ, ବଣି, ଘୋଡ଼ା, ମଶା, ପଙ୍ଗପାଳ, ବିଲେଇ, ସାପ, ଶଙ୍ଖଚୂଲ, ଗେଣ୍ଡା, ପିମ୍ପୁଡ଼ି, ମାଙ୍କଡ଼, କଙ୍କଡ଼ା ଆଦି ବସ୍ତୁ ମାନବେତର ଚରିତ୍ରଙ୍କୁ ଆଧାର କରି ଭିନ୍ନ ଭିନ୍ନ ଦୃଷ୍ଟିକୋଣରୁ ବହୁ ଲେଖାଯାଇଛି । ବିଭିନ୍ନ କବିତାଂଶରେ ଏମାନେ କିପରି ପ୍ରତୀକ, ରୂପକ, ଉପମା ବା ଚିତ୍ରକଳ୍ପ ଭାବରେ ଆତ୍ମପ୍ରକାଶ କରିଛନ୍ତି, ଅସଂଖ୍ୟ ନମୁନାରୁ ଏଠାରେ କେତୋଟିର ଉପସ୍ଥାପନ କରାଗଲା ।

(କ) ତମେ ହେଲେ ଉଡ଼ିଆସ ବ୍ରିବାହରୁ/ହେ ମୋ ବିହଙ୍ଗମ ।

(ଜନ୍ମଗାଥା—ରମାକାନ୍ତ ରଥ)

(ଖ) ମୋଟି କଳା ଆକାଶରେ ଡରିଙ୍କ ଜାଗାରେ
ଧାଡ଼ି ଧାଡ଼ି କୃଷ୍ଣବର୍ଣ୍ଣ ପକ୍ଷୀଙ୍କ ମୂର୍ଚ୍ଛାର । (ମୃତ୍ୟୁ କ'ଣ—ରମାକାନ୍ତ ରଥ)

(ଗ) ମୁଁ ନିଶ୍ଚିତ ମରୁଓଷ୍ଠ ବେକବେକ ଦେଖୁଅଛି ଦୃଶ୍ୟ
ଆଦର୍ଶର କ୍ଷୀଣରଶ୍ମି ପିଠିପଟେ ଯେମିତିକା ଝୁଲୁଅଛି ଖାଲି ।
(ଶଙ୍ଖନାଭି—ହରିହର ମିଶ୍ର)

(ଘ) ସନ୍ଧ୍ୟା ଆସେ ହାତ ପରି ମହାଶୂନ୍ୟ ଗାତରୁ ବାହାରି······
(ସନ୍ଧ୍ୟା କାଳରେ ଗ୍ରାମର ଦୃଶ୍ୟ—ବଂଶୀଧର ଷଡ଼ଙ୍ଗୀ)

(ଙ) କଥାହବୁ ଉଡ଼ିଆସେ କୁନି କୁନି ଚଢ଼େଇଙ୍କ କୋଳାହଳ
ଖୋଲିଦେଇ ଓଠଙ୍କ ପଞ୍ଜୁରି । (ଆର ଦୃଶ୍ୟ—ସୀତାକାନ୍ତ ମହାପାତ୍ର)

(ଚ) ମୃତ୍ୟୁ ଆସି ବନ୍ଧା ହେଲା ଅବେଳ ଗୋଠରେ
ବିଶ୍ୱସ୍ତ ଗୃହପାଳିତ ପଶୁପରି·· (ଅବେଳ—ଦୀପକ ମିଶ୍ର)

(ଛ) ଜହ୍ନ ବୁଢ଼ି ଆଣି ପାତଲା ବଉଦଙ୍କ ଜାଲି ଡେଇଁ ଡେଇଁ
ଦୂର ଗଛ ଉହାଡ଼ରେ ଛପିଗଲି × × (ଶିଳାଲିପି—ପ୍ରତିଭା ଶତପଥୀ)

(ଜ) ହେଇଦନ୍ତୁ ପର୍ଯ୍ୟାପ୍ତରେ ଜଗ୍‌ଖରେ ଅବନତା ଶବଗ୍ରୀ ମୁଁ
ଆଖିର ଶାଗୁକାଣ୍ଟିକୁ ଦୂରକୁ ଉଡ଼ାଇ ଦିଏ । (ଶ୍ରମଣା—ପ୍ରତିଭା ଶତପଥୀ)

(ଝ) ଆଖିର କପୋତ ମୋର ବାଧାପାଇ ଆକାଶର ଇସ୍ପାତ ଦେହରେ
ଫେରିଆସେ ଏଇ ପୃଥିବୀକୁ (ଆଖିର କପୋତ ମୋର—ଗୁରୁପ୍ରସାଦ ମହାନ୍ତି)

ମାନବେତର ଚରିତ୍ରଙ୍କୁ ଭିତ୍ତିକରି ବହୁ କବିତା ଗ୍ରନ୍ଥର ନାମକରଣ ସେମାନଙ୍କର ପ୍ରୟୋଗ ମୂଲ୍ୟକୁ ଅଧିକ ବୈଶିଷ୍ଟ୍ୟ ପ୍ରଦାନ କରେ । କବିତାର ଆଭିମୁଖ୍ୟ, ଅଭିବ୍ୟକ୍ତି ଦୃଷ୍ଟିରୁ ମାନବେତର ଚରିତ୍ର ଭିତ୍ତିକ ଏ ନାମକରଣ ନିଶ୍ଚିତ ଭାବେ ତାତ୍ପର୍ଯ୍ୟପୂର୍ଣ୍ଣ ଓ ବୈଚିତ୍ର୍ୟ । ଗ୍ରନ୍ଥ ନାମକରଣରୁ ମାନବେତର ଚରିତ୍ରଙ୍କ ପ୍ରୟୋଗ-ଗୁରୁତ୍ୱ କଳନା କରି-ଯାଇପାରେ । ସର୍ପଧୂପ (ବିନୋଦ ନାୟକ), ନୀଳହଂସର ଜ୍ୱାଳା (ପ୍ରହ୍ଲାଦ ସତ୍ୟନାରାୟଣ ନନ୍ଦ), ଅରଣା ମଇଁଷି (ଦୀପକ ମିଶ୍ର), ଗୀତ ଗା'ନାରେ ପକ୍ଷୀ (କମଳାକାନ୍ତ ଲେଙ୍କା), ଆ ପକ୍ଷୀ ଫେରିଆ (ପ୍ରସନ୍ନ କୁମାର ମିଶ୍ର), ବିଦୀର୍ଣ୍ଣ ମରାଳ (ନିତ୍ୟାନନ୍ଦ ନାୟକ), ନଈ ଆଉ ହଂସ, ମାଛ ଓ ସାରସ; ଉଚ୍ଚୈଶ୍ରବାଃ (ଶରତଚନ୍ଦ୍ର ପ୍ରଧାନ), ନିଦ୍ରିତକଚ୍ଛପ (ଶ୍ରୀକାନ୍ତ ମହାନ୍ତି), କ୍ରୌଞ୍ଚ ମିଥୁନ (ଗିରିଜା କୁମାର ବଳିଆରସିଂହ), ହାପଗାତରେ ସକାଳ (ପ୍ରସନ୍ନ ପାଟଶାଣୀ), ପକ୍ଷୀଟିଏ ବସିଛି ଡାଳରେ (ଦିଲ୍ଲୀପ ଦାସ) ଇତ୍ୟାଦି କବିତା-ଗ୍ରନ୍ଥରାଜି ଏ ପ୍ରସଙ୍ଗର ଉଦାହରଣ ।

ତିନି :

ବିଭିନ୍ନ କବିତାଂଶରେ, ପ୍ରତୀକ, ରୂପକ, ଉପମା ବା ଚିତ୍ରକଳ୍ପ ଭାବେ ମାନବେତର ଚରିତ୍ରମାନଙ୍କ ପ୍ରୟୋଗ ଖୁବ୍ ସ୍ୱାଭାବିକ ଓ ସହଜାତ । ତେବେ ଏମାନଙ୍କୁ ଆଶ୍ରୟକରି ଏକାନ୍ତ କଳାତ୍ମକ କବିତା ରଚନା ନିଶ୍ଚିତଭାବେ ଶକ୍ତି ଓ ସାଧନାର ଅପେକ୍ଷା ରଖେ । କେବଳ ମାନବେତର ଚରିତ୍ର ଠିକଣା କରି କବିତାକୁ ରୂପ ଦିଏନା । କବିତା ଅନ୍ତରାଳରେ ଉର୍କି ମାରୁଥିବା ଉଦ୍ଦେଶ୍ୟ ବା ଅଭିମୁଖ୍ୟଟି ସ୍ୱୟଂପ୍ରେରିତ ହୋଇ ତାହା ବିବାଦ ମୁତାବକ ସମ୍ଭାବ୍ୟ ପ୍ରତୀକଟିଏ ବା ରୂପକଟିଏକୁ ଖୋଜିଆଣେ । ସବୁ ଚରିତ୍ର ପ୍ରତୀକ ବା ରୂପକ ହୋଇପାରନ୍ତି ନାହିଁ । ତା'ର ସମ୍ଭାବ୍ୟ ସ୍ୱରୂପ ଆବଶ୍ୟକ । ଏଣୁ ଅଭିମୁଖ୍ୟ ନିର୍ଦ୍ଦିଷ୍ଟ ଚରିତ୍ରଭିତ୍ତିକ କବିତାଟିଏ ଭୂମିଷ୍ଠ ହୁଏ । କାବ୍ୟପୁରୁଷର ରୂପପ୍ରାଣତାରେ କଳ୍ପନା ଓ ଚିନ୍ତନର ପ୍ରଖରତା ଓ ପ୍ରାଣୋଚ୍ଛଳତା ନଥିଲେ ଏହି ସାଧାରଣ ମାନବେତର ଚରିତ୍ରମାନେ ଅସାଧାରଣ ପ୍ରତିପନ୍ନ ହୁଅନ୍ତି ନାହିଁ । ଗୋଟିଏ ଗୋଟିଏ ଚରିତ୍ରର କ୍ଷେତ୍ରବିଶେଷରେ ଭିନ୍ନ ଭିନ୍ନ ପ୍ରୟୋଗ । ଏଣୁ କବିର ଅନ୍ତର୍ଦୃଷ୍ଟି ଏହି ମାନବେତର ଚରିତ୍ରଙ୍କୁ ବ୍ୟକ୍ତି ମଣିଷ ସହିତ, ବିଭିନ୍ନ ଅବସ୍ଥା ବା ପରିବେଶ ସହିତ, ରୂପ ଅରୂପ ସହିତ ସମନ୍ୱିତ କରାଏ । ଜୀବନ ଓ ପ୍ରକୃତି ପ୍ରତି ଗଭୀର ଶ୍ରଦ୍ଧା ଏପ୍ରକାର କବିତାପାଇଁ ପ୍ରେରଣା ଦିଏ । ପୁନଶ୍ଚ କବିର କାବ୍ୟ-ପରମ୍ପରାପ୍ରତି ସଚେତନତା ଓ ଉନ୍ମୁଖତା ପରମ୍ପରାକୁ ବର୍ତ୍ତମାନ ସହିତ ସମନ୍ୱିତ କରାଏ, ନବୀକରଣ କରାଏ, ସଂପୂର୍ଣ୍ଣ ନୂତନତ୍ୱବୋଧ ଫୁଟାଏ, ଗଭୀରତମ ଅନୁଭୂତି ଓ ମନନ ଅଭିବ୍ୟକ୍ତିକୁ ଆବେଗାତ୍ମକ ରୂପଦିଏ । ଏଣୁ ଈଶ୍ୱର କାରୁଣ୍ୟ ହେଉ କି କଙ୍କି ପ୍ରଜାପତିର ଡେଣା ହେଉ—ଏସବୁ ମାନବେତର ରୂପଙ୍କା ବା ଦୃଶ୍ୟଙ୍କାର କବ୍‌ଜାରୁ ମୁକୁଳି କାବ୍ୟପୁରୁଷ ବ୍ୟକ୍ତି ମଣିଷକୁ, ଜୀବନକୁ, ଜୀବନୋତ୍ତର ସତ୍ୟକୁ, ପ୍ରକୃତିକୁ, ଅସୀମକୁ ଦେଖେ ଓ ଦେଖାଏ । ସେଠି ଆଉ ମାନବେତର ଚରିତ୍ର ନଥାନ୍ତି, ନଥାଏ କେଉଁ ପ୍ରତୀକ ବା ରୂପକର ବିଚରଣ । ସବୁ ଲାଗେ କବିତା । ସବୁ ହୋଇଯାଇଥାଏ କବିତା ।



# ସଚ୍ଚି ରାଉତରାୟଙ୍କ
# କାବ୍ୟଦୃଷ୍ଟି ଓ 'ବାଜିରାଉତ'

ଏକ :

ଆଧୁନିକ ଓଡ଼ିଆ କାବ୍ୟ ଜଗତରେ କବି ସଚ୍ଚିଦାନନ୍ଦ ରାଉତରାୟ ସର୍ବାଗ୍ରେ ସ୍ମରଣୀୟ, ବହୁଚର୍ଚ୍ଚିତ ଓ ମାନ୍ୟତାପ୍ରାପ୍ତ କାବ୍ୟଶିଳ୍ପୀ । ଅକ୍ଳାନ୍ତ ଅବିଶ୍ରାନ୍ତ ସେହି ଲେଖନୀ ବିଗତ ଛ' ଗୋଟି ଦଶନ୍ଧିରୁ ଊର୍ଦ୍ଧ୍ୱ କାଳ ଧରି ଓଡ଼ିଆ କବିତାକୁ କେତେ ବର୍ଣ୍ଣବୈଭବରେ, ରାଗରଙ୍ଗରେ ରଞ୍ଜିତ କରିଛି । ତାଙ୍କ କବିତାରେ ବିଷୟବସ୍ତୁର ବିବିଧତା ଓ ଯୁଗୋପଯୋଗୀ ବିନ୍ୟାସ, ବହୁଧାରା ଓ ବାଦର ପ୍ରୟୋଗ, ଜଟିଳ ସୂକ୍ଷ୍ମ ଭାବାନୁଭୂତି, ନୂତନ କାବ୍ୟଭାଷା, ଅସରନ୍ତ ଶବ୍ଦ ଭଣ୍ଡାରର ବହୁବିଧ ପ୍ରୟୋଗ ବୈଶିଷ୍ଟ୍ୟ, ଚିତ୍ରକଳ୍ପ ଓ ପ୍ରତୀକର ନୂତନ ଓ ପ୍ରାଣବନ୍ତ ସଂଯୋଜନା, ଗଦ୍ୟରୀତି ଓ ପଦ୍ୟରୀତିର ସୁଷମ ଓ ବହୁଧା ସ୍ଫୁରଣପୂର୍ଣ୍ଣ ସମନ୍ୱୟ ଆଧୁନିକ ଓଡ଼ିଆ କବିତାର ଭାବପ୍ରସ୍ଥ ଓ କଳା କାରିଗରୀର ଦିଗନ୍ତକୁ ବ୍ୟାପ୍ତି, ଗତି, ସଞ୍ଜୀବନୀ ଶକ୍ତି ସର୍ବୋପରି ନୂତନ ଦୃଷ୍ଟି ଓ ପ୍ରେରଣାରେ ଅଭିଷିକ୍ତ କରିଛି । ବିଶ୍ୱ ଚିନ୍ତା ଜଗତରେ କବିତା ନେଇ ଉଦ୍‌ଭୂତ ନୂତନ ନୂତନ ଆନ୍ଦୋଳନ, ବାଦ୍ୟ ଓ ଦର୍ଶନର ପରୀକ୍ଷା ପ୍ରୟୋଗ, ସମାଜ-ରାଜନୀତିକ ପଟ୍ଟ ପରିବର୍ତ୍ତନ ପ୍ରଭୃତିକୁ ଗ୍ରହଣ କରି ଏକ ଭାରତୀୟ ପୃଷ୍ଠଭୂମି ଓ ଜୀବନଚର୍ଯ୍ୟା ଆଧାରରେ ସଚ୍ଚିଦାନନ୍ଦ ନୂତନ ପ୍ରୟୋଗଶୀଳତା ଦେଇଆନ୍ତି । ଏହିସବୁ ପରୀକ୍ଷା ପ୍ରୟୋଗ ପ୍ରସଙ୍ଗ ମଧ୍ୟ ତାଙ୍କ ରଚିତ ଗଳ୍ପ ଓ ପ୍ରବନ୍ଧ-ମାନଙ୍କରେ ବେଶ୍ ଉପଲବ୍ଧ ।

ସଚ୍ଚିଦାନନ୍ଦଙ୍କ କାବ୍ୟସ୍ୱର ରୋମାଣ୍ଟିକ ସୌନ୍ଦର୍ଯ୍ୟ ପିପାସାର ଭାବନାବିହ୍ୱଳତାରେ କେଉଁଠି ବର୍ତ୍ତୁଳ ତ କେଉଁଠି ଶାଣିତ ବିଦ୍ରୋହର ମନ୍ଦ୍ର ନାଦରେ ଉଚ୍ଛଳ । ତାହା କେଉଁଠି ଚେତନ ଅବଚେତନର ସୂକ୍ଷ୍ମ ଦେହଳୀକୁ ସ୍ପର୍ଶ କରିଛି ତ ଆଉ କେଉଁଠି ଉଗ୍ର ବାସ୍ତବବାଦର ଭୂମିରୁ ଅତି ବାସ୍ତବବାଦୀ ଭାବଜଗତକୁ ଆରୋହଣ କରିଛି । ତାଙ୍କ କବିତା ପ୍ରକୃତିପ୍ରାଣତା ଓ ସୌନ୍ଦର୍ଯ୍ୟାନୁରାଗର ଏକ ଚିତ୍ରଶାଳା । କେଉଁଠି ଶାନ୍ତ ଆଶ୍ୱିନ କି ଉର୍ବୀଶ୍ରୀ ଶ୍ରାବଣ, କେଉଁଠି ଫଗୁଣ ଓ ଚୈତ୍ରର ସୁରଭି ଓ ବେହାଗ ବା ତପ୍ତ ନିଦାଘର ସ୍ପର୍ଶସ୍ୱେଦ । କେଉଁଠି ଶ୍ରମଜୀବୀ ମେହନତି ମଣିଷର ସ୍ୱେଦଅଶ୍ରୁ ତ କେଉଁଠି ମତ୍ସ୍ୟଗନ୍ଧା ବା ଚନ୍ଦ୍ରାବତୀଙ୍କ ଲାବଣ୍ୟଛବି । କେଉଁଠି ପ୍ରଶ୍ନବାଣରେ ଜର୍ଜରିତ ଈଶ୍ୱର ତ କେଉଁଠି ଐଶ୍ୱରୀୟ-ଆଧ୍ୟାତ୍ମିକ ଭାବ ଉଦ୍‌ବେଳନ । କେଉଁଠି ଆତ୍ମସତ୍ତାର ଦ୍ୱନ୍ଦ୍ୱ ପୁଣି କେଉଁଠି ବିଶ୍ୱସତ୍ତା ସହ

ବ୍ୟକ୍ତିତ୍ୱର ସମନ୍ୱୟୀକରଣ । ପୁଣି ଆଙ୍ଗିକ ବିନ୍ୟାସରେ କେଉଁଠି ପଦ୍ୟଛନ୍ଦର ମୁକ୍ତ ପ୍ରବାହ ତ କେଉଁଠି ଗଦ୍ୟଛନ୍ଦର ଧୀର ସଲଜ୍ଜ ପଦପାତ । ସଙ୍ଗେ ସୌନ୍ଦର୍ଯ୍ୟ ମାର୍ଜନା ଓ ମାନବବାଦର ବନ୍ଦନା ପ୍ରାଧାନ୍ୟ ଲାଭ କରିଛି । ତେବେ ସଂକ୍ଷେପରେ ତାଙ୍କ କବିତାର ଗୁରୁତ୍ୱ ଓ ଭାବ-ବସ୍ତୁକୁ ପ୍ରକାଶ କରିବା ସହଜ ନୁହେଁ । ବହୁ ବିବିଧତା ମଣ୍ଡିତ ଏହି କାବ୍ୟସ୍ୱରରେ ଥାଏ ଏକ ମୁଗ୍ଧ ଅଙ୍ଗୀକାର, ଏକ ବାର୍ତ୍ତା, ମାଟି ଓ ମଣିଷ ପାଇଁ ଗଭୀର ଆକୂତି ଓ ସଂବେଦନଶୀଳତା ।

## ଦୁଇ :

ସଚ୍ଚିଦାନନ୍ଦଙ୍କ ପ୍ରାଥମିକ କାବ୍ୟସୃଷ୍ଟି ପାଥେୟ (୧୯୩୧) ରୋମାଣ୍ଟିକ ଭାବାନୁଭୂତିର ସ୍ୱଚ୍ଛନ୍ଦ ପରିପ୍ରକାଶ । ପରବର୍ତ୍ତୀକାଳରେ ବିକଶିତ କାବ୍ୟସ୍ୱରର ସ୍ଫୁରଣକୁ 'ପାଥେୟ' ପର୍ଯ୍ୟାୟରୁ ଲକ୍ଷ୍ୟକରି ହୁଏ । ଏହା ପରେ ପରେ ପଲ୍ଲୀ ଆତ୍ମାର ସୌକୁମାର୍ଯ୍ୟ ଓ ସୁନ୍ଦରପଣକୁ ଏକ ଭାବବିହ୍ୱଳ ରୂପ ଦେବାରେ 'ପଲ୍ଲୀଶ୍ରୀ'ର ଶ୍ରେଷ୍ଠତା ଅବିସମ୍ବାଦିତ । 'ଅଭିଯାନ' (୧୯୩୮) ପର୍ଯ୍ୟାୟରୁ ସ୍ୱପ୍ନ, କଳ୍ପନା ଓ ରୂପଜମୋହକୁ ପରିହାର କରି ମାଟି ଓ ମଣିଷ ପାଇଁ ବିପ୍ଳବର ଦୃପ୍ତ ଆବାହନ ରାଉତରାୟ-କାବ୍ୟଯାତ୍ରା ପଥରେ 'ବାଜିରାଉତ' (୧୯୪୩) ଖଣ୍ଡକାବ୍ୟରେ ପରିପୂର୍ଣ୍ଣତା ପାଇଛି । ପରିପକ୍ୱ ଛନ୍ଦ-ନିପୁଣତା, ନିର୍ଦ୍ଦିଷ୍ଟ ଅଙ୍ଗୀକାରବୋଧ, ଆବେଗଦୀପ୍ତ ଅଥଚ ଭାବଗମ୍ଭୀର ଆବେଦନ, ମାନବ ବନ୍ଦନା, ବ୍ୟକ୍ତିତ୍ୱକୁ ନିଖିଳର ସ୍ପର୍ଶ ଓ ଯୋଦ୍ଧାର ସହ ସମନ୍ୱିତ କରିବାର ପ୍ରୟାସ 'ବାଜିରାଉତ'କୁ ଏକ ଅନୁପମ ସ୍ପର୍ଦ୍ଧିତ କାବ୍ୟସୌଧରେ ପରିଣତ କରିଛି । ଏହାପରେ ବହୁ ବିଶିଷ୍ଟ ମୋଡ଼ ବା ବାଙ୍କବୁଲାଣି ଦେଇ ସଚ୍ଚିଦାନନ୍ଦ କାବ୍ୟଦୃଷ୍ଟି ଆରୋହଣ ଓ ଉତ୍ତରଣ ପଥରେ ଗତିମୁଖର । ଏହି ବାଙ୍କବୁଲାଣିର ଉଜ୍ଜ୍ୱଳ କୀର୍ତ୍ତିସ୍ତମ୍ଭ 'ପାଣ୍ଡୁଲିପି' (୧୯୪୭), 'ଭାନୁମତୀର ଦେଶ' (୧୯୪୯), 'ସ୍ୱଗତଃ' (୧୯୫୮) ଏବଂ 'କବିତା : ୧୯୬୨' ଆଦି କାବ୍ୟଗ୍ରନ୍ଥ । ଏହାପରେ ରଚିତ ବିଭିନ୍ନ ମସିହା ଶିରୋନାମା ଗ୍ରଥିତ କାବ୍ୟଗ୍ରନ୍ଥ 'କବିତା : ୧୯୬୯', 'କବିତା : ୧୯୭୧', 'କବିତା : ୧୯୭୪', 'ଏଷିଆର ସ୍ୱପ୍ନ', 'କବିତା : ୧୯୮୩', 'କବିତା : ୧୯୮୭', 'କବିତା : ୧୯୯୦' ଆଦି ସଚ୍ଚିଦାନନ୍ଦଙ୍କ ଅନାହତ କାବ୍ୟକର୍ମ ଓ ଚିନ୍ତନର ବଳିଷ୍ଠ ପରିଚାୟକ । ଯଦିଓ ଏହି ପରିମାଣାତ୍ମକ ବିପୁଳତା ଗୁଣାତ୍ମକ ସାଫଲ୍ୟ ଓ ସିଦ୍ଧି ପାଇଁ ଅନେକ ସମୟରେ ଅନ୍ତରାୟ ହୋଇ ଛିଡ଼ା ହୁଏନ୍ତି— ତଥାପି ସଚ୍ଚିଦାନନ୍ଦଙ୍କ ସ୍ୱରର ମୌଳିକ ଯାଦୁ ଓ କଳାକାରିଗୋରୀ ସ୍ଫୁର୍ତ୍ତି ବେଶ୍ ବାରି ହୋଇଯାଏ । ନିକଟ ଅତୀତରେ ପ୍ରକାଶିତ ଦୁଇଟି କବିତାର ପଂକ୍ତି ଉଦ୍ଧାର କରି ଏହି ବର୍ଷୀୟାନ ସ୍ୱରର ଗମ୍ଭୀରତା, ବୈଶିଷ୍ଟ୍ୟ ଓ ଆଭିମୁଖ୍ୟକୁ ସମକାଳ ପରିପ୍ରେକ୍ଷୀରେ ସୂଚାଇ ଦିଆଯାଇପାରେ । ସାଂପ୍ରତିକ ବିଶ୍ୱର ପରମାଣୁ ଆତଙ୍କ ସର୍ବୋପରି ଯୁଦ୍ଧଜନିତ ଯାବତୀୟ ବିଭୀଷିକାଗତ ମାନସିକତାରୁ ଏ କବିତାର ଜନ୍ମ । ପ୍ରଥମଟିରେ ଅ.ଞ୍ଚଳିକ

ରଙ୍ଗରେ ରଞ୍ଜିତ ବାଲ୍‌ଆପାଲ ହୋଇଛି ରକ୍ତମଖା ଯୁଦ୍ଧଖୋର ମାନସିକତାର ଗ୍ଳାନିରୂପର ପ୍ରତୀକ । ଏଥିପ୍ରତି କାବ୍ୟସ୍ୱରର ପ୍ରତିବାଦ ପ୍ରକଟିତ । ଦ୍ୱିତୀୟ କବିତାରେ ଯୁଦ୍ଧ ଯେ ଅନ୍ତିମ କଥା ନୁହେଁ ଏବଂ ପୃଥିବୀ ତଥାପି ଜୀଇଁ ରହି ନୂତନ ରୂପାନ୍ତର ଘେନିବ ତା'ର ସୂଚନା ରହିଛି ।

ସେଠିକି ମୁଁ ଯିବି ନାହିଁ, ଯେଉଁଠାରେ ଥିଲା ଧାନବିଲ
ବଞ୍ଚିବାର କ୍ଷେତ ଗଢ଼ି, ଲକ୍ଷ୍ମୀ ପାଦପଣ ଦାଣ୍ଡି ମାଳି!
ଅଚ୍ଛୋଦ ତଡ଼ାଗେ ଯହିଁ ଖେଳୁଥିଲେ କୁମୁଦକହ୍ଲାର
ଜୀବନର ମନ୍ଦାକିନୀ ତୋଳେ ଆଜି ବିଷର ଜୁଆର
କିଏ ତୁମେ ସତ କହ, ଋତ୍ୱିକ ନା କାପାଳିକ ?
କି'ଣ ଚାହଁ ତୁମେ ?
ଶାନ୍ତିର କପୋତ ଅବା ଯୁଦ୍ଧର ଛଞ୍ଚାଣ ! (ବାଲ୍‌ଆପାଲ)

କାହିଁକି ଲାଗିବ ଯୁଦ୍ଧ
ଯେଉଁ ଯୁଦ୍ଧ ଜିଣି ହୁଏ ନାହିଁ ?
× × × ଏ ମାଟିର ଧରା ଛାଡ଼ି ନକ୍ଷତ୍ର ଅଂଗନେ
ଯୁଦ୍ଧର କାହାଳୀ ଶୁଭେ ।।
ହୁଏତ ବା ସୃଷ୍ଟି ହେବ ନାଶ
କିଂତୁ କ'ଣ ମରିଯିବ ଧରା ?
ଉଠିବ ନୂତନ ତରୁ ଫଳ, ଫୁଲ, ଲତା
ଚେର ମୂଳେ ଶୋଷି ନେଇ ସାର—
ମଣିଷର ସ୍ନାୟୁ ଓ ଶିରାରୁ × × × (ଶେଷ ଯୁଦ୍ଧ)

**ତଳ :**

'ବାଜିରାଉତ' ଖଣ୍ଡକାବ୍ୟଟି ପ୍ରଥମେ ରଚିତ ହୁଏ ୧୯୩୮ରେ ଓ ଏହା ପୁସ୍ତକାକାରରେ ପ୍ରକାଶିତ ହୁଏ ୧୯୪୬ରେ । ୧୯୪୩ରେ ପ୍ରକାଶ ପାଏ ତା'ର ପରିବର୍ଦ୍ଧିତ ଓ ପରିପୂର୍ଣ୍ଣ ରୂପ । ଗଡ଼ଜାତ ପ୍ରଜାଆନ୍ଦୋଳନ ପରିପ୍ରେକ୍ଷୀରେ ବାଜିରାଉତର ବଳିଦାନ (୧୯୩ ) ସଚ୍ଚିଦାନନ୍ଦଙ୍କ ବୈପ୍ଳବିକ ଚିନ୍ତାଧାରାକୁ ଏକ ବଳିଷ୍ଠ ମୋଡ଼ ଓ ପ୍ରାଣଶକ୍ତି ଦାନ କରିଛି । 'ଅଭିଯାନ' ପର୍ଯ୍ୟାୟର କେତୋଟି କବିତାରେ ଏବଂ ଅନନ୍ତ ପଟ୍ଟନାୟକଙ୍କ ସହ ମିଳିତ 'ରକ୍ତଶିଖା' କାବ୍ୟଗ୍ରନ୍ଥରେ ରାଜଶକ୍ତିର ଶୋଷଣ ଓ ଅତ୍ୟାଚାରର ବିରୁଦ୍ଧରେ କବିଙ୍କର ବିଦ୍ରୋହାତ୍ମକ ସ୍ୱର ଶୁଭିଥିଲା । ବାଜିରାଉତର ଅକଳ୍ପିତ ବଳିଦାନ ସେହି କାବ୍ୟ-

ଚିନ୍ତନରେ ସତେକି ପୂର୍ଣ୍ଣାହୁତି ପ୍ରଦାନ କଲା । ଅବଶ୍ୟ କାବ୍ୟଗ୍ରନ୍ଥଟିରେ ବାଜିରାଉତ ଉପସ୍ଥାପନ ଓ ଆବେଦନ ଦୃଷ୍ଟିରୁ ଭିନ୍ନ ଏକ କଳା-ସଂଗତ କାବ୍ୟିକରୂପ ପରିଗ୍ରହଣ କରିଛି ।

ପରାଧୀନ ଭାରତବର୍ଷରେ ଐତିହାସିକ ନାଟକ, ଦେଶାତ୍ମବୋଧକ କାବ୍ୟ-କବିତା, ଗାଥା ଗୀତିକାର ଦୀର୍ଘ ପରମ୍ପରାରେ 'ବାଜିରାଉତ' ଏକ ଉଜ୍ଜ୍ୱଳ ଅଧ୍ୟାୟ । ଏକଦା କିଶୋର ଧର୍ମପଦ, ନଚିକେତା ଏବଂ ବହୁପରେ ସନାତନ (ଗଡ଼ନାୟକ, ରାମକୃଷ୍ଣ ନନ୍ଦଙ୍କ କବିତା ଏବଂ ପ୍ରସନ୍ନ କୁମାର ମିଶ୍ରଙ୍କ 'ଠିକ ତାଲରେ ସନାତନ' କାବ୍ୟଗ୍ରନ୍ଥ) କାବ୍ୟିକ ମାନ୍ୟତା ପାଇଥିଲେ । 'ବାଜିରାଉତ'ର ବାଜିରାଉତ ସେଇ ଧାରାରେ ଏକ ଭିନ୍ନ ରୂପାୟନ । କିଶୋର-ନାୟକଟି ଏଣୁ କବିର ଭାଷାରେ—'ଖାଲି ବ୍ୟକ୍ତିବିଶେଷ ନୁହେଁ, ସେ ଏ ଦେଶର ବୃହତ୍ତମ ଅନୁଷ୍ଠାନ' ।

ଅତ୍ୟାଚାରୀ ଶାସନ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିଥିବା ବାଜିରାଉତ ହୋଇପାରେ ଏଣୁ ସବୁଦେଶର, ସବୁକାଳର ତ୍ୟାଗ ଓ ଆତ୍ମବଳିଦାନର ଏକ ଜ୍ୱଳନ୍ତ ନିଦର୍ଶନ । ଅର୍ଦ୍ଧଶତାବ୍ଦୀ ଗତ ହେଲେ ବି ଆତ୍ମବଳିଦାନର ସେଇ ପବିତ୍ର ମୁହୂର୍ତ୍ତଟି, ପ୍ରତିବାଦର ସେଇ ସ୍ପର୍ଦ୍ଧିତ ଉଚ୍ଚାରଣଟି ଏବେବି ଚେତନାକୁ ବାଷ୍ପାକୁଳ କରେ । ଏଇ ନିଷ୍ପାପ କିଶୋର ଚରିତ୍ରର ତ୍ୟାଗକୁ ଉପଜୀବ୍ୟ କରି କବି ସ୍ୱକୀୟ କାବ୍ୟ ଇସ୍ତାହାର ବାଢ଼ିଛନ୍ତି ଏବଂ ବାଜିରାଉତକୁ ମୃତ୍ୟୁହୀନ ପ୍ରାଣରୂପେ ପ୍ରତିଷ୍ଠା ଦେଇଛନ୍ତି । ଏହି କାବ୍ୟଗ୍ରନ୍ଥଟି ଦେଶବନ୍ଦନା, ମଣିଷ ବନ୍ଦନା ଓ ବିଶ୍ୱ ସଂପ୍ରୀତିର ଏକ ମୁଗ୍ଧ ସମର୍ପିତ କାବ୍ୟାୟନ ।

ଗଠନ :

ପାଞ୍ଚଗୋଟି ପରିଚ୍ଛେଦ ବା ସ୍ତବକରେ ବିନ୍ୟସ୍ତ 'ବାଜିରାଉତ' ଖଣ୍ଡକାବ୍ୟଟି ଏହି କିଶୋର ଚରିତକୁ କେନ୍ଦ୍ରକରି ସଂଘଟିତ ଘଟଣାବିନ୍ୟାସର ଚିକନଖିଆ ବର୍ଣ୍ଣନା ନୁହେଁ; ବରଂ ତା'ର ଆତ୍ମବଳିଦାନ ନେଇ କାବ୍ୟସ୍ୱରର ପ୍ରତିକ୍ରିୟା ଓ ଚିନ୍ତନ । ରକ୍ତମାଂସଧାରୀ ବାଜିରାଉତ ଏଣୁ ଏକ ପ୍ରତୀକ ବା ରୂପକରେ ରୂପାନ୍ତରିତ । ବହୁ ବର୍ଷପରେ ସେ ହୋଇଯିବ ମିଥ୍ । ସେ ଯେମିତି ସଚ୍ଚିରାଉତରାୟଙ୍କ ସମକାଳର କାବ୍ୟପୁରୁଷ : କାବ୍ୟ ଇସ୍ତାହାରର ଭରକେନ୍ଦ୍ର ଓ ଆମୁଖ ।

ପ୍ରଥମ ସ୍ତବକରେ ବାଜିରାଉତ କପରି ମୃତ୍ୟୁହୀନ ପ୍ରାଣ, ମୃତ୍ୟୁଠାରୁ ମହାନ୍ ଓ ମହନ୍ନ, ଦ୍ୱିତୀୟ ସ୍ତବକରେ ଆଗାମୀ କାଳର ସବୁ ଦୁର୍ଦ୍ଦିନ ଓ ବିପ୍ଳବ ପାଇଁ ସେ କପରି

ପ୍ରେରଣାର ଉତ୍ସ ଏବଂ ପ୍ରତିଟି ଦୁର୍ଦ୍ଦିନରେ ଅବଶ୍ୟ ତା'ର ପୁନର୍ଜନ୍ମ ହେବ—ଏପରି ଏକ ଦ୍ରଷ୍ଟାସୁଲଭ ଅଭୀପ୍ସା ରୂପାୟିତ ହୋଇଅଛି ।

ତୃତୀୟ ସ୍ତବକରେ ପଥଭ୍ରଷ୍ଟ ଜନତାକୁ ସମ୍ବୋଧନ କରି ବାଜି ରାଉତର ଜନ୍ମସ୍ଥଳୀ ଓ ସମାଧି କିପରି ମହାନ୍ ତୀର୍ଥସ୍ଥାନ ତା'ର ଆବେଗପ୍ରବଣ ବର୍ଣ୍ଣନା । ଚତୁର୍ଥ ସ୍ତବକରେ ସତୀର୍ଥ କଳ୍ପନା-ବିଳାସୀ କବିଙ୍କୁ ମୃତ୍ତିକାମନସ୍କ ହେବାର ତେଜୋଦୀପ୍ତ ଆହ୍ୱାନ ଅବକାଶରେ କବି ସ୍ୱମୃତ୍ତିକା ସଂସ୍ପର୍ଶ ଓ ମାନବ ବନ୍ଦନା ପରିପ୍ଳୁତ କାବ୍ୟ ଆଭିମୁଖ୍ୟର ଇସ୍ତାହାର ବାଢ଼ିଛନ୍ତି । ପଞ୍ଚମ ସ୍ତବକରେ ପୁତ୍ରହରା ରୋରୁଦ୍ୟମାନା ଜନନୀକୁ ସାନ୍ତ୍ୱନା ଦେବା ଲକ୍ଷ୍ୟରେ ମାତୃତ୍ୱର ମହିମାଗାନ ସହ କବି ବାଜିରାଉତକୁ 'ଚିର ମୁକ୍ତିବୀଜ', 'ବିଶ୍ୱର ପିପାସା' ବୋଲି ଅଭିହିତ କରିଛନ୍ତି । ବିଭିନ୍ନ ପର୍ଯ୍ୟାୟକୁ ବିସ୍ତାରିତ ଭାବେ ବିଶ୍ଳେଷଣ କରି 'ବାଜିରାଉତ'ର ବୈଶିଷ୍ଟ୍ୟ ଓ ଶିଳ୍ପମତ୍ତାକୁ ନିର୍ଣ୍ଣୟ କରାଯାଇପାରେ ।

ପାଞ୍ଚ :

ବାଜିରାଉତ ସହ ଅନ୍ୟ ଶହୀଦମାନଙ୍କ ଶବ ସତ୍କାରର ମାର୍ମିକ ପରିବେଶରେ ପ୍ରଜ୍ୱଳିତ 'ଚିତା'କୁ ନେଇ କବି କାବ୍ୟର ମଙ୍ଗଳାଚରଣ ଗାନ କରିଛନ୍ତି । ସଂଗ୍ରାମରେ ବଳି ପଡ଼ିଥିବା ସେଇ ତ୍ୟାଗପୂତ ବାଜିରାଉତମାନଙ୍କ ଚିତାର ଲେଲିହାନ ଶିଖା ଏଣୁ କବିଙ୍କୁ ଦିଶିଛି 'ଅଲିଭା ମୁକ୍ତିର ସଳିତା'ପରି । ପରାଧୀନ ଓ ରାଜତନ୍ତ୍ର ତଥା ବ୍ରିଟିଶ ଶାସିତ ଦେଶ କବିର ଦୃଷ୍ଟିରେ ଯେମିତି 'ଉଆଁସ ପାଚେରି ଘେରା ଅନ୍ଧାର ଦେଉଳ' ଏବଂ ଚତୁର୍ଦ୍ଦିଗେ ତା'ର 'ପ୍ରେତାୟିତ ଅନ୍ଧରାତି' ଏବଂ ସେ ରାତିର ଅବସାନ ପାଇଁ ବାଜିରାଉତର ଆତ୍ମବଳି ଏଣୁ କବିଙ୍କ ଭାଷାରେ 'ଶେଷ ଦୀପାୟନ' । ଚିତାର ସେ ଲେଲିହାନ ଶିଖା—'ଶତାବ୍ଦୀର ଶ୍ରେଷ୍ଠ ଫୁଲ', 'ମୁକୁଳିତ ମୃତ୍ୟୁହୀନ ପ୍ରାଣ' । କବିଙ୍କ ଦୃଷ୍ଟିରେ ନଦୀର ନାଆ ହୋଇଯାଏ ଦେଶ ଏବଂ ଯା'ର ମଙ୍ଗୁଆଳ ଏଇ କ୍ଷୁଦ୍ର ମହାନ୍ ବାଳକ । ତା'ର ମୃତ୍ୟୁ ଏଣୁ 'ମରଣେ ସ୍ୱରୁ ସ୍ୱୟଂବର' । ଆତ୍ମଦାନ କରି ସେ ଆପଣା ମୃତ୍ୟୁରେ କିନ୍ତୁ ପ୍ରତିଷ୍ଠିତ ହୋଇଛି । 'ରଜନୀର ଲୁପ୍ତ ପାଦଟୀକା' ଉପରେ ସେ ହିଁ ଏକା ଲେଖେ 'ଉଷାର ଗୋପନ ଅର୍ଥ' । ବାଜିରାଉତ ଚରିତ୍ରର ମହାନତାକୁ ପ୍ରତିପାଦନ କରିବାକୁ ଯାଇ କବି ପ୍ରକୃତି ଓ ପରିପାର୍ଶ୍ୱରୁ ତା' ପାଇଁ ରୂପକ ଓ ଉପମା ସଂଗ୍ରହ କରିଛନ୍ତି । କ୍ଷୁଦ୍ରତା ଭିତରେ ବିରାଟତା ଓ ମହାନତାର ଆବାହନ ଓ ଅଧିଷ୍ଠାନ କରିଛନ୍ତି । ଝଡ଼, ମେଘ, କଳାରାତିଠୁଁ ସେ ଅଧିକ ଦୁର୍ଦ୍ଧର୍ଷ, ଅଧିକ ଅମାନିଆ—ସେ ମୁକ୍ତିର ଏକ ଚେତନା, ଏକ ବାର୍ତ୍ତାବହ—ଅଗ୍ରଗାମୀ ଦୂତ : ଜୀବନ ଯାହାକୁ ଧରିରଖିପାରେ ନାହିଁ, ଆଉ ମୃତ୍ୟୁ ଯେଉଁ ମହାଜୀବନକୁ ବାଟ ଛାଡ଼ିଦିଏ । କବିଙ୍କ ଛନ୍ଦମୟ ଚିତ୍ରରୂପ ଏହିପରି :

ଝଡ଼ଠାରୁ ସେ ଯେ ବଡ଼, ମେଘଠାରୁ ଆହୁରି ସେ କଳା
ସାନ ଦେହେ ଖେଳେ ତାର ଜୀବନର ଅଲକ୍ଷ ଚପଳା ।
ଯୁଝେ ପୁଣି ଏଡ଼େ ସେ ବିପଟ
ଜୀବନ ପାରିଲା ନାହିଁ ରଖି ତାକୁ
ମୃତ୍ୟୁ ତାରେ ଛାଡ଼ିଦେଲା ବାଟ ।

ସେ ନୂଆ ନିର୍ମାଣର ବାର୍ତ୍ତାବହ । ଏଣୁ 'ଈଶ୍ୱର ଦୁରନ୍ତ ଶିଶୁ', 'ମୃତ୍ତିକାର ତର ସ୍ତନଂଧୟ', 'ସେ ତ ରୂପକାର, ଏ ପତିତ ଦଗ୍ଧ ମୃତ୍ତିକାର', 'ସେ ରକ୍ତ ଯୌବନ', 'ସୃଜନର ନୂଆ ଭଗିରଥୀ', 'କ୍ରାନ୍ତିର ସାରଥୀ', 'ରକ୍ତ କରବୀ', ବିଧବା ବନର ସୀମନ୍ତେ ସିଂଦୂରର ପରି 'ରକ୍ତ-ତାର୍ଘ୍ୟ','ସତ୍ୟ ଶିବ ସୁନ୍ଦର'ର ଜନ୍ମଦାତା, 'ନବ ବକୁଳର କଳି', 'ଫାଲଗୁନୀ', 'ଅମର ମୃତ୍ୟୁର ଶିଳ୍ପୀ', 'ଶ୍ମଶାନ ମୃତ୍ୟୁମିଶା ଅମର କବିତା' ଆଦି ଚିତ୍ର, ରୂପକ, ଉପମା, ଅନୁସଙ୍ଗ ଆଦିରେ ବାଜିରାଉତର ସୃଜନାତ୍ମକ ମୃତ୍ୟୁହୀନ ରୂପ, ଆଗାମୀ-କାଳର ବାର୍ତ୍ତାବହର ପରିଚୟ ଚର୍ଚ୍ଚିତ ହୋଇଛି । ବାଜିରାଉତର ପଳିତ ଧଡମାନ ରକ୍ତମାଂସ ଓ ଅସ୍ଥିର ବାରେଣ୍ଟି ଫାଲଗୁନ ବସନ୍ତର ନବ ଅଭ୍ୟୁଦୟର ବାହକ । ତା' କଳୁରେ ପୁଷ୍ଟ ମୃତ୍ତିକାରେ ଅଙ୍କୁରିତ ବୃକ୍ଷ ଏଣୁ ଛୁଇଁବ ଆକାଶ ।

କବି ପ୍ରଶ୍ନ କରନ୍ତି --

ଯେବେ ପଦ୍ମ ଫୁଲ
ଫୁଟିବ ଏ ଧରଣୀରେ ମୃତ୍ତିକାର ଶାଖାରେ ମୁକୁଳି
ତୁମକୁ ତା' କରିବ ସ୍ମରଣ
ଅଧୁନା ଷଡ଼ିଶ୍ଚ, ତୁ ଚଳୁଚ୍ଚୀରେ
ତାହାର ତୋରଣ
ଚୁମିବ ଆକାଶ
ତବ ପଦଚିହ୍ନ ଦେହେ ଖୋଜେ ତାହା ଜନ୍ମ ଅବକାଶ ।

କିମ୍ବା

ଅତୀତର ବାରେଣ୍ଟି ଫାଲ୍‌ଗୁନ
ପୋଡ଼ି ଯଦି ଯିବ ଯାଉ ଏ ଚିତାରେ ଯଥା ଶୁଷ୍କତୃଣ ।
ନାହିଁ କ୍ଷତି, ନାହିଁ ଆରେ ଭୟ
ହବ, ହବ ପୁଣି ଦିନେ ବସନ୍ତର ଚିର ଅଭ୍ୟୁଦୟ ।

ବାଜିରାଉତର ଚିତାଭସ୍ମ, ତା'ର ରକ୍ତମାଂସ ସର୍ବୋପରି ବଳିପ୍ରାପ୍ତ ଦେହର ରୂପାନ୍ତର ନେଇ ନୂଆ ସୃଜନ ସ୍ୱପ୍ନରେ ମଗ୍ନ ଓ ବିହ୍ୱଳ କବିଦୃଷ୍ଟି । କ୍ଷୁଦ୍ର ମଧ୍ୟରେ ବିରାଟତ୍ୱର

କଳନା, ମୃତ୍ୟୁ ଭିତରେ ସୃଜନ ସ୍ୱପ୍ନ ଓ ଜୀବନର ମହାଉତ୍ସବର ସମ୍ଭୋଗର ଏକ ନୂଆ ସୂର୍ଯ୍ୟର ଲୋହିତ ଉଷାର ଉଦୟନର ପରିକଳ୍ପନାରେ ଶ୍ରେଣୀ ଶୋଷଣହୀନ ପୃଥିବୀର ପ୍ରାଣପ୍ରତିଷ୍ଠାର ସ୍ୱର ଏହି ପ୍ରଥମ ସ୍ତବକରେ ରୂପାୟିତ ହୋଇଛି । ଭାରତୀୟ ସ୍ୱାଧୀନତା ସଂଗ୍ରାମର ଛିଟା ଏଥିରେ ଥିଲେ ବି ତାହା ବିଶ୍ୱମାନବର ମୁକ୍ତି-ସ୍ୱପ୍ନ ଆଡ଼କୁ ମୁହାଁଇ ଯାଇଛି । ବାଜିରାଉତ ସତେ ଯେମିତି ଶ୍ରେଣୀ ଶୋଷଣହୀନ ସମାଜର, ସତ୍ୟ-ଶିବ-ସୁନ୍ଦରର ସ୍ରୋତ ବୋହୁଥିବା ଆଗାମୀକାଲିର ନୂତନ ପୃଥିବୀର ସୂତ୍ରଧର, ଉଦ୍‌ଗାତା ।

କବିତାର ଦ୍ୱିତୀୟ ସ୍ତବକରେ ବାଜିରାଉତର ସଂଗ୍ରାମ ଏବଂ ଆତ୍ମବଳିଦାନର କାହାଣୀ ଅନାଗତ ସମୟ ପାଇଁ ପ୍ରେରଣାର ଉତ୍ସ ହେବ ଏବଂ ତାହାର ଯାବତୀୟ ଦୁର୍ଦ୍ଦିନରେ ଏହି ସତ୍ତାର ଆତ୍ମପ୍ରକାଶ ଘଟିବ—କବି ବଡ଼ ଆସ୍ଥା ଓ ବିଶ୍ୱାସର ସହ ସେଇ ଅନାଗତର ଆବାହନା କରିଛନ୍ତି । ସେଇ ଲଗ୍ନର ପରିକଳ୍ପନା ଓ ବନ୍ଦନାଗାନରେ କବି-ଲେଖନୀ ମୁଖର । ଯେତେଦିନଯାଏ ଯନ୍ତ୍ରଣାର ଦାବଦାହନରେ ଏ ମାଟି ତପ୍ତ ଓ ଆହତ—ସେଇ ମାଟିରେ ବାଜିରାଉତର ବାରମ୍ବାର ନବଜନ୍ମକୁ ପ୍ରତୀକ୍ଷା କରି ରହିବେ ବୋଲି କବିଙ୍କ ଉଦ୍‌ଘୋଷଣା । ବାଜିରାଉତକୁ କବି 'ଯୌବନର ରକ୍ତ ଅଶ୍ୱ', 'ଶତାବ୍ଦୀର ହେ ମୂକସାଧନା', 'ଅଗ୍ନି ବଳାକା', 'ଚନ୍ଦ୍ରଚୂଡ଼', 'ମୂକତର କଣ୍ଠ' ବୋଲି ବିଭିନ୍ନ ପଂକ୍ତିରେ ଅଭିହିତ କରିଛନ୍ତି । ବାଜିରାଉତ ଏଣୁ 'ଆଜି' ନୁହେଁ; ସେ ଦୁରନ୍ତ ଅନାଗତ ଭବିଷ୍ୟତର ସ୍ୱପ୍ନ ଓ ସଂଭାବନା ଭିତରେ ରହେ ।

ଯୌବନର ରକ୍ତ ଅଶ୍ୱ ! ଶତାବ୍ଦୀର ହେ ମୂକ ସାଧନା !!
ଆଜଠାରୁ ବହୁବର୍ଷ ପରେ
କର୍ମକ୍ଳାଂତ ଗୋଧୂଳି ପ୍ରହରେ
ତୁମେ ଯେବେ ଆସିବ ଗୋ ଫେରି
ମୃତ୍ୟୁଜାଲ ଠେଲି
ମୁଁ ତୁମରେ ଚିହ୍ନି ନେବି ଆଗେ । × ×
ଶତଶତ କବି ହାତେ ପଠାଇବି ମୁଁ ତବ ବନ୍ଦନା
ମୁଁ ପୁଣି ଉଠିବି ଜାଇ ଛିନ୍ନ କରି ମୃତ୍ୟୁର ବଂଧନ !
ପ୍ରଭାତର ଦେବାଳୟ ଶିରୁ
ତବ ସମାଗମ ଶଂଖ ମୁଖରିବ ଦିଗନ୍ତର ତୀରୁ
× × × ହେ ଅଗ୍ନି ବଳାକା
ପାରି ହୋଇ ତମିସ୍ରାର ଗ୍ରୀଷ୍ମାହତ, ନଷ୍ଟ ଉପତ୍ୟକା
ସେଇକ୍ଷଣି ତୁମେ
ଝଡ଼ଣାର ଡେଉଁରେ ଯିବ ଆଂଦୋଳି ଏ ଦୀର୍ଣ୍ଣ ମରୁଭୂମେ !

ପ୍ରତିଟି ଆଗାମୀକାଲିରେ 'ଦୁର୍ଯ୍ୟୋଗର ସଂକୁଳ ଗର୍ଜନ', ମଣିଷର ଆର୍ତ୍ତି କଂଠରୁଦ୍ଧ କରୁଥିବା 'ପଶୁତ୍ୱର ଊର୍ଦ୍ଧ୍ୱ ହ୍ରେଷା', ଦାନବୀୟ ଅତ୍ୟାଚ୍ଚାର, ଲୁଳିତବକ୍ଷା ମା—କ୍ଷୁଧାଶୀର୍ଣ୍ଣ ଶିଶୁର କ୍ଷୁଧା ଓ ଯନ୍ତ୍ରଣାର ଅବସାନ ପାଇଁ ମୃତ୍ୟୁର ଶୃଂଖଳ ଏଡ଼ାଇ, 'ନାଶପାଶ ଚୂର' ବାଳାରୁଣ ନବଜନ୍ମାନ୍ତର ନେଇ ଏ ମାଟିରେ ଭୂମିଷ୍ଠ ହେବ ବୋଲି କବି ଗଭୀର ପ୍ରତ୍ୟୟ ଓ ସଂଭାବନାର ସ୍ୱର ତୋଳିଛନ୍ତି । ଏ ସ୍ତବକରେ କବିଙ୍କର ଅନାଗତ ଆଗାମୀ ପାଇଁ ଦୃଷ୍ଟି ଓ ପ୍ରତ୍ୟୟ, ନିଖିଳ ବେଦନାର ଅପନୋଦନ ପାଇଁ ଏକ ଶ୍ରଦ୍ଧାମୟ ଆକୂତି ପ୍ରତିଫଳିତ ହୋଇଛି । ପ୍ରତିଟି ଦୁର୍ଦ୍ଦିନ ପାଇଁ ବାଳାରୁଣ ଯେ ଅସ୍ଥା, ବିଶ୍ୱାସଜନିତ ଗଭୀର ପ୍ରେରଣାର ଉତ୍ସ—ଏହା ଅନ୍ୟ ଭାବରେ ହୁଏତ କବିଙ୍କର ବକ୍ତବ୍ୟ ।

କବିତାର ତୃତୀୟ ସ୍ତବକରେ ବାଜିରାଉତର ସମାଧି ପୀଠ ଏକ ପବିତ୍ର ତୀର୍ଥଭୂମି ବୋଲି ପଥଭ୍ରଷ୍ଟ ବାଟୋଇଙ୍କୁ ଅନ୍ୟ ଅର୍ଥରେ ଦେଶର ଜନସାଧାରଣଙ୍କୁ ଅତି ଭାବବିହ୍ୱଳ ଭାବେ କବି କହିଛନ୍ତି । ସେଇ ମୃତ୍ୟୁହୀନ ପ୍ରାଣ ପ୍ରକୃତରେ ମରିପାରେ ନାହିଁ, ବରଂ ଅଭିମାନ କରି ଏଠି ନିଦ୍ରାରତ ବୋଲି କବିଙ୍କ ପରିକଳ୍ପନା । ଏଇ ତୃତୀୟ ସ୍ତବକର ପଂକ୍ତିରେ ବା ଭାଷ୍ୟରେ ପ୍ରଥମ ଓ ଦ୍ୱିତୀୟ ସ୍ତବକର ଅନୁରଣନ ରହିଛି । କବିଙ୍କର ଉଚ୍ଚାରଣର ଦୁଇଟି ପଂକ୍ତି ଏଠାରେ ସ୍ତବକଟିର ଭାବଗତ ପରିଚିତି ପାଇଁ ଉପସ୍ଥାପିତ କରାଯାଇପାରେ—

ପାଂଥ ! ବାଟର ମଥା କରି ନତ,
ଏ ଯେ ମହାତୀର୍ଥ ଭୂଇଁ
ନୁହେଁ ଏହା ଖାଲି ରାଜପଥ ।

କିଂବା,

ଧ୍ୱନୁଥିଛି ତାହାର ଆହ୍ୱାନ
ମରଣ କରିଛି ତାରେ ମହୀୟାନ ପୁଣି ସତ୍ୟବାନ
ଶୁଚିମତୀ ସାବିତ୍ରୀର ପରି,
ତାର ଛିନ୍ନ କେତନର ଆଲୋଡ଼ନ ନିଜ ଭାଲେ ଧରି
ଶତ ନବାଗତ
ଅବତରି ଆସେ ଏଥି, ଗାଇ ଗାଇ ତାହାର ସ୍ୱାଗତ ।।

ଏ ଖଣ୍ଡକାବ୍ୟର ଚତୁର୍ଥ ସ୍ତବକ ଏକାନ୍ତଭାବେ ତାତ୍ପର୍ଯ୍ୟପୂର୍ଣ୍ଣ । ସେହି ଦୃଷ୍ଟିରୁ ଦେଖି ଏଥିରେ ପ୍ରକଟିତ ହୋଇଛି ସଚ୍ଚିରାଉତରାୟଙ୍କର ପ୍ରଚଳିତ ପରମ୍ପରାରୁ ମୁକ୍ତ ଏକ ଛିନ୍ନ କାବ୍ୟ ଇସ୍ତାହାର । ଅତୀତର ସାମନ୍ତବାଦୀ ଦରବାରୀ ଭୋଗବିଳାସିତ

କାବ୍ୟ ପରମ୍ପରା ଏବଂ ବିଂଶଶତାବ୍ଦୀର ଦ୍ୱିତୀୟ ଚରଣ ପ୍ରାରମ୍ଭରେ ବିକଶିତ ସବୁଜ କାବ୍ୟଧାରାର ସ୍ୱପ୍ନ ଓ କଳ୍ପନାର ବିଳାସ ପ୍ରତି ଗଭୀର ବ୍ୟଙ୍ଗ ଓ ପ୍ରତିବାଦ ଏଥିରେ ଫୁଟି ଉଠିଛି । ମୃତ୍ତିକା ଓ ମଣିଷ—ଏମାନଙ୍କ ହସକାନ୍ଦ, ଶୋକଶୋଷ, ଅଭାବକଷଣ ହିଁ ହେବ କବିତାର ଉପାଦାନ ବୋଲି କବିଙ୍କ ସ୍ପର୍ଦ୍ଧିତ ଘୋଷଣା । ଆଞ୍ଚଳିକ ରଙ୍ଗ ଓ ସ୍ୱକୀୟ କାବ୍ୟଧାରାର ପରିବର୍ତ୍ତନର ସଂବାଦ ଓ ନୂତନ ଇସ୍ତାହାର ଏଥିରେ ପ୍ରକାଶ ପାଇଥିଲେ ହେଁ ବର୍ତ୍ତମାନର କଥା, ଆର୍ତ୍ତି ଓ ମୁକ୍ତି ହିଁ ଯେମିତି ଏଥିରେ ଫୁଟି ଉଠିଛି । ସଚ୍ଚିଦାନନ୍ଦ ସଂବୋଧନ କରିଛନ୍ତି ଯୁବକ, ସମଧର୍ମୀ ଓ ସତୀର୍ଥ କବିକୁଳକୁ, ଆହ୍ୱାନ କରିଛନ୍ତି ନିଜର ଦୃପ୍ତ କାବ୍ୟପୁରୁଷକୁ ବି । ସଂବୋଧନଗତ ଆହ୍ୱାନ ଓ ବ୍ୟଙ୍ଗବିଦ୍ରୂପ ବାଣରେ କବି ହୃଦୟର ଆବେଗ ଓ ଦରଦ, କ୍ରୋଧ ଓ ପ୍ରତିବାଦ, ସ୍ୱପ୍ନ ଓ ଅଙ୍ଗୀକାର ଅତି କଳାସଂଗତ ଓ ତୀକ୍ଷ୍ଣ ଭାବେ ଫୁଟି ଉଠିଛି । ଏଠାରେ ମଧ୍ୟ ସେଇ ଚିତାଗ୍ନି, ଅଗ୍ନିଫୁଲ—ଦେଇ ଲେଲିହାନ ଶିଖାର ସ୍ୱରୂପ—'ଧୂପଦୀପ ସମ ଜଳି/ଜାଳିବାର ଶୁଭ୍ରଜ୍ୟୋତି ସୁଧା/ପରକାଶ ଲଭିଅଛୁ ତହିଁ ।' ବାଜିରାଉତର ଆତ୍ମବଳିଦାନ ଏଣୁ : 'ଜଳିବାର ଏ ମହା ତପସ୍ୟା/ନିଜେ ସେ ଜଳିଛୁ ଜାଳି କୋଟିବୁକେ/ଜ୍ୱଳନ ପିପାସା !!' ପ୍ରଚଳିତ ପରମ୍ପରାର କବି ଓ କାବ୍ୟଧାରା ଏଣୁ ଏଠାରେ ଗଭୀର ବ୍ୟଙ୍ଗ ଓ ପ୍ରତିବାଦର ଶରବ୍ୟ । 'କମଳବିଳାସୀ କବି', 'ସ୍ୱପନ ଖଚିତ ଅଳକାର ପ୍ରବାଳ ତୋରଣ', 'ଜଉଗଡ଼', 'ମହମର ସ୍ତମ୍ଭ', 'ଦେଭୁକ୍ ଦେଶ', 'ଶୂନ୍ୟଗର୍ଭ ସ୍ୱପନର ମସୃଣ ମୁକୁଳ', 'କୁଞ୍ଜବନ', 'ଆକାଶୀ ପ୍ରତିମା', 'ବୃହନ୍ନଳା' ଆଦି ଶବ୍ଦବିଶେଷ, ରୂପକ ଓ ଉପମା ବିନ୍ୟାସରେ କବି ସାମନ୍ତବାଦୀ ସ୍ୱପ୍ନ ଓ କଳ୍ପନା ବିଳାସକୁ ଅସ୍ୱୀକାର କରିଛନ୍ତି, ବିଦ୍ରୂପ ହାଣିଛନ୍ତି । ଯେଉଁ କାବ୍ୟ-ପରମ୍ପରାର ଆଦିକବି ଦିନେ କ୍ରୌଞ୍ଚ ମିଥୁନର ଦୁଃଖରେ ତା'ର ଲେଖନୀକୁ ଲୋତକାର୍ଦ୍ର କରିଥିଲେ, ସେଇ ପରମ୍ପରାର ଦାୟାଦ ସାଂପ୍ରତିକ କବି ତା'ର ଅଶ୍ରୁର ବନ୍ୟାରେ ଶୋଷଣକଷଣପିଷ୍ଟ ଅଭାବୀ ମଣିଷର ଦୁଃଖ ଯାତନାକୁ ଧୋଇବାର ବେଳ ଉପଗତ ହୋଇଛି ବୋଲି ଆହ୍ୱାନ ଦେଇଛନ୍ତି । ମଣିଷ ପାଇଁ କବିର କାରୁଣ୍ୟ ଓ ସମ୍ବେଦନାର ଅଶ୍ରୁବନ୍ୟା ଯେଉଁ ପ୍ଲାବନ ଆଣିବ ସେଥିରେ ସବୁ ଫମ୍ପା ଆଭିଜାତ୍ୟ ଓ କଳ୍ପନାର ମିନାର ଭୂଶୁଡ଼ିଯିବ ବୋଲି କବିଙ୍କର ପରିକଳ୍ପନା ଓ ଉଚ୍ଚାରଣ । ସ୍ୱପ୍ନ ଓ କଳ୍ପନାବିଳାସୀ କବି ପାଇଁ ସୁଦୂରର କେଉଁ କୁଞ୍ଜବନ ଆଶ୍ରୟର ନୀଡ଼ ହେବନାହିଁ । ଏହି ମୃତ୍ତିକା ଓ ମଣିଷ ଭିତରେ ତାକୁ ହିଁ ଜୀବନର, କବିତାର ଅର୍ଥ, ରସ, ଉତ୍ସ, ଉପାଦାନ ଖୋଜିବାକୁ ପଡ଼ିବ । କବିଙ୍କ ଦୃପ୍ତ ଉଚ୍ଚାରଣ—

ହେ ମହାପ୍ଲାବନ
ସ୍ୱପନଖଚିତ ତବ ଅଳକାର ପ୍ରବାଳ ତୋରଣ
ଦେଉ ଧ୍ୱଂସ କରି
ସଂଗେ ତା'ର ଯାଉ ଭାଜି ମରି

ଭ୍ରମଣ କଳ୍ପନା ନାଭି ଗଜଦାନ୍ତ ରଚିତ ମିନାର
ମୃତ୍ତିକାରେ ବ୍ୟଙ୍ଗକର ବୁଣେ ଯାହା ଘନ ଇନ୍ଦ୍ରଜାଲ୍ ।

ଆରେ ଆରେ ପଳାୟନ ପନ୍ଥୀ !
ପଳାଇବୁ କାହିଁ ଆଜ ଛିନ୍ନକରି ଧରଣୀର ଗ୍ରନ୍ଥୀ ?

ଲୁଚିବୁ ବା କାହିଁ
ମୃତ୍ତିକାର ଏତେ ଦାବି ପାରିବୁ କି ଆଜ ତୁ କାଟାଇ
କାହିଁ ଖୋଜୁ ନେବୁରେ ଆଶ୍ରୟ
ତୋର ସେଇ କୁଞ୍ଜବନ ଦେଇକି ସେ ପାରିବ ଅଭୟ ?

କିମ୍ବା

ଅସ୍ୱୀକାର କରିବୁ କେମନ
ମୃତ୍ତିକାର ଏତେ ଋଣ, ପୃଥିବୀର/ପ୍ରାଣଭରା ସ୍ତନ ?

ସମକାଳୀନ ପୃଥିବୀର ଅନ୍ୟ ଭୂଖଣ୍ଡରେ ଯେଉଁ ଶୋଷଣକଷଣ, ନିର୍ଯ୍ୟାତନାର ସଂବାଦ କବିଙ୍କୁ ମ୍ରିୟମାଣ କରିଛି, ତା'ର ଚିତ୍ର ସଂଯୋଜିତ କରି କବି ତାକୁ ବ୍ୟଙ୍ଗ-ବିଦ୍ରୂପ ଛଳରେ 'ନରଭକ୍ଷକ ସମାଜ', 'ନାରକୀ ସଭ୍ୟତା', 'ଧୌଦାଗରୀ ସଭ୍ୟତାର ହାଡ଼' ବୋଲି ଅଭିହିତ କରିଛନ୍ତି । ପୁଣି କଳ୍ପନାବିଳାସୀ କବି କପରି ସ୍ତନଜଘନ ଓ ମାଂସର ମର୍ମର ସ୍ୱପ୍ନ ଦେଖି ଇନ୍ଦ୍ରଧନୁ ରଚନା କରିଛି, କ୍ଷୁଧା ତୃଷ୍ଣା ଓ କଷଣର ଦାହ ତାକୁ ଛୁଇଁ ନାହିଁ—ସେଇ କବିପାଇଁ ଏହି ପର୍ଯ୍ୟାୟରେ ସ୍ଫୁରିତ ହୋଇଛି ମାନବଧର୍ମୀ ମନ୍ତ୍ରୀର ଉଚ୍ଚାରଣ । ଏ ଉଚ୍ଚାରଣର କାବ୍ୟଭାଷା ଏତେ ଆବେଗ ପ୍ରବଣ, ମାର୍ମିକ ଓ ଚିତ୍ରଧର୍ମୀ ଯେ ତାହା ଓଡ଼ିଆ କାବ୍ୟ ପରିମଣ୍ଡଳରେ ବର୍ଷ ବର୍ଷ ଧରି ସ୍ମରଣଯୋଗ୍ୟ ପଂକ୍ତି ଭାବେ କବିତାପ୍ରେମୀଙ୍କ କଣ୍ଠରେ ଉଚ୍ଚାରିତ ହୁଏ । ବହୁଚର୍ଚ୍ଚିତ ଓ କଳାବଂଗତ ଏହି ପଂକ୍ତି କେତୋଟି ହେଉଛନ୍ତି—

ପଥଭ୍ରାନ୍ତ କବି !
ଏତେଦିନ ସପନରେ ଲେଖିଅଛ ମାୟାମୃଗ ଛବି
ଏତେଦିନ ଗାଇଅଛ ତୁମେ
ଦ୍ରାକ୍ଷାର ସୀବରି ସ୍ତନ ପୂର୍ବ-ବାୟୁ କେଉଁସରି ଚୁମେ ।

ଦେଖିନ ଅନୂଢ଼ା ଦେହେ
ସନ୍ଧ୍ୟ ସନ୍ଧ୍ୟ ସ୍ୱେଦ, ଅନଶନ
ମଉଳାଚ ତନୁଶିରା, ଫୁଟିନାଇ କପରି ଯୌବନ ।

ମାଆର ଲୁଳିତ ସ୍ତନେ, ଶୁଷ୍କ ଚର୍ମେ
 ଶିଶୁ କେତେବାର
ଶୋଷି ପାଇ ନାଇ କ୍ଷୀର,
 ଝରଅଛୁ ଲହୁ ଧାରଧାର ।
ବଂଧ୍ୟା ଦେଶେ ସଂଧ୍ୟାବାୟୁ
 କାନ୍ଦଅଛୁ ଖାଲି ଆର୍ତ୍ତନାଦେ × × ×

 କିଂବା

ଖାଲି ତମ ଅଭିଜାତ ମନ
ଆଜଯାକେ ଦେଖିଅଛୁ ଅସ୍ଥିସ୍ନାନ ମର୍ମର ସ୍ୱପନ
ଅଂଗୁର କୋରକ ପରି ଲତାୟିତ ଉର୍ବଶୀର ତନୁ
ଗଢ଼ିଚ ନଗାଡ଼ି ତୁମେ/ସପନର ଶତ ଇନ୍ଦ୍ରଧନୁ ।
ତେଣୁ କେବେ ମଣିଷର ପାଇଁ
ଟୋପାଏ ଲୋତକ କେବେ ଚକ୍ଷୁତାରୁ ତା'ର ଝରି ନାହିଁ ।

ଏଣୁ 'ପଦ୍ମଭୂକ୍', 'ନପୁଂସକ', 'ବୃହନ୍ନଳା' ବେଶ ତ୍ୟାଗକରି 'ନିରକ୍ତ କାର୍ତ୍ତିକ ପ୍ରାତେ ସୃଜନର ଆରକ୍ତ କରବୀ' ଫୁଟାଇବାର ଅଗ୍ନିଗର୍ଭୀ ଆହ୍ୱାନ ସଚ୍ଚିଦାନନ୍ଦଙ୍କ କାବ୍ୟ-ସ୍ୱରର ସ୍ପର୍ଦ୍ଧା, ଶକ୍ତିମତ୍ତା, ବିଶ୍ୱମଣିଷ ପାଇଁ ଗଭୀର ଶ୍ରଦ୍ଧା ସଂବେଦନାର ପରିଚାୟକ । ଏହା ଉତ୍କଳୀୟ ନୁହେଁ କି ଭାରତୀୟ ନୁହେଁ—ଏହାର ପୃଷ୍ଠପଟ ଉପରେ ବିଶ୍ୱ କାବ୍ୟ-ମାନସ ପାଇଁ ରହିଛି ଅସହାୟ, ଶୋଷିତ, ଆର୍ତ୍ତ ମଣିଷଙ୍କ ଅଭ୍ୟୁତ୍‌ଥାନ ଲାଗି ଚିନ୍ତାଦୀପ୍ତ ଆହ୍ୱାନ । ଏ ଖଣ୍ଡକାବ୍ୟର ଚତୁର୍ଥ ସ୍ତବକଟି ଏଣୁ ମୂଳଭାବ ସହ ଅକ୍ଷୁର୍ଣ୍ଣ ସମ୍ପର୍କ ରଖି ମଧ୍ୟ ସ୍ୱକୀୟ ଦୀପ୍ତିରେ, ବୈଶିଷ୍ଟ୍ୟରେ ସ୍ୱତନ୍ତ୍ର ଓ ଏକକ ଭାବେ ଭାସ୍ୱର ।

ପଞ୍ଚମ ବା ଅନ୍ତିମ ସ୍ତବକଟି ଖଣ୍ଡକାବ୍ୟଟିର ବିନ୍ୟାସରେ ପୂର୍ଣ୍ଣାଙ୍ଗତା ପ୍ରଦାନ କରିଛି । ବାଜିରାଉତର ଗର୍ଭଧାରିଣୀ ମା'ପାଇଁ ସାନ୍ତ୍ୱନାପ୍ରଦାନ ଓ ମାତୃତ୍ୱର ଜୟଗାନରେ ଏ ପର୍ଯ୍ୟାୟଟି ବେଶ୍ ସାର୍ଥକ । ଶିଶୁ-କିଶୋର ବାଜିରାଉତ ଯେ ଗୋଟିଏ ଅଂଚଳ ବା ଭୂଖଣ୍ଡର ନୁହଁ; ସାରା ବିଶ୍ୱର ଯେକୌଣସି କୋଣର—ଏ ପରିକଳ୍ପନା କବିଙ୍କ କାବ୍ୟ କଳ୍ପାହାରର ଅନ୍ୟତମ ଦିଗ । ପୁତ୍ରହରା ଜନନୀଙ୍କୁ ସଂବୋଧନ କରି କବି ବାଢ଼ିଥିବା କାବ୍ୟ ବକ୍ତବ୍ୟ ଅଧିକ ମରମୀ । କାଳକାଳ ଧରି ବରାଭୟ ଦାନ କରିଥିବା ମା'କୁ କବି ତାଙ୍କ ଦ୍ରଷ୍ଟା ଓ ସ୍ରଷ୍ଟାମାନସର ଅଭୟ ଓ ଆଶ୍ୱାସନା ଦାନ କରିଛନ୍ତି । କବିଙ୍କ ଦୃଷ୍ଟିରେ ବ୍ୟକ୍ତି-କିଶୋରଟି ଆଜି ବିଶ୍ୱ-କିଶୋରରେ ପରିଣତ ଓ ପରିବ୍ୟାପ୍ତ । ପରାଧୀନତା, ଶୋଷଣ ଅତ୍ୟାଚାରର ବିରୁଦ୍ଧରେ ପ୍ରତିବାଦ କରି ବଳିଦାନ ପାଇଥିବା ବିଶ୍ୱର ଯେକୌଣସି

କୋଣରେ ଶିଶୁ ଏଣ୍ଡ୍ର ବାଜିରାଉତ । ବାଜିରାଉତଙ୍କୁ ଏ ରୂପକରେ ଅଭିଷିକ୍ତ କରିବା, ରୂପାନ୍ତର ଦେବା ସଚ୍ଚିଦାନନ୍ଦ ରାଉତରାୟଙ୍କ କାବ୍ୟଦୃଷ୍ଟିର ଅନନ୍ୟତାର ପରିଚୟ ବହନ କରେ । କବି ଉଚ୍ଛ୍ୱସିତ—

ପୋଛ ମାତା ପୋଛ ଅଶ୍ରୁ ରାଶି,
ତୁମର ସ୍ତନର ଜୟ ଗାଏ ଆଜି ଚରାଚର ବାସୀ ।
ତୁମର ଯା' ଥିଲା ଧନେ
ବିଶ୍ୱ ତାରେ କରିଚ ନଜର,
ନିଖିଳର ଗର୍ଭେ ଆଜି ଶିଶୁ ତବ
ଲଭେ ଜନ୍ମାନ୍ତର ।

ଛୁଅ :

'ବାଜିରାଉତ' ଖଣ୍ଡକାବ୍ୟର ଆଭିମୁଖ୍ୟ, ଘଟଣାଭୂମିର ପର୍ଯ୍ୟାଲୋଚନା ପର୍ଯ୍ୟାୟରେ ପ୍ରଦତ୍ତ କାବ୍ୟପଂକ୍ତିରୁ କବିଙ୍କ ଛନ୍ଦୋବଦ୍ଧତା, ସାଂଗୀତିକତା, ଶବ୍ଦବିନ୍ୟାସ, ଉପମା-ରୂପକ-ଚିତ୍ରକଳ୍ପଚୟନ ସୃଷ୍ଟିର୍ଯ୍ୟ ଆଦି ଆଂଗିକ ବିଷୟର ବହୁ ଉଦାହରଣ ସଂଗ୍ରହ କରି ହେବ । ଏଥିରେ ଓଡ଼ିଆ କବିତାର ଭାଷା ଏକ ନୂତନ ପ୍ରାପ୍ତି, ଦ୍ୟୁତି, ଗତିଶୀଳତା, ସଂପ୍ରସାରଣଶୀଳତା ପାଇଛି । ପଦ୍ୟଛନ୍ଦ ଚୟନରେ ଏ କାବ୍ୟଭାଷାର ଶକ୍ତିମତ୍ତା ଓ ମୁକ୍ତ ପ୍ରୟୋଗବୈଶିଷ୍ଟ୍ୟ ୧୯୪୨-୪୩ କବିତା ପରିପ୍ରେକ୍ଷୀରେ ଏକ ଅନନ୍ୟ ଓ ଅଭୂତପୂର୍ବ ସ୍ୱାତନ୍ତ୍ର୍ୟ । ଏ ଭାଷାରେ ଆବେଗଧର୍ମିତା ସହିତ ଗାମ୍ଭୀର୍ଯ୍ୟ, ସରଳତା, କ୍ରୋଧ, ପ୍ରତିବାଦ, ସଂବେଦନା, ଆହ୍ୱାନର ସୁସ୍ଥିରୁ ସମନ୍ୱୟ ଘଟିଛି । ବ୍ୟକ୍ତି ଭିତରେ ବିଶ୍ୱ, କିଶୋରର ଆତ୍ମବଳି ଭିତରେ ମଣିଷର ଓ ବିଶ୍ୱର ମୁକ୍ତି, ଲେଲିହାନ ଶିଖାରୁ ବିପ୍ଳବର ଆଗ୍ନେୟ ପରିକଳ୍ପନା, ରକ୍ତବିନ୍ଦୁ ଭିତରୁ ଚଳନ୍ତାଗାର ଓ ରକ୍ତ କରବୀର ଦ୍ୟୋତନା, ଅଶ୍ରୁ ମଧ୍ୟରେ ପ୍ରଳୟ ପ୍ଲାବନ ଓ ଝଂଝା ଝଟିକାର ପ୍ରବାହ, ମଳିନ ଛାୟିଷ୍ଣୁ ପୃଥିବୀ ବକ୍ଷରେ ସତ୍ୟ-ଶିବ-ସୁନ୍ଦରର କାମନା ଆଦି ବହୁଭାବ, ଚିନ୍ତନ 'ବାଜିରାଉତ'ଙ୍କୁ ଏକ ଶକ୍ତିଶାଳୀ ସୃଷ୍ଟିର ମର୍ଯ୍ୟାଦା ଦିଏ ।

# ଅଲକା ସାନ୍ୟାଲ : ରୂପ ରୂପାନ୍ତର

ଏକ :

'ଅଲକା ସାନ୍ୟାଲ' ରଚନା କାଳ (୧୯୮୭)ରେ କବି ସଚ୍ଚିଦାନନ୍ଦ ରାଉତରାୟ ସୂଚାଇଛନ୍ତି ଯେ ବଂଗୀୟ କବି ଜୀବନାନନ୍ଦ ଦାଶଙ୍କର 'ବନଲତା ସେନ୍' ଏହାର ଭିତ୍ତି ଓ ପ୍ରେରଣା ଏବଂ ଏଥିରେ ପରିବେଷିତ ଘଟଣା ବା ଉପାଦାନକୁ ଏକ ନିର୍ଦ୍ଦିଷ୍ଟ କାଳାନୁକ୍ରମିକ ଐତିହାସିକ ଭିତ୍ତି ଦେବା ଲକ୍ଷ୍ୟରେ ସେ ଏହା ରଚନା କରିଛନ୍ତି । କବି ଗୁରୁପ୍ରସାଦ ମହାନ୍ତି ସଚ୍ଚିଦାନନ୍ଦଙ୍କ ଅଲକା ସାନ୍ୟାଲକୁ ଭିନ୍ନଭାବେ ସମସ୍ୟାନୁସାଂଖ୍ୟ ରୂପାନ୍ତର ଦେବାର ପ୍ରଯତ୍ନ କରିଛନ୍ତି । ଏଠାରେ ଦୁଇଗୋଟି ବିବର୍ତ୍ତିତ ପ୍ରେକ୍ଷାପଟରେ ନାୟିକା ପ୍ରତି ସୌନ୍ଦର୍ଯ୍ୟମୁଗ୍ଧ ଅନ୍ୱେଷଣ ଯେତକ ଗୁରୁତ୍ୱପୂର୍ଣ୍ଣ ହୋଇନାହିଁ; ଗୁରୁତ୍ୱପୂର୍ଣ୍ଣ ହୋଇଛି ସମୟର ପ୍ରାଣସ୍ପନ୍ଦନକୁ ରୂପଦେବା । ସେଇ ରୂପାନ୍ତରର ସ୍ୱରୂପ ଓ ବୈଶିଷ୍ଟ୍ୟକୁ ପର୍ଯ୍ୟବେକ୍ଷଣ କରିବା ଆଲୋଚନାଟିର ଉଦ୍ଦେଶ୍ୟ ।

ଦୁଇ :

ଜୀବନାନନ୍ଦଙ୍କ ନାୟିକା ବନଲତା ସେନ୍ ଏକ ସୌନ୍ଦର୍ଯ୍ୟମୟୀ ନାରୀ—ଅନୁପମ ସୌନ୍ଦର୍ଯ୍ୟର ପ୍ରତୀକ । ଏକ ଶାଶ୍ୱତ ଅନ୍ୱେଷାବୋଧର ମାନସିକତା ଓ ଦୃଷ୍ଟିଭଙ୍ଗୀ ନେଇ କାବ୍ୟନାୟକ ତାକୁ ଖୋଜିଛି ଅତୀତର, ଇତିହାସର ଅନ୍ଧକାରମୟ ପୃଷ୍ଠା ଭିତରେ । ବର୍ତ୍ତମାନର ପୀଠିକା ଉପରେ କବି ଅତୀତର ନାୟିକାକୁ ଆଲୋକିତ କରିବାର ଦ୍ରଷ୍ଟା-ସୁଲଭ ମାନସିକତା ପୋଷଣ କରିଛନ୍ତି । ସମୟର ବିଭିନ୍ନ ପାହାଚରେ, ବିଭିନ୍ନ ଯୁଗ ଓ ଶତାବ୍ଦୀର ପ୍ରବାହ ଭିତରେ ସବୁକାଳର ନାରୀ ବା ନାୟିକାକୁ ସବୁକାଳର ନାୟକଟିଏ (ତା'ର ପ୍ରତୀକ କାବ୍ୟନାୟକ)ର ଏହା ଏକ ଅନ୍ୱେଷଣର ପ୍ରତିଲିପି । କିନ୍ତୁ ବନଲତା ଗୋଟିକରେ ରୂପାନ୍ତରିତ ଏଣ୍ଡି ।

ଏକ ଭାବମୁଗ୍ଧ ଦୃଷ୍ଟି ନେଇ ବନଲତାକୁ ଖୋଜାଯାଇଛି । କବିର ହୃଦୟକୁ କେଇଟି ମୁହୂର୍ତ୍ତ ପାଇଁ ଶାନ୍ତି ପ୍ରଦାନ କରିଥିବା ବନଲତା କ'ଣ କୌଣସି ନିର୍ଦ୍ଦିଷ୍ଟ ସ୍ଥାନର, କାଳର ? ଦେଶକାଳପାତ୍ର ମଧ୍ୟରେ ଏବଂ ଊର୍ଦ୍ଧ୍ୱରେ ତା'ର ସ୍ଥିତି । ନାଟୋରେର ବନଲତା ସେନ୍ ଏକ ଆଞ୍ଚଳିକ ରୂପ ନେଇଛି, ତା'ର ଏକ ସ୍ଥୂଳ ପରିଚୟ ଅଛି ଅବଶ୍ୟ । ଭାରତୀୟ ସୌନ୍ଦର୍ଯ୍ୟର, ଭାରତୀୟ ନାୟିକାର ସେ ପ୍ରତିନିଧି । ତମସାଚ୍ଛନ୍ନ ଅତୀତର

ପୃଷ୍ଠାଭିତରୁ ତା'ର ପ୍ରେମ ଓ ସୌନ୍ଦର୍ଯ୍ୟ ଅନୁରାଗୀ କାବ୍ୟନାୟକ ତାକୁ ଖୋଜି ଲାଗିଛି ସବୁକାଳର ନାୟକର ମନ ନେଇ, ଦୃଷ୍ଟି ନେଇ, କା' ନେଇ । ଶତାବ୍ଦୀ ଶତାବ୍ଦୀଧରି ପୃଥିବୀର କୋଣ ଅନୁକୋଣ ଖୋଜିଖୋଜି ତା'ସହ ଭେଟ ମିଳିଛି । ଖୋଜିବାର ସ୍ଥାନକାଳମଧ୍ୟରେ ସିଂହଳ ଦ୍ୱୀପ, ମାଳୟ ସାଗର, ବିମ୍ବିସାର ଓ ଅଶୋକର ବିବର୍ଣ୍ଣ ମ୍ରିୟମାଣ ଧୂସର ଜଗତ, ବିଦର୍ଭ ନଗର—ସର୍ବତ୍ର ତାକୁ ଖୋଜାଯାଇଛି, ଲୋଡାଯାଇଛି । ଏହା ଚିରନ୍ତନ ଏକ ନାୟିକାର ନିବିଡ଼ ଅନ୍ୱେଷଣ ଓ ତା'ର ସୌନ୍ଦର୍ଯ୍ୟରେ ସମ୍ମୋହିତ ହେବା । ଉତାପଜନ ଫେନାୟିତ ଜୀବନ-ସମୁଦ୍ରର ଢେଉ କ୍ଲାନ୍ତ ନାୟକର ହୃଦୟ ସ୍ୱଳ୍ପ ମୁହୂର୍ତ୍ତ ପାଇଁ ହେଉପଛକେ ବନଲତାର ସାନ୍ନିଧ୍ୟରେ ଯେଉଁ ଶାନ୍ତି ଓ ସନ୍ତୋଷ ପାଉଛି, ସେଥିରେ ସେ ପ୍ରେମଧନ୍ୟ ।

ଆମି କ୍ଲାନ୍ତ ପ୍ରାଣ୍ ଏକ ଚାରିଦିକେ ଜୀବନେର ସମୁଦ୍ର ସଫେନ୍<br>
ଆମାରେ ଦୁଦଣ୍ଡ ଶାନ୍ତି ଦିୟେଛିଲୋ ନାଟୋରେର୍ ବନଲତା ସେନ୍ ।

ତା'ର ସୌନ୍ଦର୍ଯ୍ୟ ବର୍ଣ୍ଣନାରେ ମଧ୍ୟ ରହିଛି ଇତିହାସ ଓ ଅତୀତଗ୍ରସ୍ତତାର ପ୍ରତିଫଳନ । ତା'ର କେଶପାଶ ମଧ୍ୟରେ ଦୃଶ୍ୟମାନ ଏଣ୍ଡୁ ବିଦିଶାର ନିବିଡ଼ ନୀଳ ଅନ୍ଧକାର, ମୁଖମଣ୍ଡଳରେ ଶ୍ରାବସ୍ତୀର କାରୁକାର୍ଯ୍ୟ; କିନ୍ତୁ ଆଖିର ସୌନ୍ଦର୍ଯ୍ୟ ନେଇ ଉପମା ଚୟନ ଅନବଦ୍ୟ । ଯେଉଁ ସମୁଦ୍ରରେ ନାବିକର ନୌକା ଦିଗହରା ହେଠି ଏକ ଦାରୁଚିନି ଦ୍ୱୀପରେ ସବୁଜ ଘାସର ଇଲାକା ତା'ର ଆଖି । ଏକ ଦିଗହରା ବାସ୍ତବିକତାର ଧୂସର ସ୍ଥିତି ମଧ୍ୟରେ ସବୁଜ ଦ୍ୟୋତନା ! କାବ୍ୟପୁରୁଷ କ'ଣ ଦିଗହରା ନାବିକ ? ଏଭଳି ଏକ ସ୍ଥିତି ମଧ୍ୟରେ କବିଙ୍କୁ/କାବ୍ୟପୁରୁଷକୁ ପଚାରିଛି ବନଲତା—'ଏତୋଦିନ କୋଥାୟ ଛିଲେନ୍ ?' ଏହା କ'ଣ ସତରେ ଏକ ପଚାରିବା ? ନା ଏକ ଭାବବିଭୋର ଆଳାପନୀ ? ନାୟକର ପ୍ରେମ ଓ ଅନୁରାଗ ପ୍ରତି ଏକ ସମ୍ମୋହିତ ସମର୍ଥନ ଓ ସମର୍ପଣ ? ବଡ଼ ନିବିଡ଼ ନିଶବ୍ଦ, ମୁଗ୍‌ଧ, ସଭ୍ରମତା ଓ ପ୍ରେମପୂର୍ଣ୍ଣ ସେ ପଚାରିବା, ତା'ର ସେ ଭଙ୍ଗୀ । ଏ ନେଇ ଆଉ ଏକ ଉପମା ଦେବାକୁ କବି ବିସ୍ମରି ନାହାଁନ୍ତି—'ପାଖିର ନୀଡେର୍ ମତୋ ଚୋଖ୍ ତୁଲେ ନାଟୋରେର ବନଲତା ସେନ୍ ।' ପବନରେ ଧୀରଭାବେ ଦୋଳାୟିତ କେଉଁ ପକ୍ଷୀର ବସା—ଚଞ୍ଚଳ ପୁଣି ସ୍ଥିର, ସୁଦୂର ପୁଣି ଅଦୂର—ତା'ର ଚାହାଣି । ଏ ସୌନ୍ଦର୍ଯ୍ୟପୂର୍ଣ୍ଣ ବର୍ଣ୍ଣନାପରେ ଜୀବନର ଦୀର୍ଘାନ୍ତରେ ହିସାବନିକାଶ କ୍ଲାନ୍ତ କାବ୍ୟନାୟକ ତା'ର ପ୍ରାପ୍ତି ଓ ଅପ୍ରାପ୍ତିକୁ ସମାନ ଭାବେ ତଉଲିଛି । ଯାହା ହଜିଯାଏ—ତାହା କୌଣସି ନା କୌଣସି ବାଟେ ଫେରିଆସେ ! ପ୍ରେମରୁ ଆସିଛି ଏକ ଦାର୍ଶନିକ ଉପଲବ୍‌ଧି । 'ବନଲତା ସେନ୍' କବିତାର ଆତ୍ମମୁଖ୍ୟ ଭିତରେ ଏକ ଚିରନ୍ତନ ସୌନ୍ଦର୍ଯ୍ୟଅନ୍ୱେଷା ଓ ସୌନ୍ଦର୍ଯ୍ୟମୁଗଧ ତାର ପ୍ରତିଫଳନ । ଯୁଗେଯୁଗେ ନାୟିକାକୁ/ନାରୀକୁ କାବ୍ୟିକ ଦୃଷ୍ଟିନେଇ ପରଖିବାର ଏକ ପ୍ରଚେଷ୍ଟା ଏଥିରେ ପରିଲକ୍ଷିତ । ନାୟିକାର ସୌନ୍ଦର୍ଯ୍ୟ ଓ ପ୍ରେମରେ ଜୁଡ଼ୁବୁଡ଼ୁ

କବିର ହୃଦୟ । ପ୍ରେମିକାଟି ଶାନ୍ତ ଓ ସନ୍ତୋଷ ପ୍ରଦାନକାରୀ ଏକ ସତ୍ତ୍ୱବିଶେଷ । ଖୋଜିବାର ଅକ୍ଳାନ୍ତ ନିଶାରେ କେବେ କ୍ଳାନ୍ତ ନୁହନ୍ତି କାବ୍ୟନାୟକ । ନାୟିକାର ମୁହୂର୍ତ୍ତିଟିଏ ଭାବପୂର୍ଣ୍ଣ ପଲକପାତ, କିମ୍ବା ପଦେଅଧେ ଆଳାପ ତା'ର ସମସ୍ତ ଜୀବନକୁ ପ୍ରେମଧନ୍ୟ ଓ ମହିମାନ୍ୱିତ କରିଛି ।

ତିନ :

ଉପର୍ଯ୍ୟୁକ୍ତ ପୃଷ୍ଠଭୂମିକୁ ସାମ୍ନାରେ ରଖି ସଚ୍ଚିଦାନନ୍ଦଙ୍କ ଅଳକା ସାନ୍ୟାଲ୍‌କୁ ଚିହ୍ନିବାକୁ ହେବ । ସଚ୍ଚିଦାନନ୍ଦଙ୍କ ସୌନ୍ଦର୍ଯ୍ୟସମ୍ବେଦୀ ଦୃଷ୍ଟିରେ ଭାରତୀୟ ପରମ୍ପରାର ଋପରୂପ ଦର୍ଶାଯାଇଛି । ଇତିହାସର ଅନ୍ଧକାର ଭିତରୁ ସେ ଆଉ କେଇପାଦ ଉଜାଣିରେ ଯାଇ ପୁରାଣର ଦେହଳୀକୁ ସ୍ପର୍ଶ କରିଛନ୍ତି । ସଚ୍ଚିଦାନନ୍ଦ ଏଇ ଖୋଜିବାରେ ସମସ୍ୟାନୁସାରୀ ନିର୍ଦ୍ଦିଷ୍ଟତା ଆରୋପ କରିଛନ୍ତି । ଯୁଗୀୟ ନାରୀକୁ ବା ସବୁକାଳର ନାୟିକାକୁ ଖୋଜିବାର ଦୃଷ୍ଟିଭଙ୍ଗୀ ଏଣୁ ଏଠାରେ କିଞ୍ଚିତ୍ ଭିନ୍ନ ।

'ବନଲତା ସେନ୍'ରେ ଜୀବନାନନ୍ଦ ଯେଉଁ ରୋମାଣ୍ଟିକ ଭାବମୁଗ୍ଧ ଅଭିବ୍ୟକ୍ତି ଦେଲେ ସେଥିରେ ଉବୁଟୁବୁ ସଚ୍ଚିଦାନନ୍ଦଙ୍କ କାବ୍ୟନାୟକ ଏଣୁ ଏକ ରୋମାଣ୍ଟିକ ପରିବେଶରେ ଭେଟିଛି ନାୟିକାକୁ । ସେ ବନଲତା ସେନ୍ ହୋଇଥିଲେ ମନ୍ଦ ହୁଅନ୍ତା ନାହିଁ । ଅନ୍ୟ ନାଁଟିଏ ତା'ର — ଅଳକା ସାନ୍ୟାଲ । ବସନ୍ତ ଋତୁର ଏକ ଅସ୍ତସୂର୍ଯ୍ୟ ଗୋଧୂଳି ବେଳାରେ ତା' ସହ ଭେଟ । ସେ ବେଳରେ ଆକାଶ ଦିଶେ ଲକ୍ଷେ ସୁନା ସ୍ୱରଙ୍ଗର ପିଠି ପରି ଚର୍ଚ୍ଚିତ, ଉଜ୍ଜ୍ୱଳ । ସେଠି ମୃଦୁମନ୍ଦ ମଳୟ ଥିବ, ଫୁଲର ବାସ୍ନା ବି ।

> ପ୍ରଥମେ ତୁମକୁ ଯେବେ ଦେଖିଥିଲି ଅଳକା ସାନ୍ୟାଲ
> ବିଦେହର ରାଜପୁରେ, ଲକ୍ଷେ ସ୍ୱର୍ଣ୍ଣ ସ୍ୱରଣେ ଝୁଲି—
> ଝୁଲୁଥିଲା ପୃଥ୍ୱୀରେ ଫାଗୁଣେ ଆସ୍ତସୂର୍ଯ୍ୟ ଗୋଧୂଳି...

ଚିରନ୍ତନ ସେଇ ନାୟିକା ଅଳକାକୁ ଖୋଜିବା ନିଶାରେ କାବ୍ୟନାୟକ ସ୍ୱର୍ଣ୍ଣଯୁଗର ଅପରିମିତ ଐଶ୍ୱର୍ଯ୍ୟ ଭିତରେ ଖୋଜନ୍ତି ତା'ର ପାଦଚିହ୍ନ । ଏଣୁ ବିଦେହ ଓ ବାରଣାବନ୍ତର ସ୍ମୃତିବିଜଡ଼ିତ ଭୂମି ଭିତରେ ସେ ଘୂରନ୍ତି । ବିଦେହର ରାଜପୁର ସତୀ ସୀତାଙ୍କ ତ୍ୟାଗ ଓ ମହତ୍ତ୍ୱର ମହିମ୍ନ ଦିଗନ୍ତ ଏବଂ ବାରଣାବନ୍ତ ନିର୍ଯ୍ୟାତିତା ଓ ପ୍ରତିଶୋଧକାମୀ ଯାଜ୍ଞସେନୀଙ୍କ ଶପଥ ଓ କାରୁଣ୍ୟର ଊର୍ଜସ୍ୱଳ ଅଧ୍ୟାୟକୁ ଚିତ୍ରିତ କରେ । ସେହି ରୂପ ଭିତରେ, ଭବଭୂମି ଭିତରେ ପ୍ରତିଭାତ ହୁଏ ଅଳକାର ସୌନ୍ଦର୍ଯ୍ୟ, ବ୍ୟକ୍ତିତ୍ୱ ଓ ପ୍ରତ୍ୟୟ । ଆହୁରି ସୁଦୂର ଅତୀତକୁ ଉଜାଣିରେ ଯାଇ କବି ଅଳକା ସାନ୍ୟାଲଙ୍କୁ ମର୍ତ୍ତ୍ୟସୌନ୍ଦର୍ଯ୍ୟ ଓ ପ୍ରେମବିଧୁର ଅପ୍ସରା ଉର୍ବଶୀ ମଧ୍ୟରେ ଦେଖନ୍ତି, ସମାନ୍ତ

କରନ୍ତି । ଉର୍ବଶୀ ଓ ପୁରୁରବାଙ୍କ ଅପୂର୍ବ ଅନ୍ତରଙ୍ଗ ପ୍ରେମ ଉପାଖ୍ୟାନ ଦୃଶ୍ୟପଟ୍ଟରେ ଭାସିଆସେ । ଗାର୍ହସ୍ଥ୍ୟ ବା ଦାମ୍ପତ୍ୟ ଭିତରେ ଉର୍ବଶୀଙ୍କର ଶର୍ତ୍ତ କମ୍ ସାତ୍ତ୍ୱିକ ଲାଗେନାହିଁ । ଦାମ୍ପତ୍ୟ ଜୀବନର ଭୋଗ ଓ ସୁହାଗ ମଧ୍ୟରେ ସେ ପୁରୁରବାଙ୍କୁ ନିବସ୍ତ୍ର ବା ଉଲଗ୍ନ ଦେଖିବେ ନାହିଁ । ଶର୍ତ୍ତ ଭାଙ୍ଗିଲେ ସ୍ୱର୍ଗକୁ ଫେରିଯିବେ ଉର୍ବଶୀ । ଏକ ସୂକ୍ଷ୍ମ ସାତ୍ତ୍ୱିକ ପରମ୍ପରାର ପ୍ରତିଫଳନ ଇଏ । ମାୟା ଅବଶ୍ୟ ଭିଆଇବେ ଚିତ୍ରରଥ ଗନ୍ଧର୍ବ । ଶର୍ତ୍ତ ଭଗ୍ନ ହେବ—ଉର୍ବଶୀ ସ୍ୱର୍ଗକୁ ଫେରିବେ । ପୁରୁରବାଙ୍କ ବ୍ୟାକୁଳତା ଓ ନିବିଡ଼ ତପସ୍ୟା ତାଙ୍କୁ ପୁଣି ମର୍ତ୍ତ୍ୟମନସ୍କ କରାଇବ । ଉର୍ବଶୀଙ୍କ ପ୍ରେମ, ମର୍ତ୍ତ୍ୟମନସ୍କତା, ପୁରୁରବାଙ୍କ ବ୍ୟାକୁଳ ଅନ୍ୱେଷଣ ଭିତରେ ସତେ ଯେମିତି ମର୍ତ୍ତ୍ୟ ଓ ସ୍ୱର୍ଗ ଯୋଡ଼ି ହୋଇଛି । ସସୀମ ସହିତ ମିଶିଛି ଅସୀମ । ସେକାଳର ପ୍ରେମ ଏପରି ସମ୍ମୋହନ-ମୋହିନୀ । ଅଳକା ମଧ୍ୟରେ ଉର୍ବଶୀ ? ଉର୍ବଶୀ ମଧ୍ୟରେ ଅଳକା ?

ସୀତା, ଦ୍ରୌପଦୀ ଓ ଉର୍ବଶୀ—ତ୍ୟାଗ, ଶକ୍ତିମତ୍ତା ଓ ସାତ୍ତ୍ୱିକତାର ପ୍ରେମମୟ ପ୍ରତୀକ-ରୂପ । ଅଳକା ଭିତରେ ଭାରତୀୟ ସଂସ୍କୃତିର ରୂପଚେତନା ଓ ପ୍ରାଣସ୍ପନ୍ଦନ । ପୁଣି ବଦଳିଯାଏ ଅଳକାର ପରିଚୟ । ଭାରତ ଇତିହାସର ସୁବର୍ଣ୍ଣ ଅଧ୍ୟାୟ ବୋଲି ଯାହାକୁ ଗ୍ରହଣ କରାଯାଇଛି ତାହା ନାଳନ୍ଦା, ତକ୍ଷଶିଳା ଓ ପୁଷ୍ପଗିରିର ବିଶ୍ୱବିଦ୍ୟାଳୟକାଳୀନ ବିଦ୍ୱତ୍ତା ଓ ପ୍ରଜ୍ଞାର ପରିପ୍ରକାଶ ଓ କର୍ଷଣ । ଦେଶ ଦେଶାନ୍ତରର ଜ୍ଞାନଭିକ୍ଷୁ ଓ ଭିକ୍ଷୁଣୀଙ୍କ ମହତ୍ତ୍ୱର ଜ୍ଞାନ ପିପାସାର ପ୍ରତିଫଳନ । ଜୈନ ଓ ବୌଦ୍ଧ ଦର୍ଶନର ଭକ୍ତି ଓ ତତ୍ତ୍ୱର ଭାବ ସ୍ରୋତରେ ମଗ୍ନ ଏକ ଶ୍ରମଣ ଚେତନାର ତୀର୍ଥଙ୍କର ବ୍ୟାକୁଳତାରେ ବୁଦ୍ଧିମନ୍ତ ଏକ ସମ୍ଭ୍ରାନ୍ତ ପରିବେଷ୍ଟନୀରେ ନାଳନ୍ଦାର ଶିକ୍ଷାର୍ଥିନୀ ସହପାଠୀ ଭାବେ ଅଳକା । କାବ୍ୟନାୟକର ଦୃଷ୍ଟିପଥାରୂଢ଼ ହୁଏ । ନିରାଡ଼ମ୍ବର ଅଥଚ ଅଭିଜାତ ତା'ର ସୌନ୍ଦର୍ଯ୍ୟ । ସେଠି ଅଳକାର କେଶପାଶ ବିଦିଶାର ଅନ୍ଧକାର ପରି ନୀଳ ନିବିଡ଼ ନୁହେଁ; ତେବେ ଆକର୍ଷଣୀୟ—'ତୁମ କୃଷ୍ଣ କବରୀର କାରୁକାର୍ଯ୍ୟ ଲାଗିଥିଲା ଭଲ !'

ସମୟର ପ୍ରବାହ ଓ ପ୍ରଦାହ ଭିତରେ ଭାରତୀୟ ନାରୀର କେତେ ରୂପ ରୂପାନ୍ତର ଘଟିଛି । ଖୋଜିବାର, ହଜାଇବାର ନିଶା ଭିତରେ ସୌନ୍ଦର୍ଯ୍ୟଅନ୍ୱେଷୀ କାବ୍ୟନାୟକ ( କବି ଦୃଷ୍ଟି ) ଆଉ କୌଣସି ଐତିହାସିକ ପ୍ରେକ୍ଷାପଟରେ ଅଳକାକୁ ସନ୍ଧାନ କରିନାହିଁ । ଏଣୁ ଦିଗହରା ନାବିକର ନିର୍ଜନନିଃସଙ୍ଗ ସାମୁଦ୍ରିକ ସ୍ଥିତି ନୁହେଁ, ସୁଦୂର କେଉଁ ଦାରୁଚିନି ଦ୍ୱୀପ ନୁହେଁ—କବିଙ୍କ କଳ୍ପନାର ଏକ ମୁଗ୍ଧ କଳ୍ପଲୋକ—କଳିଙ୍ଗ କଟକଠୁଁ ଦୂର କେଉଁ ଅଲୋଇତ ଦ୍ୱୀପ ଜମ୍ବୁ ଡାଳିମ୍ବ ଦ୍ୱୀପର କାଚ କରତର ବାଡ଼ ଭିତରେ ବନ୍ଦିନୀ ଅଳକାକୁ ମୁକ୍ତ କରିବାର ସ୍ୱପ୍ନ ଦେଖୁଦେଖୁ କବିଙ୍କ ଅନେକ ବାସ୍ତବତାର ଧୂସର ମହଲଣି ସ୍ଥିତି ଭିତରେ ଅଳକାର ରୂପ ହଜିଯାଇଛି । ସେଇ ଭାବମୁଗ୍ଧ ଅନ୍ୱେଷଣରେ ସୁର ଏହିପରି କହୁ—

କଳିଙ୍ଗ କଟକୁ ଦୂରେ ଅଟଲଇଚ ଦ୍ୱୀପର ବନ୍ଦରେ
ତୁମକୁ ମୁଁ ଖୋଜିବୁଲେ ତୁମ କୃଷ୍ଣକେଶର ଗନ୍ଧରେ
ସୁଦୂର ତାଲିମ୍ବ ଦ୍ୱୀପେ ଡେଇଁ କାଚ କରନ୍ତର ଦ୍ୱାର
ବନ୍ଦିନୀ ତୁମକୁ ଲୋଡ଼େ ଦେବାପାଇଁ ମୁକ୍ତ ଉପହାର ।

'ଦ.ଜିବୁଉତ'ରୁ 'ପାଣ୍ଡୁଲିପି' ପର୍ଯ୍ୟାୟକୁ ଯାହାର ତ୍ରୁଟିଉପକ୍ଷ ଇଏ । ମହୁଭୃକ୍ ଓ କଳନା ବିଳାସୀ କବିଙ୍କ ଗଜଦନ୍ତର ସୌଖୀନ, ମିନାର କ କୁଞ୍ଜବନକୁ ଦୂର କରି 'ବନ୍ଧ୍ୟା ଦେଶେ ହନ୍ୟାବାୟୁ'କୁ 'ସୃଜନର ଆରକ୍ତ କରମ୍ବ' ପ୍ରଷ୍ଟୁଟନର ପ୍ରତ୍ୟାଶାରେ ଅଭିଷିକ୍ତ କରିବାର ବେଳ ଇଏ । ସେଠି ଖାକିର ହସ ହସୁଥିବା ଯୁଦ୍ଧଧ୍ୱାନ୍ତ ଧୂସର ଭୂମି ଉପରେ ପ୍ରତିମା ନାୟିକ ଠିଆ ହେବାକୁ ସଜ ହେଉଥାଏ । ତେବେ ଅଳକା ଠିଆ ହୋଇଛି କେଉଁଠି ? ତା' ପାଦତଳେ ଭୂମି ଅଛି ତ ? କବି ତାକୁ ଠିଆ ହେବାର ଦେଖନ୍ତି/ ଦେଖୁଛନ୍ତି ଦଙ୍ଗା ଓ ସନ୍ତ୍ରାସ ଭିତରେ, ସାଂପ୍ରଦାୟିକତାର ବିଷଚକ୍ର ଭିତରେ, ହତ୍ୟା-ଧର୍ଷଣ-ରକ୍ତପାତ ଅଧ୍ୟୁଷିତ ଭୂମି ଉପରେ, ଆସ୍ଥା ଓ ବିଶ୍ୱାସ ଭୁଷୁଡ଼ି ପଡ଼ିବାର ଶବ୍ଦ ଭିତରେ, ଲୁହ ଓ କାରୁଣ୍ୟ ଭିତରେ—ଦେଖୁଛନ୍ତି ଶ୍ମଶାନତ ନୂଆଖାଲିର ଧୂସର ହାହାକାର ଭିତରେ । ବିବର୍ତ୍ତିତ ସମୟ ଓ ବିବର୍ତ୍ତିତ ଭାରତବର୍ଷ । ସୌନ୍ଦର୍ଯ୍ୟର ପ୍ରତିମା— ଆହତ ସନ୍ତ୍ରସ୍ତ ନିସହ ସୁନ୍ଦର ଅଳକାକୁ ସେ ଉଦ୍ଧାର କରନ୍ତି । ଘୋଡ଼ାଟାପୁର ଶବ୍ଦ ଶୁଭୁଥାଏ । ବର୍ଗୀ ବାହିନୀ ଯେଉଁଠି କେଉଁଠି ଥାଆନ୍ତି । କବିଙ୍କ ଉଚ୍ଚାରଣ ଏହିପରି :

ଆଜି କାଲୁ ଦେଖାହେଲା ସମୟର ଡେଇଁ ଗେରିବାଲି
ତୁମକୁ ଲୁଚାଇଥିଲା ଶ୍ମଶାନତ ଭଙ୍ଗା ନୂଆଖାଲି ।

ପ୍ରେମ କାହିଁ ? ସୌନ୍ଦର୍ଯ୍ୟମୁଗ୍ଧତା କାହିଁ ? ଅପସରି ଯାଇଥାଏ ସୀତା, ଦ୍ରୌପଦୀ, ଉର୍ବଶୀର ରୂପଚେତନା, ବିଦ୍ୟାର୍ଥିନୀ ଶ୍ରମଣା ବା ଅଟଲଇଚ ଦ୍ୱୀପ, ତାଲିମ୍ବ ଦ୍ୱୀପର ବନ୍ଦିନୀ ରୂପ ଚେତନା । ରୋମାଣ୍ଟିକ ଦୃଷ୍ଟି ମହାଲଣ ପଡ଼େ । ବାସ୍ତବ ଧୂସର ସ୍ଥିତି ମଧ୍ୟରେ ସ୍ୱାଧୀନତାକାଳୀନ ଦଙ୍ଗା-କ୍ଷତ ବୈବୁଦ୍ୟମାନା ଭାରତୀୟ ନାରୀର ଆହତ ବିଷାଦଗ୍ରସ୍ତ ମୁହଁଟି ପଲକଟିଏ ପାଇଁ ଝଲସିଉଠି ନିଭିଯାଏ କି ? ସୀତା, ଦ୍ରୌପଦୀର ଲୁହରେ ସଜଳ, ଉର୍ବଶୀର ପ୍ରେମରେ ଜଡ଼ଦଉଡ଼ ମାଟି ଭିତରେ କେଉଁଠି ଭାଙ୍ଗିଯିବାର ଶବ୍ଦ ଶୁଭେ । ଶ୍ମଶାନତ ନୂଆଖାଲିରେ ବିବର୍ଣ୍ଣ ବିଷଣ୍ଣ ଅଳକାକୁ ଦେଖି ଶିହରି ଉଠନ୍ତି କବି । ଇଏ କ'ଣ ସେଇ ସୌନ୍ଦର୍ଯ୍ୟର ପ୍ରତିମା ବନଲତା, ଅଳକା ? ଅନୁଚ୍ଚାରିତ ରହିଯାଏ ପ୍ରଶ୍ନ । ସମୟର ପାଦଶବ୍ଦ ଶୁଭୁଥାଏ । ଏକ କ୍ଷତାକ୍ତ ଭାରତବର୍ଷର ରୂପ କବିଙ୍କୁ ମ୍ରିୟମାଣ କରେ । ଏକ ଅଲକ୍ଷିତ କାରୁଣ୍ୟର ସ୍ୱର ଶୁଭିଯାଏ । ଏହା ରୋମାଣ୍ଟିକ ଭାବ-ଭୂମିରୁ ବାସ୍ତବ ମହାଲଣ ସ୍ଥିତିକୁ କାବ୍ୟଚେତନାର ଆରୋହଣ ।

## ତୃଣି :

ସଚ୍ଚିଦାନନ୍ଦଙ୍କ 'ଅଲକା ସାନ୍ୟାଲ' ରଚନାର ଖୁବ୍ କମ୍ ବ୍ୟବଧାନ ପରେ ଗୁରୁପ୍ରସାଦ ମହାନ୍ତି ତାଙ୍କ 'ଅଲକା ସାନ୍ୟାଲ'ରେ ନୂଆଭାବେ ଆବିଷ୍କାର କରନ୍ତି ଅଲକାକୁ, କାବ୍ୟନାୟିକାକୁ । କାବ୍ୟ-ପରମ୍ପରାର ବିନୀତ ସ୍ମରଣ ଓ ତହିଁରୁ ଋଣ ଗ୍ରହଣରେ ଗୁରୁପ୍ରସାଦ ବେଶ୍ ଉଦାର । କିନ୍ତୁ ତାଙ୍କ ଅଲକା ଭିନ୍ନ । ତା'ର ଭୂମି ଅଛି, ପୁଣି ନାହିଁ । ଆଣ୍ଟି-ରୋମାଣ୍ଟିକ ଭାବର ଶିଳ୍ପୀ ଗୁରୁପ୍ରସାଦଙ୍କର ନାରୀ ଓ ସୌନ୍ଦର୍ଯ୍ୟ ପ୍ରତି ଦୃଷ୍ଟିଭଙ୍ଗୀ ଭିନ୍ନ । ତାଙ୍କ କବିତାରେ ମୁଖ୍ୟତଃ ଦେହ ଓ ତା'ର ଅବକ୍ଷୟ, ସୌନ୍ଦର୍ଯ୍ୟର ବିଲୟ । ଏଣୁ ଅଲକାର ଏକ ଭିନ୍ନ ପରିଚୟ, ଭିନ୍ନ ରୂପାନ୍ତର ।

ଅଲକା ପାଇଁ ଗୁରୁପ୍ରସାଦଙ୍କ କାବ୍ୟନାୟିକ କେଉଁ ଏକ କଳ୍ପନାର କଳ୍ପଲୋକ, ଇତିହାସ ଓ ପୁରାଣର ଦେହଳୀ ମଧ୍ୟରେ ଘୁରି, ନାହାନ୍ତି । ସେ ବି ଚିରନ୍ତନ ସୌନ୍ଦର୍ଯ୍ୟର ମୂର୍ତ୍ତିମତୀ ପ୍ରତିମା ନୁହେଁ । ସଚ୍ଚି ରାଉତରାୟଙ୍କ ଅଲକା ଏଣୁ ଏଠାରେ ସୌନ୍ଦର୍ଯ୍ୟ-ବିସର୍ଜିତ ଏକ ସତ୍ତା । କାମନାବାସନାସର୍ବସ୍ୱା ଉଗ୍ର ସ୍ୱଭାବର ସ୍ୱାଧୀନତା ପରବର୍ତ୍ତୀ ଭାରତୀୟ ନାରୀ । ଏ ରୂପାନ୍ତର କିନ୍ତୁ ସହଜ ସ୍ୱାଭାବିକ ଦିଶେ ନାହିଁ କି ଲାଗେ ନାହିଁ ।

ସ୍ୱାଧୀନତା ପରବର୍ତ୍ତୀ ବାସ୍ତବବାଦୀ ଓ ବସ୍ତୁବାଦୀ ପୃଷ୍ଠଭୂମିରେ ଉଗ୍ର ନାରୀ-ଚରିତ୍ରର ତଥାକଥିତ ଉଗ୍ରତା, ଆଧୁନିକତା କି ଭୋଗସର୍ବସ୍ୱତାକୁ ସିଦ୍ଧ ଉପସ୍ଥାପନ କରିବାର ଆଭିମୁଖ୍ୟ ଗୁରୁପ୍ରସାଦଙ୍କର ଥିଲା ତେବେ ସଚ୍ଚି ରାଉତରାୟଙ୍କର ଅଲକା ସାନ୍ୟାଲକୁ ଗ୍ରହଣ କରିବାର କୌଣସି ବିଶେଷ ଆବଶ୍ୟକତା ଥିଲାବୋଲି ଖୁବ୍ ମନେହୁଏ ନାହିଁ । ସମ୍ବୋଧନରେ 'ତୁମେ' ଯଥେଷ୍ଟ ହୋଇଥାନ୍ତା । ଯେଉଁ ବିଦେଶୀ ପ୍ରବଣତା ଓ ପାଶ୍ଚାତ୍ୟ ଜଗତର ସାଂସ୍କୃତିକ ଅବକ୍ଷୟ ଦ୍ୱାରା ଗୁରୁପ୍ରସାଦ ପ୍ରଭାବିତ ହୋଇଥିଲେ ତଦ୍ୱାରା ସେ ଏ କବିତା ପରିପ୍ରେକ୍ଷୀରେ ଭାରତୀୟ ସ୍ୱାଦଗନ୍ଧ ଓ ସୌନ୍ଦର୍ଯ୍ୟ ଦୃଷ୍ଟିକୁ ପରିହାର କରିଛନ୍ତି । ଗୁରୁପ୍ରସାଦଙ୍କ 'ଅଲକା ସାନ୍ୟାଲ'ରେ ଏଣୁ ପ୍ରେମ ନାହିଁ, ସୌନ୍ଦର୍ଯ୍ୟ ନାହିଁ; ରହିଛି ଭୋଗସର୍ବସ୍ୱତା । ସିଏ ଏକ ଭିନ୍ନ ଅଲକା ସାନ୍ୟାଲ ।

ଗୁରୁପ୍ରସାଦଙ୍କ ଅଲକା ସାନ୍ୟାଲ ସ୍ୱାଧୀନତା ପରବର୍ତ୍ତୀ ଆଧୁନିକ ନାରୀ ବା ନାୟିକା । ସମକାଳର ପ୍ରାଣସ୍ପନ୍ଦନ ସହିତ ବସ୍ତୁସର୍ବସ୍ୱ ଦୃଷ୍ଟିଭଙ୍ଗୀ ପୋଷଣ କରୁଥିବା ସହରୀଚେତନା ଅନୁରାଗୀ ନାରୀର ଜୀବନଚର୍ଯ୍ୟା ଉପସ୍ଥାପନ କରିବା ସ୍ଥୂଳତଃ ଗୁରୁପ୍ରସାଦଙ୍କ ଆଭିମୁଖ୍ୟ । ଆନ୍ତର୍ଜାତିକ ଦୃଷ୍ଟିକୋଣ ଓ ପାଶ୍ଚାତ୍ୟ ଜୀବନଦୃଷ୍ଟିକୁ ଗ୍ରହଣ କରିବା ପରିପ୍ରେକ୍ଷୀରେ ସେ ହୁଏତ ଇଲିଅଟ୍ ଓ ବୋଦଲେୟାର ପ୍ରମୁଖଙ୍କ ସୂତ୍ରରୁ ନାରୀକୁ ଏକ ଯୌନସର୍ବସ୍ୱ ଓ କାମନାର ବସ୍ତୁଭାବେ ଚିତ୍ରଣ କରିବା ମାନସିକତା ପୋଷଣ କରିଛନ୍ତି । ଆଧୁନିକ ନାରୀ ଚରିତ୍ରର ଏହା ଏକ ଦିଗ ମାତ୍ର । ବିଶ୍ୱଯୁଦ୍ଧ ପରବର୍ତ୍ତୀ ଯନ୍ତ୍ର ଜୀବନ ଓ

ସହସ୍ର ଚେତନା ଅଧ୍ୟୁଷିତ ସମୟର ପରିଚୟ ଉପସ୍ଥାପନ ଅନ୍ୟତମ ଲକ୍ଷ୍ୟ । ଏ ଦୁଇ ଲକ୍ଷ୍ୟ ଦିଗରେ ସଚ୍ଚିଦାନନ୍ଦଙ୍କ ଅଲକାକୁ ଏକ ସୂକ୍ଷ୍ମ/ହେତୁ ଭାବେ ନେଇଛନ୍ତି । ଏ ଦୁଇ ଅଲକାଙ୍କ ମଧ୍ୟରେ ଦୂରତ୍ୱର ଓ ବସ୍ତୁର ଆତ୍ମିକ ବ୍ୟବଧାନ ଏଣୁ ।

ଛନ୍ଦଗୋଟି ପର୍ଯ୍ୟାୟ ଓ ଢଙ୍ଗରେ ଗୁରୁପ୍ରସାଦଙ୍କ ଅଲକା ସାନ୍ୟାଲର ଉପସ୍ଥାପନ । ଛତିଶ ଧାଡ଼ିର ଏ କବିତାରେ ଆଠଧାଡ଼ି ସଚ୍ଚିଦାନନ୍ଦଙ୍କ ଅଲକା ସହିତ ସ୍ୱକୀୟ ଅଲକାର ସହାବସ୍ଥାନ ଓ ପୃଥକୀକରଣ । ଆଠଧାଡ଼ି ସମକାଳୀନ ପରିବେଶର ଉପସ୍ଥାପନ । ଅବଶିଷ୍ଟ କୋଡ଼ିଏ ଧାଡ଼ି ଆଧୁନିକତା ସମ୍ପନ୍ନ ନାରୀଭାବେ ଅଲକାର ରୁଟିନ୍‌ବନ୍ଧା ଜୀବନଧାରାର ବିବରଣୀ ପ୍ରଦାନ । ଏସବୁ ମିଶି ଏକ ସାମଗ୍ରିକ ଆବେଦନ । 'ତୁମକୁ ବା ସଚ୍ଚିବାବୁ ଦେଖିଥିଲେ କେବେ ଜାଣେ ନାହିଁ ଅଲକା ସାନ୍ୟାଲ୍'—ପ୍ରାରମ୍ଭିକ ଏ ଉଚ୍ଚାରଣ ଭିତରେ ଗୁରୁପ୍ରସାଦଙ୍କର ପରମ୍ପରାହୀନତାର ସ୍ୱର ସ୍ପଷ୍ଟ । ଅଲକାର ପାରମ୍ପରିକ ସୌନ୍ଦର୍ଯ୍ୟବୋଧ ପରିଚୟକୁ ସେ ଅସ୍ୱୀକାର କରନ୍ତି ବା ଭର୍ତ୍ସି ଦେବାକୁ ଚାହାଁନ୍ତି । ଏଣୁ ଅଲକା ସହ ସାକ୍ଷାତ ହେଲାବେଳେ ସ୍ୱର୍ଣ୍ଣଚୂଡ଼ା ଅବା ହରିଣୀର ଚାଲିପରି ଆକାଶର ଶୋଭା ଦିଶିଯିବା କିମ୍ବା ଗୋଲହୋଇ ହଳଦିଆ ଜହ୍ନର ମଶାଲ ଜଳିବା ପରି ଏକ ପରିବେଶ ଥିବା ନଥିବା ଗୁରୁପ୍ରସାଦଙ୍କ କାବ୍ୟନାୟକ ପାଇଁ ଗୁରୁତ୍ୱପୂର୍ଣ୍ଣ ନୁହେଁ ।

ତୁମକୁ ବା ସଚ୍ଚିବାବୁ ଦେଖିଥିଲେ କେବେ
ଜାଣେ ନାହିଁ ଅଲକା ସାନ୍ୟାଲ
ସେତେବେଳେ ଆକାଶରେ ସ୍ୱର୍ଣ୍ଣଚୂଡ଼ା ଅବା ହରିଣୀର ଚାଲି
ଅବା ଥିଲା ଗୋଲ ହୋଇ ହଳଦିଆ ଜହ୍ନର ମଶାଲ ।

ଗୁରୁପ୍ରସାଦ ଅଲକାକୁ ଭିନ୍ନ ପରିବେଶରେ ଭିନ୍ନ ଭାବରେ ଦେଖନ୍ତି । ତା'ର ପରିଚୟ ପୂରା ଅଲଗା । ତା'ର ଅତୀତ ନାହିଁ । ଅଲକାର ବେଶପୋଷାକ ଓ ଚାଲିଚଳନ ସହଜ । ସେ ହୁଏତ ଚାକିରିଆଣୀ । ପୁରୁଷ ସହ ପାଦମିଳାଇ ଚାଲେ । ଆଧୁନିକ ପରିପାଟୀରେ ସଜ ହୁଏ । ହୁଏତ କିଛିଟା ଲଜ୍ଜାଶୀଳା କିନ୍ତୁ ସାଙ୍ଗେସାଙ୍ଗେ ନିଜ ଗ୍ରନ୍ଥିମୁକ୍ତ ଓ ଚଞ୍ଚଳ ହୋଇପାରେ । ଏ ଅଲକାକୁ କବି କେଉଁ ପରିବେଶରେ ତେବେ ପ୍ରତ୍ୟକ୍ଷ କରନ୍ତି ? ଯୁଦ୍ଧଧ୍ୱାନ୍ତ ସହସ୍ର ଯାନ୍ତ୍ରିକ ପରିବେଶରେ । ସେ ଆଙ୍କିଥିବା ପରିବେଶଟି କ୍ଲାନ୍ତି, କୋଳାହଳ, ଯାନ୍ତ୍ରିକତା, ନିଷ୍ପ୍ରାଣ ନିର୍ବେଦ ଭାବର ଏକ ସମବାୟ । 'ଖାକି ଆଉ ଫିଲଡ୍ ଗ୍ରେ ଧୂଳି', ସିଗାରେଟ ଧୂଆଁ, ଜଟେଫୁଲ୍ କାଗଜଫୁଲ୍, କାଠ ବାଦୁଡ଼ିର ଚେଁ ଚୁଁ, କୋଇଲାର ଧୂଆଁ ଆଦି ଦୃଶ୍ୟଧର୍ମୀ ଉପସ୍ଥାପନ ଯୁଦ୍ଧଧ୍ୱାନ୍ତ ନିଷ୍ପ୍ରାଣ କ୍ଲାନ୍ତ ଯନ୍ତ୍ର ଜୀବନର ପ୍ରତୀକତା କରେ । ଏହା ସଦ୍ୟ ସ୍ୱାଧୀନତାପ୍ରାପ୍ତି ପରବର୍ତ୍ତୀ ଭାରତୀୟ ପରିବେଶ ? ପ୍ରଶ୍ନ ଉଠେ । 'ପ୍ରଥମା ନାୟକ' ପର୍ଯ୍ୟାୟରୁ ଆମ କବିତାରେ ଖାକି (ଖାକିର ହସ)ର

ଅନୁପ୍ରବେଶ ଘଟିଲଣି । ଯୁଦ୍ଧରତ ସୈନିକର ପୋଷାକ ପ୍ରସଙ୍ଗରୁ ଆହରଣ ଏ ଦୃଷ୍ଟି ଯୁଦ୍ଧଜନିତ ବିଶୃଙ୍ଖଳତା ଓ ଧୂସରତାର ସୂଚନା ଦିଏ । ସିଗାରେଟ ଧୂଆଁ କ୍ଲାନ୍ତିର, କଣ୍ଟଫୁଲ୍ କାଗଜଫୁଲ କୃତ୍ରିମତା ଓ ପ୍ରାଣହୀନତାର, କାଉ ଓ ବାଦୁଡ଼ିର ଚେଁ ଚୁଁ ଚିରଚଞ୍ଚଳ ଜୀବନ ଓ କୋଳାହଳର, କୋଇଲା ଧୂଆଁ କଳ୍ପିତ ଭାବେ କଳକାରଖାନା ଓ ଯାନ୍ତ୍ରିକସଭ୍ୟତାର କଥା ସୂଚାଇଥାନ୍ତି । ମୋଟାମୋଟି ଏପ୍ରକାର ପରିବେଶ ଆଧୁନିକ ସହରୀ ପରିବେଶ । ତା'ଭିତରେ ଯା'ଆସ ହୁଏ—ଜୀବନ ଜୀଏଁ ଅଲକା—ଯୁଗୀୟ ନାୟିକା ।

ଅଲକାର ଆଧୁନିକତା ସ୍ୱୀକାର୍ଯ୍ୟ । ସେ ଜୋତା ଷ୍ଟ୍ରାପ୍ ଧୀରେ ଧୀରେ ଖୋଲେ । ତା'ର ଦେହ ଅଛି, କାମନା ଅଛି । କିନ୍ତୁ ହେଲେବି ତଥାକଥିତ ଶୃଙ୍ଖଳା ଓ ନୈତିକତାକୁ ସ୍ୱୀକାର କରିବାର ଇଚ୍ଛା ମାନେନାହିଁ । ବିଛଣାରେ ଅକସ୍ମାତ୍ ତା'ର ବେଣୀ, ଶାଢ଼ି ଅସଂଯତ ହେବାରେ ଅସ୍ୱାଭାବିକତା ନଥାଏ କିଛି । ସବୁ କିନ୍ତୁ ସହଜ ଓ ସ୍ୱାଭାବିକ ତା' ପାଇଁ । କୌଣସି ଗ୍ଲାନି, ଗୋପନୀୟତା, ଶୃଙ୍ଖଳାର ସେ ଧାର ଧାରେନାହିଁ । ପର ମୁହୂର୍ତ୍ତରେ ସେ ମେକ୍‌ଅପ୍ ଲଗାଇ ଟାଉନ୍‌ହଲ୍ ସଭାରେ ଉପସ୍ଥିତ ହୋଇଯାଏ । ଘର-କୋଣର ଶୃଙ୍ଖଳାବଦ୍ଧ ଜୀବନଯାପନକୁ ସେ ସ୍ୱୀକାର କରେନା । ସ୍ୱାଧୀନ ଆଉ ମୁକ୍ତ ତା'ର ମାନସିକତା । ମୁକ୍ତ ତା'ର ପ୍ରେମ ଓ କାମନାର ଚରିତାର୍ଥତା । ଅଲକାକୁ ଦେଖିବାର ଦୃଷ୍ଟି ଏଣୁ :

ତୁମକୁ ମୁଁ ଦେଖିପାରେ ଜୋତା ଷ୍ଟ୍ରାପ୍ ତୁମେ ଧୀରେ ଖୋଲ
ତୁମେ ଆସି ଲେଟିପଡ଼ ବିଛଣାରେ ବେଣୀ ଆଉ ଶାଢ଼ି ଅସଂଯତ
ତୁମେ ପୁଣି ଆସ୍ତେ ଉଠ ଲୁଗାପଟା ଠିକ୍‌ଠାକ୍ କର
ଟାଉନହଲ୍ ସଭାରେ ମୁଁ ପାଏ ତୁମର ସାକ୍ଷାତ ।

କବିତାର ମଧ୍ୟ-ପର୍ଯ୍ୟାୟରେ କବି ଗୁରୁପ୍ରସାଦ ଯେଉଁ ଦୁଇଟି ପରିବର୍ତ୍ତିତ ପ୍ରେକ୍ଷାପଟ ଦେଇ ଅଲକା ଆସିଛି, ତା'ର ସମ୍ବାଦ ଓ ସୂଚନା ଦେଇଛନ୍ତି । ପ୍ରଥମଟି ଚନ୍ଦ୍ରରଥ ଗନ୍ଧର୍ବ ପ୍ରସଙ୍ଗ, ଦ୍ୱିତୀୟଟି ଦଙ୍ଗାଗ୍ରସ୍ତ ନୂଆଖାଲି ପଠାଣବସ୍ତି ପ୍ରସଙ୍ଗ । ପ୍ରଥମଟିରେ ପ୍ରେମର ନିଷ୍ଠା ଓ ସାତ୍ତ୍ୱିକତାର ଚିତ୍ର, ଦ୍ୱିତୀୟଟିରେ ଦଙ୍ଗାଜନିତ ହିଂସାଜର୍ଜରିତ ସ୍ୱାଧୀନତାକାଳୀନ ସମୟର ଚିତ୍ର । ପରିବର୍ତ୍ତିତ ପ୍ରେକ୍ଷାପଟରେ ପ୍ରେମର ସ୍ୱରୂପ ବିବର୍ତ୍ତିତ ଓ ସମୟ ମଧ୍ୟ ଭିନ୍ନ—ଏତିକି ସୂଚାଇବା ଗୁରୁପ୍ରସାଦଙ୍କ ଉଦ୍ଦେଶ୍ୟ । ସ୍ୱକୀୟ ଅନ୍ତର୍ମୁଖୀ ଦୃଷ୍ଟିରୁ ସେ ସଚ୍ଚି ରାଉତରାୟଙ୍କ ଅଲକାକୁ ସ୍ମରଣ କରନ୍ତି । ପୁନର୍ବାର କବି ଏକାପ୍ରକାର ପରିବେଶ ମଧ୍ୟ ଦେଇ ଅଲକାର ଦିନଚର୍ଯ୍ୟା ବା ଜୀବନଚର୍ଯ୍ୟାର ଚିତ୍ର ବାଢ଼ନ୍ତି । ଏ ପଂକ୍ତିରେ କଳ୍ପନାର ଚିତ୍ରକଳ୍ପଟିଏ ଉପସ୍ଥାପନ କରିବା ଗୁରୁତ୍ୱପୂର୍ଣ୍ଣ ମନେହୁଏ ।

ଆକାଶରେ ଜହ୍ନ ପୁଣି ଦେଖାଦିଏ ତା'ର ତଳେଓଠ ଶିରରେ କାମୁଡ଼ି, ଜହ୍ନ ଭିତରେ ନିଷ୍ପ୍ରାଣ ସୌନ୍ଦର୍ଯ୍ୟକୁ ପ୍ରତ୍ୟକ୍ଷ କରିବା ତଥା କ୍ଷୁଧା, ଦାରିଦ୍ର୍ୟ ଓ ଯନ୍ତ୍ରଜୀବନର ଯନ୍ତ୍ରଣାକୁ ଅଙ୍ଗେ ନିଭେଇବାର ଯତ୍କିଞ୍ଚିତ୍ ଉପଲବ୍ଧ ସଚ୍ଚି ରାଉତରାୟଙ୍କ 'ଟିଣର ଜହ୍ନ', 'ରୁଟିର ଜହ୍ନ' ପର୍ଯ୍ୟାୟରୁ ପ୍ରବେଶକଲାଣି ଆମ କବିତାରେ । ଏଠାରେ ଜହ୍ନ ମ୍ରିୟମାଣ, ହୃତ୍ସର୍ବସ୍ୱ ଓ କ୍ରୋଧ ଜର୍ଜରିତ । ସୌନ୍ଦର୍ଯ୍ୟ ଚେତନା ଅପମୃତ୍ୟୁ ଓ ପ୍ରାଣହୀନତା କବଳିତ । ଏ ପରିବେଶ ଏକ ବିପନ୍ନ ବିବର୍ଣ୍ଣ ପରିବେଶ ।

ଏହାପରେ ଟାଉନହଲରେ ଅଲକା 'ଝଡ଼ପରି ଭାଷଣ ବକ୍ତୃତା' ଦେବାର ଦେଖନ୍ତି କବି ଯେଉଁଥିରେ ପ୍ରାଣ ନଥାଏ କି ଜୀବନ ନଥାଏ । ଏହା କାହାର ସ୍ୱାଧୀନତା, ଆଧୁନିକତା, ମୁକ୍ତ ମାନସିକତା ? କାମନାହୀନ ସ୍ୱପ୍ନ ଯନ୍ତ୍ରଜୀବନ ଅଭ୍ୟନ୍ତ ତା'ର ଦେହ ଭିତରେ ଅବକ୍ଷୟ, ନିଷ୍ପ୍ରାଣତା ହିଁ ଭରି ଯାଉଥିବାର ପ୍ରତ୍ୟକ୍ଷ କରନ୍ତି କବି । ତା'ର ଦେହ ବା ସେ କାଗଜ ପାଲଟିଯିବା କି ଛିଣ୍ଡା ଚଟିର ଅବଶିଷ୍ଟାଂଶ ପାଲଟିଯିବା ଭିତରେ ସୌନ୍ଦର୍ଯ୍ୟର ପ୍ରାଣହୀନତା ସୂଚିତ ହୁଏ । ଅଲକାର କୌଣସି ସୁସ୍ଥ ସମ୍ମୁଖ ପରିଚୟ ରହିନାହିଁ ।

ମୁଁ ତୁମର ଶୁଣେ ଆଜି ଝଡ଼ପରି ଭାଷଣ ବକ୍ତୃତା
ମୁଁ ଦେଖେ ତୁମର ଦେହ ହଠାତ୍ ଯାଏ କାଗଜ ପାଲଟି···

ଗୁରୁପ୍ରସାଦ ସମକାଳୀନ ପରିବେଶର ଯାନ୍ତ୍ରିକତା, ପ୍ରାଣହୀନତାକୁ ସୂଚେଇବାକୁ ଯାଇ କବିତାର ଅନ୍ତିମ ପର୍ଯ୍ୟାୟରେ ଭଙ୍ଗା ନୂଆଖାଲି ସହ ବିପଣୀସମୃଦ୍ଧ ଆଧୁନିକ ଭାରତୀୟ ସଭ୍ୟତାର ପୀଠ କଲିକତା ଓ ଦିଲ୍ଲୀର ଉଲ୍ଲେଖ କରନ୍ତି । ତା'ମଧ୍ୟରେ ଆଧୁନିକ ସ୍ଥାନକାଳ ସର୍ବୋପରି ଆଧୁନିକ ସଭ୍ୟତାର ବାସ୍ତବରୂପକୁ କବି ଉପସ୍ଥାପନ କରିବାକୁ ଚାହାଁନ୍ତି । କଲିକତା ଓ ଦିଲ୍ଲୀର ସହରି ଜନଜମାଣ ଓ ଯାନ୍ତ୍ରିକତା ଠିକ୍ କଟକର ଗଳିରାସ୍ତା ଓ ଛକକୁ କବି ଏକାଠି ଦେଖାନ୍ତି—ସବୁଠି ମୋଟାମୋଟି ଏକ ଯାନ୍ତ୍ରିକ ସ୍ଥିତି । ପ୍ରତିଟି ଗୃହ ହେଠି ଯନ୍ତ୍ରଣାକ୍ତ, ତାହା ଏକ ବୃଗ୍ଣ ସକାଳକୁ ଜନ୍ମଦିଏ । ଗୁରୁପ୍ରସାଦ ଭାରତୀୟ ଜୀବନଧାରା ଓ ପରିବେଶ ମଧ୍ୟରେ ଏକ ବିପନ୍ନତା, ପ୍ରାଣହୀନତାର ସ୍ୱର ଶୁଣିପାରନ୍ତି । ଏ ବାସ୍ତବତାଟି ପ୍ରକୃତ ବାସ୍ତବତା କି ଗୁରୁପ୍ରସାଦଙ୍କ ଆହରିତ ବାସ୍ତବତା ତାହା ଅବଶ୍ୟ ଏକ ପ୍ରଶ୍ନହୋଇ ରହିଥାଏ । ହୁଏତ ବିଂଶଶତକର ଶେଷପାଦରେ ଏହି ବିପନ୍ନତା ଓ ପ୍ରାଣହୀନତାର ଉପଲବ୍ଧି ଆସେ । କିନ୍ତୁ ସ୍ୱାଧୀନତା ପରବର୍ତ୍ତୀ ଭାରତୀୟ ପରିବେଶ ଓ ମାନସିକତା କ'ଣ ଏତେ ଧୂସର ଓ ମ୍ରିୟମାଣ ? ମନେହୁଏ ନାହିଁ । କବିଙ୍କ ପଂକ୍ତିଟି ଏହିପରି—

ଭଙ୍ଗା ନୂଆଖାଲିରେ ବା କଲିକତା ନୂଆଦିଲ୍ଲୀ ଆଡ଼େ
କାଉ ଆଉ ବାଦୁଡ଼ିର ଚେଁ ଚାଁ, ପୁଣି ଏତେ ଯିବା ଓ ଆସିବା

କଣ୍ଟକର ଗନ୍ଧକନ୍ଧ ଗ୍ରନ୍ଥା ଗ୍ରନ୍ଥା ଛକରେ ଛକରେ
ଘଡର ପ୍ରସୂତ କଷ୍ଟ ସକାଳର ରୁଗ୍‌ଣ ଜନ୍ମ ନେବ। ।

ଏହିପରି ରୁଗ୍‌ଣତା, ବିପର୍ଯ୍ୟସ୍ତତା ଭିତରେ ଅଳକାର ପ୍ରେମ, ମାତୃତ୍ୱପ୍ରାପ୍ତି, ସୌଖୀନବିଳାସ କାହିଁ ରହିବ—ଯେଉଁଠାରେ ନା ଥାଏ ପ୍ରାଣ ନା ଥାଏ ସ୍ପନ୍ଦନ । ତା'ର କ୍ରମଶଃ କ୍ଷୟିଷ୍ଣୁମାଣ ଦେହ ଓ ସୌନ୍ଦର୍ଯ୍ୟ ମଧ୍ୟରେ କବି ତା'ପ୍ରତି ଅନୁରାଗ ପୋଷଣ କରନ୍ତି, ପ୍ରେମ ନିବେଦନ କରନ୍ତି, ସ୍ୱପ୍ନ ଦେଖନ୍ତି । ପ୍ରକୃତରେ ତାହା କ'ଣ ପ୍ରେମ ଓ ସ୍ୱପ୍ନ ? ଢିଲ ପାଇଜାମା କାମିଜ୍ ଅମରାବତୀ ପାଲଟେ । କବିଙ୍କର ଗଭୀର ଆତ୍ମବ୍ୟଙ୍ଗ ଓ ଆଧୁନିକ ଜୀବନପ୍ରତି ଶ୍ଳେଷ ପ୍ରକଟିତ ହୋଇଛି । ଅବକ୍ଷୟ ଓ ବିଡ଼ମ୍ବନା କାବ୍ୟନାୟକ ପାଇଁ ସତ୍ୟ ହୋଇ ଉଠିଛି । ପ୍ରେମହୀନତା ହିଁ ତାର ପ୍ରେମ, ସୌନ୍ଦର୍ଯ୍ୟହୀନତା ହିଁ ସୌନ୍ଦର୍ଯ୍ୟ । ଅଳକା ସଂପର୍କରେ ଅନ୍ତିମ ଉଚ୍ଚାରଣ ଏହିପରି—

ତା' ଭିତରେ ତୁମେ ପୁଣି ପ୍ରେମକର, ଗର୍ଭବତୀ ହୁଅ
ସିନେମାର ହ୍ୟାଣ୍ଡବିଲ୍ ମୁଁ ଦେଖିଛି ତୁମର ଦେହରେ
ପବନ ତୁମକୁ ଯେବେ ଆସ୍ତେ ନିଏ ବାଲିରୁ ସାଉଁଟି
ମୁଁ ତୁମକୁ ସ୍ୱପ୍ନ ଦେଖେ ମୋର ଢିଲା ପାଇଜାମା କାମିଜର ଅମରାବତୀରେ ।

ପାଞ୍ଚ :

ଜୀବନାନନ୍ଦଙ୍କ 'ବନଲତା ସେନ୍'ରେ ପ୍ରେମ ଓ ସୌନ୍ଦର୍ଯ୍ୟମୁଗ୍‌ଧତା ମୁଖ୍ୟ—ତାହା ଏକ ଦାର୍ଶନିକ ଉପଲବ୍‌ଧିରେ ପହଞ୍ଚିଛି । ସେଥିରେ ଇତିହାସର ସ୍ପର୍ଶ ରହିଛି—ପରମ୍ପରାର ଅନୁରାଗ ମଧ୍ୟରେ ହୃଦୟ ବିନିମୟର ଭାଷା ରହିଛି—ଜୀବନ ଦର୍ଶନ ରହିଛି । ପ୍ରେମର ଅନ୍ୱେଷାବୋଧ ଭିତରେ ଏକ ମୁଗ୍‌ଧ ବ୍ୟାକୁଳତା ରହିଛି । ଜୀବନାନନ୍ଦଙ୍କୁ ଶ୍ରଦ୍ଧା ଓ ସମ୍ମାନର ସହ ସ୍ମରଣକରି ଅନ୍ୟତମ ଓଡ଼ିଆ କବି ଭାନୁଜୀ ରାଓ ଲେଖିଛନ୍ତି—

ତୁମେ କ'ଣ ଲୋଡ଼ିଥିଲ କ୍ଷଣିକେ ଆଶ୍ରୟ
ପକ୍ଷୀର ନୀଡ଼ ପରି/ବନଲତା ଆଖି ପଲ୍ଲବୀରେ
ଦିଗ୍‌ଭ୍ରାନ୍ତ ନାବିକର ବାଟଚଲା/ଦିଶିନାହିଁ ଦାରୁଚିନି
ଵୀପର ଅନ୍ଧାରେ ?                    (ଜୀବନାନନ୍ଦ : ଦର୍ପଣ ଆଗରେ : ୧୯୯୫)

ସଚ୍ଚିଦାନନ୍ଦଙ୍କ 'ଅଳକା ସାନ୍ୟାଲ' ବନଲତା ସେନ୍‌ର ବିପରୀତ ଭିନ୍ନ ପ୍ରତିରୂପ । ଏଥିରେ ପ୍ରେମ ଓ ସୌନ୍ଦର୍ଯ୍ୟପ୍ରତି ଏକ ମୁଗ୍‌ଧ ଗମ୍ଭୀର ଦୃଷ୍ଟିଭଙ୍ଗୀ ରହିଛି—ରହିଛି ଇତିହାସ, ପୁରାଣ ସର୍ବୋପରି ପରମ୍ପରାର ସ୍ପର୍ଶ । ରହିଛି ମଧ୍ୟ କଳ୍ପନାର କଳ୍ପଲୋକରେ

ସ୍ୱପ୍ନମୁଗ୍ଧ ହୋଇ ରହିବାର ବିଭୋର ବ୍ୟାକୁଳତା, କିନ୍ତୁ ପରିଣତରେ ସନ୍ତ୍ରାସ ଅସ୍ଥିର ସମକାଳର ବ୍ୟାକୁଳତା ସହିତ ଅଳକାକୁ ସାମିଲକରି ସଚ୍ଚିଦାନନ୍ଦ ତାଙ୍କୁ ଏକ ଭିନ୍ନ ରୂପାନ୍ତର ଦେଇଛନ୍ତି । ଏ ରୂପାନ୍ତର ବଡ଼ ହୃଦ୍ୟ ଓ ସ୍ପର୍ଶକାତର । ମୁଗ୍ଧ ବିଭୋର ଭାବ ସହିତ କାରୁଣ୍ୟର ସମନ୍ୱୟ ତଥା ପରିବର୍ତ୍ତିତ ଭାରତୀୟ ପ୍ରେକ୍ଷାପଟରେ ପୁନଃସ୍ଥାପନ ସଚ୍ଚିଦାନନ୍ଦଙ୍କର ବିଶେଷତ୍ୱ ।

ଗୁରୁପ୍ରସାଦଙ୍କ 'ଅଳକା ସାନ୍ୟାଲ' ସମ୍ପୂର୍ଣ୍ଣ ନୂଆ । ସେ ପରମ୍ପରାମୁକ୍ତା । ତା'ର ଅତୀତ ଥିଲେ ବି ତାହା ଗୁରୁତ୍ୱପୂର୍ଣ୍ଣ ନୁହେଁ । ସେ ଇତିହାସରେ କି ପୁରାଣରେ ନଥାଏ—ନଥାଏ କବିର କଳ୍ପନାର କଳ୍ପଲୋକରେ । ସୌନ୍ଦର୍ଯ୍ୟ ସେଠି କବିର ଉପଜୀବ୍ୟ ନୁହେଁ । ଯୁଦ୍ଧ ପରବର୍ତ୍ତୀ ସହରର ବସ୍ତୁବାଦୀ ଓ ଯାନ୍ତ୍ରିକ ଜୀବନର ବାସ୍ତବତା ଭିତରେ ଅଳକା ଜୀର୍ଣ୍ଣ ଓ ଆତଯାନ ହୁଏ । ସୌନ୍ଦର୍ଯ୍ୟ ଅପେକ୍ଷା ଭୋଗସର୍ବସ୍ୱତା, ଦେହ ଭିତରେ ସୌନ୍ଦର୍ଯ୍ୟର ମୃତ୍ୟୁ ଓ ଅବକ୍ଷୟ, କଳ୍ପନା ଅପେକ୍ଷା ବାସ୍ତବତାବୋଧ ସେଠି ଗୁରୁତ୍ୱପୂର୍ଣ୍ଣ ହୋଇଉଠିଛି । ଗୁରୁପ୍ରସାଦଙ୍କ ହାତରେ ବନଲତା, ଅଳକା ଭିନ୍ନ ରୂପାନ୍ତର ପାଇଛନ୍ତି । ଗୁରୁପ୍ରସାଦଙ୍କ କବିତା ଭିନ୍ନ ଏକ ମାନସିକତାର ପରିଚୟ ବହନ କରିଛି, ଯାହା ସଚ୍ଚିଦାନନ୍ଦଙ୍କ ଅଳକା ସହ ସମ୍ବନ୍ଧାନ୍ୱିତ ନୁହେଁ । ଜୀବନାନନ୍ଦଙ୍କ ରୋମାଣ୍ଟିକ ଦୃଷ୍ଟି ସଚ୍ଚିଦାନନ୍ଦଙ୍କ ବାସ୍ତବବାଦୀ ରୋମାଣ୍ଟିକ ଚିନ୍ତାଧାରାରେ ରୂପାନ୍ତରିତ । ପୁଣି ସଚ୍ଚିଦାନନ୍ଦଙ୍କ ଏଇ ଧାରାଟି ଗୁରୁପ୍ରସାଦଙ୍କଠାରେ ଆଣ୍ଟିରୋମାଣ୍ଟିକ ବାସ୍ତବବାଦୀ ଧାରାରେ ପରିଣତ । ଗୁରୁପ୍ରସାଦଙ୍କର ଏ ପରମ୍ପରାଭିନ୍ନତା, ନୂଆର ଉପଲବ୍ଧି, ଆଣ୍ଟିରୋମାଣ୍ଟିକ ଦୃଷ୍ଟି ତଥାକଥିତ ଆଧୁନିକତାର ଅନ୍ୟତମ ଲକ୍ଷଣ ?



# ଚିତ୍ର ଓ ସୌନ୍ଦର୍ଯ୍ୟ :
# ଭାନୁଜୀ ରାଓଙ୍କ କବିତା

ଏକ :

କବି ଭାନୁଜୀ ରାଓ (୧୯୨୬) ଉତ୍ତରପର୍ଯ୍ୟାୟ କାଳରୁ ଏକନିଷ୍ଠ ଭାବେ କବିତା-ରଚନା ନିରତ । ୧୯୫୫ରେ 'ନୂତନ କବିତା' ଗ୍ରନ୍ଥରେ ସେ ଗୁରୁପ୍ରସାଦ ମହାନ୍ତିଙ୍କ ସହ ଏକତ୍ର ପ୍ରକାଶିତ ହୋଇଥିଲେ । ପରବର୍ତ୍ତୀ ସମୟରେ ପ୍ରକାଶିତ ତାଙ୍କ କବିତା ସଙ୍କଳନ-ଗୁଡ଼ିକ ହେଉଛନ୍ତି 'ବିଷାଦ ଏକ ଋତୁ' (୧୯୭୩), 'ନଈ ଆରପାରି' (୧୯୮୬) ଏବଂ 'ଚନ୍ଦନ ବନରେ ଏକା' (୧୯୯୪) । ଏହି ତ୍ରିଶ ଦଶନ୍ଧିର କାବ୍ୟିକ ପ୍ରକ୍ରିୟା ଓ ବିବର୍ତ୍ତନକୁ ଲକ୍ଷ୍ୟକଲେ ମନେହେବ କବି ଭାନୁଜୀ ମୁଖ୍ୟତଃ ସୌନ୍ଦର୍ଯ୍ୟର ଏକ ମୁଗ୍ଧ ଉପାସକ । ତାଙ୍କ କବିତା ବହୁବିଧ ଚିତ୍ରର ଚିତ୍ରଶାଳା । କବିଙ୍କ ସୌନ୍ଦର୍ଯ୍ୟ ଚେତନାଟି ପ୍ରେମ, ଦେହବୋଧ, ନିଃସଙ୍ଗଭାବନା ସର୍ବୋପରି ପାର୍ଥିବ ଜୀବନବିଳାସରେ ଯେତିକି ଉଚ୍ଛୁସିତ ସମୁଦ୍ର, ନକ୍ଷତ୍ର, ଜହ୍ନ, ମେଘ ବିଶେଷତଃ ଆକାଶ ମନସ୍କତାରେ ସେତିକି ଅଭିଷିକ୍ତ । ଦୃଶ୍ୟମୁଗ୍ଧତାଠାରୁ ଦୃଶ୍ୟାନ୍ତର ମୋହ ବା ଅସୀମ ଦ୍ୟୋତନା ଯାଏଁ ଭାନୁଜୀଙ୍କ କାବ୍ୟ ବଳୟ ପରିବ୍ୟାପ୍ତ । ସୌନ୍ଦର୍ଯ୍ୟ ଚେତନାରେ ଦେହ ଅଛି, ଅଛି କ୍ଷୟ-ଶୀଳତାର ଭାବନା । ଅଛି ନିବିଡ଼ ଆତ୍ମୀୟତାବୋଧ ପୁଣି ଧୂସର ନିଃସଙ୍ଗତା । କାମନାର ତୀକ୍ଷ୍ଣ କାନ୍ତବର୍ଣ୍ଣ ସହିତ ରହିଛି ଦେହୋତ୍ତର ଜଗତକୁ ଚାଲିଯିବାର ପ୍ରବଣତା । ଭାନୁଜୀଙ୍କ କବିଦୃଷ୍ଟି କେତେବେଳେ ମା' ଓ ମାଟିମନସ୍କ ତ କେତେବେଳେ ଆକାଶ ଓ ସମୁଦ୍ରର ନୀଳିମାମନସ୍କ । ସେ ସମୁଦ୍ର କନ୍ୟାର ଲବଣାକ୍ତ ଦେହ ଲୋଡ଼ନ୍ତି, ଲୋଡ଼ନ୍ତି ବି ଉଜ୍ଜ୍ୱଳ ମୁକ୍ତା ।

ନାରୀ ଓ ପ୍ରକୃତି ଭାନୁଜୀଙ୍କ କବିତାର ମୁଖ୍ୟ ଉପାଦାନ । ଏହା ଯଥାକ୍ରମେ ପାର୍ଥିବତା ଓ ଅପାର୍ଥିବତାର ପ୍ରତୀକତା କରେ । ସୌନ୍ଦର୍ଯ୍ୟ, ନାରୀ ଓ କବିତା ତାଙ୍କ ପାଇଁ ଯେମିତି ଏକ ଓ ଅଭିନ୍ନ । ଭାନୁଜୀଙ୍କ କାବ୍ୟଜଗତ ଆଧୁନିକ ଜୀବନବୋଧର ପ୍ରତିଫଳନ ନିଶ୍ଚୟ; କିନ୍ତୁ ତାହା ସମକାଳୀନତାର ଯଥେଷ୍ଟ ଧାର ଧାରେନାହିଁ । ଯଦିଓ ସହର ଚେତନା, ସମୟର ରଙ୍ଗଯନ୍ତ୍ରଣା, ସଂହାସ ଅଧ୍ୟୁଷିତ ସମକାଳ, ଗାନ୍ଧିଜୀ ଓ ଭାରତବର୍ଷ ଉପରେ ତାଙ୍କର ଅଳ୍ପକେତୋଟି କବିତା ରହିଛି । ଭାନୁଜୀଙ୍କ କବିତାରେ ଏକ ନଷ୍ଟାଲ୍‌ଜିକ

ମୋହ ପରିଲକ୍ଷିତ, ମୁଖ୍ୟତଃ ତାଙ୍କ କଣ୍ଟକ ଓ କାଠଯୋଡ଼ି ମାନସିକତା ନେଇ ରୂପାୟିତ । ପୃଥିବୀ, ଆକାଶ, ସମୁଦ୍ର ଓ ପ୍ରକୃତିର ଅନ୍ୟ ଉପାଦାନ ସହ ସ୍ୱସତ୍ତାର ସମନ୍ୱୟ, ସୌନ୍ଦର୍ଯ୍ୟର ଆବାହନ, ସୌନ୍ଦର୍ଯ୍ୟ ସମ୍ବୋଧନ ଏବଂ ସୌନ୍ଦର୍ଯ୍ୟର କ୍ଷୟଶୀଳତାର ଉପଲବ୍ଧି ମଧ୍ୟଦେଇ ଭାନୁଜୀଙ୍କ କାବ୍ୟଚେତନା ମୁଖ୍ୟତଃ ଗତିଶୀଳ ।

'ନୂତନ କବିତା' ଏବଂ 'ବିଷାଦ ଏକ ଋତୁ' ସଂକଳନର ଆଦ୍ୟଭାଗର କବିତାକୁ ଭାନୁଜୀଙ୍କର ପ୍ରାଥମିକ ପର୍ଯ୍ୟାୟର କବିତା ଏବଂ ତତ୍ପରବର୍ତ୍ତୀ ସମସ୍ତ ରଚନାକୁ ପରିଣତ ପର୍ଯ୍ୟାୟର କବିତାଭାବେ ଗ୍ରହଣ କରାଯାଇପାରିବ । ପ୍ରାରମ୍ଭିକ କବିତାର ଆବେଗିକ ଉଚ୍ଛ୍ୱାସ ଓ ଆଚ୍ଛନ୍ନତା, ନିଃସଙ୍ଗତାବୋଧ ଓ ସୌନ୍ଦର୍ଯ୍ୟତୃଷ୍ଣା ପରିଣତ ସମୟର କବିତାରେ ଅଧିକ ଗମ୍ଭୀର ଓ ପ୍ରାଜ୍ଞ । ଅଧିକନ୍ତୁ କ୍ଷୟଶୀଳତା, ମୃତ୍ୟୁ ଓ ବୈରାଗ୍ୟ ଭାବନା ସହ ଏକ ଭିନ୍ନ ଜଗତକୁ ସୃଜିବାର ଇଚ୍ଛା ଏହି ପରିଣତ ପର୍ଯ୍ୟାୟର କବିତାରେ ଅଧିକ ପରିଲକ୍ଷିତ । ଏକ ପଥୁକ୍ଳା-ମାନସିକତାର ସ୍ୱର ଏଥିରେ ବେଶିଭାବେ ଉତ୍କୀର୍ଣ୍ଣ ।

ଭୂଇଁ :

କବିଙ୍କ ସ୍ୱକୀୟ କବିତା ଓ କାବ୍ୟିକ ପ୍ରକ୍ରିୟା ସମ୍ପର୍କରେ କେତୋଟି କବିତାରେ ଅଭିମତ ରହିଛି । 'ନଈ ଆରପାରି' ସଂକଳନର 'ଶବ୍ଦର ଚଢ଼େଇ', 'ଗୋଟିଏ କବିତା ପାଇଁ' ଏଥିର ଆଧାର । ଶବ୍ଦର ବିଚିତ୍ର ଲୀଳାଖେଳାରେ କବି ବଶୀଭୂତ । ଶବ୍ଦମାନେ କେତେବେଳେ ଡେଣାମେଲି ଉଡ଼ିଯାନ୍ତି ତ କେବେ ସେମାନେ ବଗୁଲିଆ ପିଲା । ଶବ୍ଦର ରତିକ୍ରିୟା ଏବଂ ତା'ର ଯାବତୀୟ ଅଭିଜ୍ଞତା ଓ ଅନୁଭୂତିର ଗନ୍ଧବନ୍ଧ ବିଚରଣ କବିଙ୍କ କାବ୍ୟିକ ପ୍ରକ୍ରିୟାକୁ ଉଜ୍ଜୀବନ୍ତ କରେ । ପୁଣି ସୌନ୍ଦର୍ଯ୍ୟ ହେଉଛି କବି ଦୃଷ୍ଟିରେ କବିତା । ପ୍ରକୃତିର ଯାବତୀୟ ଶୋଭାସମ୍ଭାର, ମୁଗ୍ଧ ମଧୁର ଅନୁଭବ ଭିତରେ ହିଁ ଥାଏ କବିତା । କବି କହନ୍ତି—

ଗୋଟିଏ କବିତା ପାଇଁ ଜହ୍ନପାଖେ ଠିଆ ହୁଏ ମେଘ ।
× × × ଗୋଟିଏ କବିତା ପାଇଁ/ଗୋଲାପରେ ଏତେ ବାସ୍ନା
ପେଲବତା କଣେଇ ସ୍ତନରେ, × × × (ଗୋଟିଏ କବିତା ପାଇଁ)

'ଚନ୍ଦନ ବର୍ଣ୍ଣରେ ଏକା' ସଂକଳନର ଶୀର୍ଷକ କବିତା 'ଉତ୍ତରାଧିକାର', 'କବି', 'କବି ଓ କବିତା', 'କମିସ୍ଥା' ଆଦି କବିତାରେ ସଂସାରର ଅନ୍ଧକତା, କବିତାର ଅମରତ୍ୱ ଏବଂ କାବ୍ୟିକ ସଂରଚନା ସମ୍ପର୍କରେ କବି ଚମତ୍କାର ବିଶ୍ଳେଷଣ କରିଛନ୍ତି । କବିତା ସମ୍ପର୍କୀୟ ଏ କବିତାମାନ ବହୁଭାବେ କବିଙ୍କର କାବ୍ୟିକ ଯନ୍ତ୍ରଣାର ସଞ୍ଚାର ପଥ, କବିତା ସହ ଆତ୍ମିକ ଅଭିସାର, କବିର ସୌନ୍ଦର୍ଯ୍ୟର କଳ୍ପନା, କାବ୍ୟ ଉପାଦାନ, କବିତାର

ସଂଚରଣ ଓ ସ୍ରଷ୍ଟା ସର୍ବୋପରି କବିଙ୍କ ଅଭୀପ୍ସା ସଂପର୍କରେ ଏକ ଏକ ଅନ୍ତରଙ୍ଗ ଉଚ୍ଚାରଣ ।

ମୁଁ ଯେବେ କବିତା ଲେଖିବି / ଯାହା ମନ୍ତ୍ରପତ୍ର ଉଚ୍ଚାରିତ ହେବ ଘରେ ଘରେ
ତା' ଦେହକୁ ସଜାଇବି / ଅଲୌକିକ ଅକ୍ଷରରେ/ଯେଉଁଠି
ଧରିଦେବ ନିସର୍ଗ ପୃଥିବୀ / ଆରକ୍ତ ଧ୍ୱନିମୟତାରେ ।

(ଚନ୍ଦନବନରେ ଏକା)

ଦେଇଗଲି କେତୋଟି କବିତା / ରକ୍ତର ଅକ୍ଷରେ ଲେଖା
ଅନ୍ତରଙ୍ଗ ମୁହୂର୍ତ୍ତ ଯେତକ / ନିରୁତା ସେ ଅନୁଭୂତି
ଅନ୍ଧାରରେ ଜଳୁଥିବ / ସ୍ନିଗ୍ଧ ଦୀପଶିଖା । (ଉତ୍ତରାଧିକାର)

କବିର ନିର୍ମାଣ ପାଇଁ / କେତେଦିନ, ବିନିଦ୍ର ରଜନୀ
ହଜାର ହଜାର ଜନ୍ମ / ଗୋଲ୍ ଅବା ଖଣ୍ଡି ଆଖାବରି
ପ୍ରୟୋଜନ ହୁଏ । (କବି)

ଯଥାର୍ଥ ଗୁରୁପ୍ରସାଦ କିମ୍ବା ଅନ୍ୟ କାବ୍ୟକାରଙ୍କ ପରି ଆମ କାବ୍ୟ-ପରମ୍ପରା ସହ ଭାନୁଜୀଙ୍କର ଗଭୀର ଆତ୍ମିକ ଯୋଗାଯୋଗ ନଥିଲେ ମଧ୍ୟ କବି 'ପିତାମହ' ଏବଂ 'ରବୀନ୍ଦ୍ରନାଥ' କବିତାରେ କାବ୍ୟ-ପରମ୍ପରାର ଦୁଇ ଋଷି କବିଙ୍କୁ ସ୍ମରଣ କରିଛନ୍ତି । ମଧୁସୂଦନଙ୍କ ଜୀବନଚିନ୍ତାଠୁଁ ସମକାଳୀନ ଜୀବନଧାରାର ଭିନ୍ନତା ସମ୍ପର୍କିତ ସୂଚନା କବିଙ୍କ 'ପିତାମହ' କବିତାରେ ପ୍ରତିଫଳିତ ।

ଭାନୁଜୀଙ୍କ କବିତାରେ ଜାଗତିକ ମୋହ ବେଶ୍ ଆନ୍ତରିକ ଭାବେ ପରିସ୍ଫୁଟ । ଅଧିକନ୍ତୁ ତାଙ୍କ କାବ୍ୟାତ୍ମକ ପାର୍ଥିବ ଆକର୍ଷଣକୁ ଅତିକ୍ରମ କରି ଏକ ସୌନ୍ଦର୍ଯ୍ୟସ୍ନିଗ୍ଧ ରହସ୍ୟମୟ ଜଗତକୁ ଚାଲିଯିବା ପାଇଁ ସତତ କାମନା କରିଛି । ସ୍ଥାନ, କାଳ ବା ଭୂଗୋଳ ଇତିହାସ ଡେଇଁ ସେ ଜଗତ—ଏକ ଅଲୌକିକ ରହସ୍ୟଘନ ଭାବଭୂମି । କବି ସଚ୍ଚି-ରାଉତରାୟଙ୍କର ନୀଳମ ଦ୍ୱୀପ, ଅଲେଇଚ ଦ୍ୱୀପ ବା ବିନୋଦ ନାୟକଙ୍କର ସ୍ଥାନକାଳ ଊର୍ଦ୍ଧ୍ୱ କେଉଁ ସୁଦୂର ଇଲାକା ପରି ଭାନୁଜୀଙ୍କର ଏ ପରିକଳ୍ପନା । 'ବିଷାଦ ଏକ ଋତୁ' ସଙ୍କଳନର 'ସାଧକ ପୁଅ', 'ସ୍ୱପ୍ନ ମହଲ', 'ନଈ ଆରପାରି' ସଙ୍କଳନର 'ଘର', 'ନଈ ଆରପାରି', 'ଦ୍ୱୀପ' ଏବଂ 'ଚନ୍ଦନ ବନରେ ଏକା' ସଙ୍କଳନର 'ଶେଷ ଠିକଣା' କବିତାରେ ଏହି ରହସ୍ୟଭୂମିର ସନ୍ଧାନ ପାଇଁ କବିଙ୍କ ବ୍ୟାକୁଳତା ପରିଲକ୍ଷିତ । ଭାନୁଜୀଙ୍କ କାବ୍ୟାତ୍ମା ଏ କ୍ଷେତ୍ରରେ କେବେ ଏକ ସାମୁଦ୍ରିକ ବା ନାବିକ ଦସ୍ୟୁ ତ ଆଉ କେବେ ପଥୁକିଆସତ୍ତା ମଧ୍ୟରେ ଆତ୍ମପ୍ରକାଶ କରିଛି । ତାଙ୍କ କବିସତ୍ତା ଏହି ଦୁଇଟି ସତ୍ତାର ଏକ ମଧୁର ସମନ୍ୱୟ । ମର୍କତ ସ୍ଫଟିକ ଘେରା ନୀଳମ ଇଲାକା ବା ରହସ୍ୟଘେରା କେଉଁ

ଦାରୁଚିନି ଦ୍ୱୀପ, ଲବଙ୍ଗର ବଣ କିମ୍ବା ଅରୁଆ କଦଳୀବଣ ସେ ଯାହାର ଅନ୍ତିମ ଭୂମି ଏହା ଅତୀନ୍ଦ୍ରିୟ ଜଗତ ? ରହସ୍ୟଲୋକ ? ଅସୀମର ଭୂମି ? କେବେକେବେ ମୃତ୍ୟୁଲୋକ ? କବିପାଇଁ ଏ ଭୂମିର ମୋହ ହିଁ ତା'ର କବିତା, କବିତ୍ୱ ବି । ଏହାକୁ ଚେତନାର ଉତ୍ତୀର୍ଣ୍ଣ ଦିଗନ୍ତ ବୋଲି କୁହାଯାଇପାରିବ । ସେଠି ଈଶ୍ୱର ଥାଇ ପାରନ୍ତି କିମ୍ବା ସେଠି 'ଶଙ୍ଖ ମଲମଲ ପଥରରେ ଗଢ଼ା ନୀଳପଙ୍ଖର ଉନ୍ମୁକ୍ତ ସ୍ତନ ଉପରେ କେଉଁ ପ୍ରଜାପତି ଉଡ଼ିଆସି ବସିବ ହଠାତ୍ ।' ଏ ପ୍ରସଙ୍ଗର କେତୋଟି ଉଦ୍ଧୃତି ଉଲ୍ଲେଖ କରାଯାଇପାରେ ।

ସ୍ୱପ୍ନର ହାତଧରି ପହଞ୍ଚିବାକୁ
ଦାରୁଚିନି ଦ୍ୱୀପରେ × × ଦିଗଭ୍ରଷ୍ଟ ନାବିକ ପରି
ପହଞ୍ଚିବି ଲବଙ୍ଗ ବଣରେ । (ଦ୍ୱୀପ)

ସେ ପାରିରୁ ଯେତେ ସ୍ୱପ୍ନ
ପ୍ରତ୍ୟାଶାର ହାତଧରି ଚାଲିଯିବ ସେନେ ଆରପାରି
× × × ଠିକ୍ ଯାଇ ପହଞ୍ଚିବ ଚନ୍ଦନ ବନରେ

ଯେଉଁଠାରେ ବସିଥିଲେ ଏକଦା ଈଶ୍ୱର । (ନଈ ଆରପାରି)

ଅମ ସମସ୍ତଙ୍କ ଶେଷ ଠିକଣା
ଅରୁଆ କଦଳୀ ବଣ । × × ×
ଅରୁଆ କଦଳୀ ବଣ ପରେ
ଆଉ ପୃଥିବୀ ନାହିଁ । (ଶେଷ ଠିକଣା)

କୁହାଯାଇଛି ଯେ ଖନୁନୀ ମୁଖ୍ୟତଃ ସୌନ୍ଦର୍ଯ୍ୟର କବି । ଏହି ସୌନ୍ଦର୍ଯ୍ୟ ଚେତନାଟି ନାରୀ ଓ ପ୍ରକୃତି କେନ୍ଦ୍ରିତ । ଦହନ, ସ୍ମୃତିଚାରଣ ସହ ତଲ୍ଲୀନତା ବା ସମ୍ମୋହନ ସେଠି ଗୁରୁତ୍ୱ ପାଇଛି । ସୌନ୍ଦର୍ଯ୍ୟର ଆବାହନ ଓ ଅଭିସାର ସହ କ୍ଷୟିଷ୍ଣୁଶୀଳତାର ସ୍ୱର ଏକା ସମୟରେ ହିଁ ଶୁଭେ । କାମନା, ଅଭିସାରପ୍ରମତ୍ତ ଦେହ ଜରାମରଣକୁ ଛୁଇଁ, ରକ୍ତରେ-ଚେତନାରେ ସମ୍ମୋହନ ସୃଷ୍ଟି କରିଥିବା ଜହ୍ନ, ନକ୍ଷତ୍ର ଓ ମଳୟ ଦଶେ । ଜୈବିକ ପ୍ରବୃତ୍ତିର ଅଖଣ୍ଡତା ସହିତ ସୃଷ୍ଟି ହୋଇଛି ଏକ ସମାହିତ ସମ୍ମୋହିତ ଭାବ—ଏହି ଦୁଇ ବିପରୀତଧର୍ମୀ ଦିଗନ୍ତରୁ ସୌନ୍ଦର୍ଯ୍ୟ ଚେତନାଟି ଯୋଡ଼ିଛି । ନାରୀର ଦେହ, ଜହ୍ନବଳୟିତ ଆକାଶ, ଊର୍ମି ଉଚ୍ଛଳ ସମୁଦ୍ର ହିଁ କାବ୍ୟନାୟକର ଚରିଭୂମି ଯେଉଁଠାରେ ସେ ସୌନ୍ଦର୍ଯ୍ୟ ସମ୍ମୋହନକୁ ଉପଲବ୍ଧିରେ ଆଣିବା ସହିତ ତା'ର କ୍ଷୟିଷ୍ଣୁଶୀଳତାକୁ ବି ପ୍ରତ୍ୟକ୍ଷ କରେ । ନାରୀଦେହ ଓ ପ୍ରକୃତି ସହ କବିଦେହ ସମନ୍ୱିତ ହୋଇଛି । ଏହି ସୌନ୍ଦର୍ଯ୍ୟ ଚେତନାକୁ ପୂର୍ତ୍ତିକର ପ୍ରାପ୍ତିର ଉଲ୍ଲାସ ଏବଂ ଅପ୍ରାପ୍ତିର

ଜ୍ୱଳନ, ନୀଃସଙ୍ଗତାବୋଧ ଏବଂ ଆନନ୍ଦବିଷାଦର ଶିହରଣ । ଦୁଇଟି ମାତ୍ର ଉଦ୍ଧୃତି ନିଆଯାଉ ।

ତୁମକୁ ତ ପାଶୋରାହିଁ ଭୁଲି
ମୋ ଗ୍ରୁଡ଼ର କବରରୁ ତୁମର କଙ୍କାଳ
ଖୋଳି ଖୋଳି / ମାସବର୍ଷ ବିତିଗଲି ବୁଲି । (ରଙ୍ଗୀ ମାସୁଲ)

ମହମରେ ଗଢ଼ା ହୋଇ ଅନବଦ୍ୟ ହାତର ପାପୁଲି
କୁଞ୍ଚି ହୋଇଯିବ, ଚକୁଡ଼ା ଚରୁଡ଼ା ହୋଇ
ଫାଟିଯିବ ସ୍ତନର ତାଳମୂ । (ଶେଷ ଦୃଶ୍ୟ)

ଭାନୁଜୀ ରାଓଙ୍କ ପ୍ରେମଚେତନା ଏହି ସୌନ୍ଦର୍ଯ୍ୟ ଚେତନାର ଏକ ଭିନ୍ନ ଦିଗ । ପ୍ରେମଚେତନାରେ ବିଜାଗ୍ଧ, ବିଷାଦ ଓ ଏକାକୀପଣର ସ୍ୱର ସହିତ ଦେହ ଅବବୋଧ ପ୍ରାଧାନ୍ୟ ପାଇଛି । ତାଙ୍କର ବହୁ ବିତର୍କିତ 'ସ୍ତନ', 'ଦିନେ ଦିନେ' କବିତାଦ୍ୱୟ ନଗ୍ନ ସୁନ୍ଦର ଅବଚେତନର ଚମତ୍କାର ପରିପ୍ରକାଶ । 'ସ୍ତନ' କବିତାରେ ସ୍ତନ ବହୁ ରୂପକଳ୍ପରେ ରୂପାୟିତ । ଏହାକୁ ସୂର୍ଯ୍ୟପରିକା ଜ୍ୱଳମାନ ଏବଂ ଚନ୍ଦ୍ରପରିକା ଶୀତଳ—ଦୁଇ ଅପାର୍ଥିବ ସତ୍ତା, କବରଖାନାର ଦୁଇଟି ସମାଧି ଏବଂ ମନ ଫରୁଆ ଉପରେ ଚାକୁଣୀ ବୋଲି ଚିହ୍ନଣ କରାଯାଇଛି । ଏହା ସୌନ୍ଦର୍ଯ୍ୟ ଦୃଷ୍ଟିର ବ୍ୟାପକତା, ଆପାତତଃ ବିରୋଧୀ ଭାବର ସମନ୍ୱୟକୁ ସୂଚାଇଥାଏ । 'ଦିନେ ଦିନେ'ରେ ନଗ୍ନ ଅବଚେତନର ପ୍ରାଞ୍ଜଳ ପରିପ୍ରକାଶ ସହ ରମଣୀୟ ଲମ୍ପଟ ଚେତନା ଏକ ଦେହାତୀତ ଅବବୋଧ ଆଡ଼କୁ ମୁହାଁଇ ଯାଇଛି । ଦେହ ଅବବୋଧ ଭିତରେ, ପ୍ରମତ୍ତ କାମନା ଭିତରେ କବି ସୌନ୍ଦର୍ଯ୍ୟ ଖୋଜନ୍ତି, ହୃଦୟ ଖୋଜନ୍ତି, ଖୋଜନ୍ତି ଚେତନାର ନୂଆ ପରିଚୟ । କବି ଉଚ୍ଚାରଣ କରନ୍ତି —

ଆଉ ଏକ ଗ୍ରୁଡଶିରୀ ଖୋଜିବାକୁ ତୁମର ହୃଦୟ
ଭାରି ମନ ହୁଏ । (ଦିନେ ଦିନେ)

ପ୍ରେମର ଅନଳ-ସତ୍ତାକୁ ସଂଜ୍ଞାୟିତ କରି କବି କହନ୍ତି—
ପ୍ରେମ ଏକ ରଙ୍ଗ ନିଆଁ / ପୋଡ଼ିଦିଏ ସବୁକିଛି
ହାତର ପାପୁଲି ଆଉ / ଆଖି ପତା, ଓଠର ପାଖୁଡ଼ା ।
ଜ୍ୱଳନ୍ତ ମେଘ ଭଳି ଘୋଟିଯାଏ ଦେହର ଆକାଶ । (ପ୍ରେମ)

ସୌନ୍ଦର୍ଯ୍ୟ ଚେତନାରେ ଦୃଶ୍ୟମୋହ, ରୂପକଳ୍ପ ରଚନାମୋହ ଦୃଷ୍ଟିରୁ ଭାନୁଜୀ ସମକାଳୀନ ଅନ୍ୟମାନଙ୍କଠୁଁ ବେଶ୍ ନିଆରା । ଓଡ଼ିଆ କବିତାରେ ଭାନୁଜୀଙ୍କ

ଜହ୍ନବିଳାସ ଅନନ୍ୟ । ତାହାପ୍ରତି କବି ଆକର୍ଷଣ କମ୍ ନୁହେଁ । ଜହ୍ନ ମୁଖ୍ୟତଃ ସୌନ୍ଦର୍ଯ୍ୟ ସମ୍ମୋହନ ଏବଂ ତାରକା ଶୁଭ୍ରତା ଓ ଆଲୋକର ଆଧାର ରୂପେ କଳ୍ପିତ । ଅନୁଭୂତିର ବିଭିନ୍ନତା ଓ ବିଭିନ୍ନ ପରିପ୍ରେକ୍ଷୀ ନେଇ ଏହି ଜହ୍ନବିଳାସର ଚିତ୍ର ଓ ସ୍ୱରୂପ ଭିନ୍ନ ଭିନ୍ନ । ଜହ୍ନର ବିବିଧରୂପ ଉପଲବ୍ଧି ଅବକାଶରେ ଅନ୍ୟ ଏକ ରୂପଜଗତର ପରିଚୟ ଭାନୁଜୀଙ୍କ କବିତାରୁ ମିଳିଥାଏ । ସଚ୍ଚି ରାଉତରାୟ କିମ୍ବା ଗୁରୁପ୍ରସାଦଙ୍କ କବିତାରେ ଜହ୍ନମୋହର ତୀବ୍ରତା କିଛି କମ୍ ନୁହେଁ । ନାୟିକାର ରୂପ ଓ ପ୍ରକୃତିର ଅନ୍ୟ ବିଭବ ସହ ଜହ୍ନ ରୂପକଳ୍ପର ପ୍ରୟୋଗ ଏକାନ୍ତ ହୃଦ୍ୟ । ଜହ୍ନ ସୁନ୍ଦର—ତାହା ପୂର୍ଣ୍ଣ ବିଷଣ୍ଣତା ଓ ଅବକ୍ଷୟର ବାହକ ବି । ନିଷ୍ପ୍ରାଣ ତାରକା ଭିତରେ ସୌନ୍ଦର୍ଯ୍ୟ ଓ ଆଲୋକର ମଳିନତା କବିଙ୍କୁ ମ୍ରିୟମାଣ କରିଛି । ଜହ୍ନ ବିଳାସର କେତୋଟି ଉଦ୍ଧୃତି ଉପସ୍ଥାପନ କରାଯାଇପାରେ ।

ତୁମ ଭ୍ରୂରୂପରି / ସରୁ ଖିରୁ ଜହ୍ନ । (ଠେଲାଠେଲି ବାଲି)

ଧଳାଧଳା ବଉଦର ଭେଳା / ପଦ୍ମତୋଳା ବୋଲେ କେଉଁ କେଳା
ଶଂଖଚୂଡ଼ ଜହ୍ନ ଆସେ ଉଠି । (ରାତି)

ପେଣ୍ଟୁପରି ଗୋଲ ମୁହଁ ନେଇ ଜହ୍ନ (ସମୁଦ୍ର ମୋ ମୁହାଁମୁହିଁ)

ଆକାଶରେ କ୍ଷୟକାଶ ରୋଗୀପରି
ପାଣ୍ଡୁର ମ୍ରିୟମାଣ ଜହ୍ନ (ସ୍ମୃତି ତର୍ପଣ)

ସମୁଦ୍ର କବିଙ୍କ ଦୃଷ୍ଟିରେ ଜୈବିକ ଚେତନାର ପ୍ରତୀକ । ତାହା ସୌନ୍ଦର୍ଯ୍ୟ ଓ ଦେହାତୀତ ଭାବର ଭୂମି ମଧ୍ୟ । ସମୁଦ୍ରର ଜୈବିକ ବା ଆମିଷ ସତ୍ତାରେ କାବ୍ୟନାୟକ ସମର୍ପିତ ହୋଇଛି ଏବଂ ସୌନ୍ଦର୍ଯ୍ୟ ସନ୍ଧାନ ପାଇଁ ପ୍ରୟାସ କରିଛି । ସମୁଦ୍ର ମଧ୍ୟରେ କବି ଦେହର ଓ ସୌନ୍ଦର୍ଯ୍ୟର କ୍ଷୟିଷ୍ଣୁତାକୁ ପ୍ରତ୍ୟକ୍ଷ କରିଛନ୍ତି । କବିଦୃଷ୍ଟି ଏ ପର୍ଯ୍ୟାୟରେ ଏକ ଅନାସକ୍ତ ଦ୍ରଷ୍ଟା ନାୟକସତ୍ତା ।

ତୁମ ଆଖି ସବୁଜ ସମୁଦ୍ର / ତଳୁଁତଟେ ଢେଉ ଖେଳି ପଡ଼େ
ପ୍ରବାଳର ଓଠ ଅଙ୍ଗେ / ପୁଞ୍ଜ ପୁଞ୍ଜ ଫେଣର ଭିତରେ
× × × ଦେହ ତୁମ ଖେଳି ପଡ଼େ

ଧୂଡ଼ୁ ଧୂଡ଼ୁ ଚମ ଆଉ ହାଡ଼
ଲୋଷ୍ଟ୍ରକୋଷ୍ଟ୍ର ଜରାର ପାହାଡ଼ (ସାଗର କନ୍ୟା)

ମୟୂରକଣ୍ଠୀ ରଙ୍ଗର ସମୁଦ୍ର
ମୋ ଦେହକୁ ମାଜିମୁଜି ଚକ୍‌ଚକ୍ କରି
ଠିକ୍ ଗୋଟାଏ ଉଜ୍ଜ୍ୱଳ ମୁକ୍ତା ପରି (ଝିଅ)

'ସାଗରିକନ୍ୟା', 'ସାଗା', 'ଦ୍ୱୀପ' ଏବଂ ଅନ୍ୟାନ୍ୟ କେତୋଟି କବିତାରେ ସାଗରକନ୍ୟା, ଢେଉ, ପ୍ରବାଳ, ଶଙ୍ଖ, ଶାମୁକା, ମତ୍ସ୍ୟକନ୍ୟା, ଲବଣ, ବାଲି ପ୍ରଭୃତି ସାମୁଦ୍ରିକ ଉପାଦାନ ସବୁ କାବ୍ୟନାତ୍ମକ ଏକୀଭୂତ ହୋଇଛି । ସମୁଦ୍ର ଯେମିତି ତୃଷ୍ଣା କାମନାର ମୋହମୟ ପୃଥିବୀ । ସମୁଦ୍ରକୁ ଘୂର୍ଣ୍ଣି କବି ଝପୁରୁଣୀ, ରେଲଇଞ୍ଜିନ୍ ମରାମତି କାରଖାନା, ଅରଣା ମଇଁଷିପଲ, ବୃଦ୍ଧ ବିଧବା ଚିତ୍ରକଳ୍ପରେ ଚିତ୍ରିତ କରିଛନ୍ତି (ପାପୁ ପାଇଁ—ଯେ ସମୁଦ୍ର ଦେଖି ନାହିଁ) । କେବଳ ବାସନା ଓ ସୌନ୍ଦର୍ଯ୍ୟର ବଳୟ ଭାବରେ ନୁହେଁ; ସମୁଦ୍ର ମୃତ୍ୟୁ ବା କାଳବୋଧର ପ୍ରତୀକ ଭାବେ ମଧ୍ୟ ରୂପାୟିତ (ଆରବ୍ୟ ରଜନୀର ଗଳ୍ପ ଅଥବା ଦିନେ ଅକସ୍ମାତ୍) ।

ଏକ କିଶୋରୀ ବା ବାଳିକାର ରୂପଚେତନା କବିଙ୍କ ସୌନ୍ଦର୍ଯ୍ୟ ସମ୍ମୋହନର ଉଲ୍ଲେଖନୀୟ ଦିଗ । ଏହା ମଧ୍ୟ ରୂପକଳ୍ପ ଚୟନରେ ସହାୟକ ହୋଇଛି । ନିଷ୍ପାପ କିଶୋରୀ ସୌନ୍ଦର୍ଯ୍ୟ, ସୃଜନ ଓ ମାତୃସତ୍ତାର ଏକ କମନୀୟ ପରିପ୍ରକାଶ । ଏହି ସୌନ୍ଦର୍ଯ୍ୟର ଅପମୃତ୍ୟୁ କେବେକେବେ କବିହୃଦୟରେ କାରୁଣ୍ୟ ଭରି ଦେଇଛି । ପ୍ରକୃତିର ରୂପ ମଧ୍ୟରେ କିଶୋରୀସତ୍ତାର ମୁଗ୍ଧ ଅନୁଭବ ଏକ ନିଷ୍ପାପ ସୃଜନଧର୍ମୀ ଭାବଜଗତର ସ୍ପନ୍ଦନ ସୃଷ୍ଟି କରେ । ଏ ଚୟନ ଓ ସୌନ୍ଦର୍ଯ୍ୟ-ସମ୍ମୋହନ ଭାନୁଜୀଙ୍କର ନିଆରା ।

ହଳଦୀ ରଙ୍ଗର ଜହ୍ନ / ମୋର ଏ ନିଃସଙ୍ଗ ଜୀବନକୁ
କୁମାରୀର କମନୀୟ ସାନ୍ନିଧ୍ୟ ପରି
ପୂର୍ଣ୍ଣ କରିଛି । (ପୂର୍ଣ୍ଣିମା)

ଆକାଶରେ ଛାୟାପଥ / କିଶୋରୀର ମାଙ୍ଗସିନ୍ଥି
ଶୁଭ୍ର ଓ ସଳଖ । (ରାତିର ଆକାଶ)

କାଶଫୁଲେ ଘାସ / କୁଆଁରୀର ମୁହଁପରି
ମସୃଣ ଆକାଶ । (କାଠଯୋଡ଼ି)

ବାଳିକା ନଈ ମୁଁ ଚିରଦିନ ଭିଲ ପାଇଛି । (ଘର)

ମାଟି ଓ ପୃଥିବୀପ୍ରୀତ ମନସ୍କତା ସୌନ୍ଦର୍ଯ୍ୟପ୍ରେମୀ କବିର ଏକ ସହଜାତ ସ୍ୱର । ଅବଶ୍ୟ ଏ ପ୍ରକାର ସ୍ୱରରେ ଅନ୍ୟ ସମକାଳୀନ କବିଙ୍କ ପରି ପରମ୍ପରା-ମାନ୍ୟତା ବା ଐତିହ୍ୟ-ସମ୍ପ୍ରୀତି ଭାନୁଜୀଙ୍କଠାରେ ପ୍ରାୟ ପରିଲକ୍ଷିତ ହୁଏ ନାହିଁ । ପ୍ରେମ ଓ ସୌନ୍ଦର୍ଯ୍ୟରେ ପରିପୂର୍ଣ୍ଣ ଏ ପୃଥିବୀ ତାଙ୍କର ଅତି ପ୍ରିୟ । ସ୍ନେହ ମମତାରେ ଏହା ସ୍ୱର୍ଗ । ଏହାହିଁ ତେଣୁ ଆବେଦନ ଓ ଅବବୋଧନ—ଉଭୟର ଭୂମି । ଏ ମୃତ୍ତିକା ହିଁ ଶେଷ ପର୍ଯ୍ୟାୟ । ତାହାହିଁ ଉତ୍ତରଣ । ପ୍ରାପ୍ତି ଓ ଅପ୍ରାପ୍ତିରେ ପରିପୂର୍ଣ୍ଣ ଏ ଜୀବନକୁ ଗ୍ରହଣ ନକରି ଭୁବ କାହିଁ ? ଏ

ଦୃଷ୍ଟିରୁ ଭାନୁଜୀ କେତେକାଂଶରେ ମାନସିଂହ ଓ ବୈକୁଣ୍ଠନାଥଙ୍କର ସମଗୋତ୍ରୀୟ ମନେ ହୁଅନ୍ତି ।

ସେ ପୃଥିବୀ ବର୍ଣ୍ଣଗନ୍ଧେ / ମାଟି ଶାଢ଼ୀ
ଧାନ୍ୟ ଧଡ଼ି / ଦେହରେ ବେଢ଼ାଇ
ସେ ପୃଥିବୀ ଛାଡ଼ିଗଲା / ରହିଗଲା ସେ ତୁମର ପାଇଁ ।                (ତୁମକୁ ମୁଁ)

ଯାଯାବର ହଂସାଳୀ ପଣ / ପୃଥିବୀର ସବୁ ଶସ୍ୟକଣା,
ପୃଥିବୀର ମଧୁର ଆବେଶ / ଥଣ୍ଟରେ ଖୁଣ୍ଟି ଖୁଣ୍ଟି
ସହସ୍ର ସୁଖ ଓ ଦୁଃଖକୁ / ମେଳିବାକୁ ମେଘ ଶୁଭ୍ର ଡେଣା ।        (ଅବରୋହଣ)

ସମକାଳୀନ ଯୁଗଯନ୍ତ୍ରଣା ଓ ପାପବୋଧର କାବ୍ୟନାତ୍ମକ ଚେତନାର ଊର୍ଦ୍ଧ୍ୱୀର୍ଣ୍ଣତା ପାଇଁ ମା'ଚେତନାର ମହନୀୟ ସ୍ପର୍ଶ ଲୋଡ଼ିଛନ୍ତି । କେବେକେବେ ପ୍ରକୃତିର ରୂପଶୋଭା ସହ ମା'ଚେତନା ସମନ୍ୱିତ ହୋଇଛି ।

ମୁଁ ଆଜି କରିଛି ଖୁନ୍ / ମୋହମୟ ନୀଳ ମରୁମାଟି
× × × ଆଜି କିନ୍ତୁ ଇଚ୍ଛାହୁଏ / ପୁଣି ମୋର ମୁହଁ ଯୋଡ଼ି
ତୋ' ରକ୍ତ ସ୍ତନରେ / ମା' ବୋଲି ଡାକିବାକୁ ଥରେ ।                (ମା')

ମା'ର ସ୍ନେହସିକ୍ତ କୋମଳ / ଚେନାଏ ଆଲୁଅ
ଲାଖିଥାଏ ପାହାଡ଼ ଚୂଡ଼ାରେ ।                (ଯାତ୍ରା)

କବି କମଳାକାନ୍ତ ଲେଙ୍କାଙ୍କ ମା'ଚେତନା କେନ୍ଦ୍ରିତ କବିତା ଏଇ ଧାରାରେ ଏକ ଅନ୍ତରଙ୍ଗ ସଶକ୍ତ ଉଚ୍ଚାରଣ ।

ପ୍ରକୃତି ଓ ପୃଥିବୀ ମନସ୍କତାର ଚରମ କବିଙ୍କ ଋତୁ-ପ୍ରବଣତାରେ ସ୍ପଷ୍ଟ । ନିଦାଘ ଓ ହେମନ୍ତ ପ୍ରତି ଭାନୁଜୀଙ୍କର ଅଧିକ ମୋହ । ଋତୁ ବର୍ଣ୍ଣନାରେ ଉପସ୍ଥାପିତ ଶବ୍ଦ ଓ ରୂପକଳ୍ପ ପ୍ରକୃତି ଓ ପରିବେଶକୁ ଏକାନ୍ତ ପ୍ରାଣବନ୍ତ କରି ଗଢ଼ିତୋଳିଲା । ବୈଶାଖ ବା ନିଦାଘ ଭିତରେ ଗ୍ରୀଷ୍ମଦଗ୍ଧ ମାଟିପାଇଁ ସଜଳ ମେଘର ପ୍ରତୀକ୍ଷା ରୂପାୟିତ ହେଲାବେଳେ ହେମନ୍ତ ଋତୁ କବିର ନିଃସଙ୍ଗତାବୋଧ ଓ ବିଷଣ୍ଣତାର ପ୍ରତୀକ ହୋଇଛି । ହେମନ୍ତ ମଧ୍ୟରେ କ୍ଷୟିଷ୍ଣୁଶୀଳତା ଓ ମୃତ୍ୟୁର ବିବର୍ଣ୍ଣ ଅନୁଭବ ।

ଜଟାଜୁଟ ଖୋଲିଦେଇ / ଠିଆ ହୋଇଛି ଏକ
ନଗ୍ନ ତାମ୍ରବର୍ଣ୍ଣ ପିଙ୍ଗଳ ପୁରୁଷ,
ଭସ୍ମବୋଳା ବୃଦ୍ଧ ସନ୍ନ୍ୟାସୀ ।                (ନିଦାଘ)

ହେମନ୍ତ ଶୋଇଛି ଦେଖ / ମୃତ ଏକ ବଣିମ୍ପର
ଘୋଡ଼ି ହୋଇ ଶ୍ରାନ୍ତ ପାଣ୍ଡୁରତା / ମାଂସ ତା'ର
ଏଣେ ତେଣେ / ଛିନ୍ନଭିନ୍ନ ଲେଟୁଛି ଘାସରେ । (ହେମନ୍ତ)

ସବୁଜ ଓ ଧାନକ୍ଷେତ ବି ଭାନୁଜୀଙ୍କ ପ୍ରକୃତିମନସ୍କତା ନେଇ ଚରିତାର୍ଥିତ ହୋଇଛନ୍ତି ।

ଭାନୁଜୀ କେତେକ କବିତାରେ ଏକାନ୍ତ ଅମୂର୍ତ୍ତ ମନେହେଉଥିବା ଉପାଦାନକୁ ଚିତ୍ରରୂପରେ ଜୀବନ୍ୟାସ ଦେଇଛନ୍ତି । ବସ୍ତୁକୁ ଦେଇଛନ୍ତି ବସ୍ତୁତ୍ୱର ମୁକ୍ତି । ସାଧାରଣତ୍ୱରେ ଅସାଧାରଣତ୍ୱ ଆରୋପ କରିଛନ୍ତି । ପ୍ରତୀକ ଓ ଚିତ୍ରକଳ୍ପର ସହାୟତାରେ କେତେକ ସୂକ୍ଷ୍ମ ଅନୁଭବ ମୂର୍ତ୍ତିମନ୍ତ ହୋଇଛନ୍ତି । ଏ ଧାରାର କବିତା 'ସ୍ମୃତି', 'ନଦୀ', 'ସ୍ୱପ୍ନ', 'ଦୁଃଖ' ଓ 'ବିଦାୟ' ପ୍ରଭୃତି । ଏହି କବିତାମାନଙ୍କରେ ଉଦ୍ଭାସ ହୋଇଥିବା ବର୍ଣ୍ଣାଢ୍ୟ ପରିବେଶ ହିଁ କବିତାର ଆବେଦନକୁ ଗଭୀର କରିଛି । କବିତାର ସ୍ୱାଦ ଓ ଆବେଦନ ଭିନ୍ନ ମନେହୁଏ । 'ଦିନେ ଦିନେ' କବିତାରେ 'ବାଘ' କାମନାର ମୂର୍ତ୍ତିମନ୍ତ ପ୍ରତୀକଭାବେ ରୂପାୟିତ । କିନ୍ତୁ 'ସ୍ମୃତିତର୍ପଣ' କବିତାରେ 'ସ୍ମୃତି' ବାଘର ପ୍ରତୀକ ରୂପରେ ଅତ୍ୟନ୍ତ ଶକ୍ତିଶାଳୀ ଭାବେ ଉପସ୍ଥାପିତ ।

ଛୁଟୁ ସ୍ମୃତି ବାଘ ପରି / ଢିଲ ଢିଲ କରି / ଖାଏ ମଣିଷକୁ
ହାଡ଼ ମାଂସ ଶୋଷିବାକୁ ଶୋଷିବାଇ ମୁହଁ ଧୁଏ ମଣିଷ ରକ୍ତରେ ।
× × ଗୁଳିଖିଆ ଘାଏଲା ଏ ବାଘ
ମଣିଷର ମଡ଼ ପାଖେ ଜଗିବସିଥାଏ ।

କବି 'ନଦୀ' କବିତାରେ ସ୍ମୃତି, କ୍ଷୟଶୀଳତା, ମୋହମୁକ୍ତି ପ୍ରଭୃତି ଭାବକୁ ଏକା ଥାଙ୍କରେ ଯୋଡ଼ିଛନ୍ତି । କବିଙ୍କ ବକ୍ତବ୍ୟ ଏ କ୍ଷେତ୍ରରେ ବେଶ୍ ନିଆରା ।

ନଦୀମାନେ କ୍ରମଶଃ କ୍ଷୟ ହୋଇଯିବାର କାହାଣୀ ।
× × × ନଦୀମାନେ ବିବସ୍ତ୍ରା ନାରୀକୁ ଠିକେ ଛୁଇଁଦେଇ
ଘର ଛାଡ଼ି ମୁହଁବୁଲାଇ / ବୁଲିଯିବା ସନ୍ନ୍ୟାସରେ ।

'ବିଦାୟ' କବିତାରେ ସ୍ମୃତି, ଅସ୍ଥିରତାବୋଧ, ମୃତ୍ତିକା ମୋହକୁ ସମନ୍ୱିତ କରି କବି ବିଦାୟକୁ ଏକ କାରୁଣ୍ୟଜର୍ଜରିତ ରୂପ ଦେଇଛନ୍ତି । ଛନ୍ଦ ଓ ଶବ୍ଦ ଚମତ୍କାରିତାରେ ବିଦାୟର ଭାବ ଏଠାରେ ବେଶ୍ ସାନ୍ଦ୍ର । 'ବିଦାୟ' କବିତାର ଯେ କୌଣସି ପଂକ୍ତି ଉଦ୍ଧାର କରାଯାଇପାରେ ।

× × ବଢ଼ାଅ କାଶତଣ୍ଡୀ, ଛିଣ୍ଡାଡିମେଘ
ମୁଠାଏ ଗଙ୍ଗଶିଉଳି / ବଢ଼ାଅ ଶଙ୍ଖଚଳି,
ବଢ଼ାଅ କାଠଯୋଡ଼ିର ଧଳା ସରୁବାଲି ।' × ×

ଭଗ୍ନ ଅବଚେତନକୁ ପରଖିବା ଓ ପରଶିବାରେ ଭାନୁଜୀ ବେଳେବେଳେ ଅଧିବାସ୍ତବବାଦୀ ମନେ ହୋଇଥାନ୍ତି । ଅଜବ ମାନସିକତା (ଦର୍ପଣ ଦନେ, ଠିକ୍ ଖରାବେଳେ) ସହିତ ଅଦ୍ଭୁତ କିମ୍ବା ପ୍ରତୀକି ସ୍ୱାର ପରପ୍ରକାଶ କେତେକ କବିତାକୁ ଭିନ୍ନସ୍ୱାଦର କରିଛି (ଆରବ୍ୟ ରଜନୀର ଗଳ୍ପ ଅଥବା ଦନେ ଏକିସ୍ତାନ୍) । ଭାନୁଜୀଙ୍କ ସମସ୍ତ କବିତା ମଧ୍ୟରେ 'ସାବୁନ୍' (ବିଷାଦ ଏକ ଚିତ୍ର) ସବୁଠୁଁ ନିଆରା କବିତା ଯାହା ପ୍ରତୀକ ଓ ଚିତ୍ରକଳ୍ପର ସହାୟତାରେ ବସ୍ତୁତ୍ୱରୁ ମୁକ୍ତପାଇ ନୂଆ ଅର୍ଥଦ୍ୟୋତନା ପ୍ରକାଶ କରିଛି ।' ଭାନୁଜୀଙ୍କର ଅଳ୍ପ କେତୋଟି କବିତାରେ ମୃତ୍ୟୁ ଓ ବୈରାଗ୍ୟ ଭାବନା ରୂପାୟିତ ହୋଇଛି ।

**ଶିଳ୍ପ :**

ଭାନୁଜୀଙ୍କ କବିତାର ଆଙ୍ଗିକ ବିଶ୍ଳେଷଣ ବର୍ତ୍ତମାନ ଗ୍ରନ୍ଥର ଅନ୍ତର୍ଗତ ଆଲୋଚନା ବେଳେ ସ୍ପଷ୍ଟ ହୋଇ ଉଠେନି । ଯେକୌଣସି ଉଲ୍ଲିଖିତ ଛନ୍ଦ ଓ ଏବଂ ବିଶେଷତ୍ୱର ପରିଚୟ ବହନ କରେ । ଆଲୋଚନାର ଏ ପର୍ଯ୍ୟାୟରେ ଭାନୁଜୀଙ୍କ କବିତାର ସ୍ଥାପତ୍ୟ ବା ଶିଳ୍ପରୀତି ସଂପର୍କରେ ଆଲୋକପାତ କରାଯାଇପାରେ । ଭାନୁଜୀଙ୍କର ସମକାଳୀନ ଅନ୍ୟ କାବ୍ୟ-ଶିଳ୍ପୀଙ୍କ ପରି 'ମୁଁ'କାର ଉଚ୍ଚାରିତ ପ୍ରକାଶଭଙ୍ଗୀ, କ୍ୱଚିତ୍ ତୁମେ, ଆପଣ ସଂବୋଧିତ । ବହୁ କବିତାରେ ତୃତୀୟ ପୁରୁଷୀୟ ବର୍ଣ୍ଣନାଭଙ୍ଗୀ । କବିତାମାନ ଆକାରରେ ଦୀର୍ଘ ବା ବର୍ଣ୍ଣନାତ୍ମକ ନୁହନ୍ତି, ନୁହନ୍ତି ସାନ ବା ମିନି । ଭାବରେ ସୌନ୍ଦର୍ଯ୍ୟ, ଆଙ୍ଗିକରେ ଚିତ୍ର ତାଙ୍କର ମୂଳ ବୈଶିଷ୍ଟ୍ୟ । ଚିତ୍ରକଳ୍ପ ପ୍ରତି ଦୁର୍ବଳତା ଅଧିକ । ଚିତ୍ରକଳ୍ପଗୁଡ଼ିକ ମୁଖ୍ୟତଃ ଦୃଶ୍ୟପ୍ରଧାନ କେବେକେବେ ଇନ୍ଦ୍ରିୟ ସମ୍ବେଦ୍ୟ, ସାନ୍ଦ୍ର । କବିତା କେତୋଟିରେ ସେ ଚିତ୍ରକଳ୍ପର ଏକ ଏକ ମାଳା ଗୁନ୍ଥିଛନ୍ତି । ଭାନୁଜୀଙ୍କ ଚିତ୍ରକଳ୍ପ ଚୟନରେ ଜହ୍ନମୋହ ଅଧିକ । ପୂର୍ଣ୍ଣିମା ଓ ଜହ୍ନ ଉପରେ ତାଙ୍କର ଅଧିକ କବିତା । କବିଙ୍କ ସ୍ନାୟୁ ଓ ଚେତନାର ରକ୍ତ ଯେମିତି ଜହ୍ନମୟ । ଏହି ଜହ୍ନଚେତନା ସହ ଏକାତ୍ମତା କବିଙ୍କ ନିସର୍ଗ ବିଳାସର ପରିଚାୟକ । 'ଜହ୍ନ' କବିତାରେ ଆକାଶଟା ଆଲୋକସମୁଦ୍ର ଏବଂ ଜହ୍ନ ମୁକ୍ତା ଶିକାଟି, ସେ ତାପର ମୁକ୍ତା ଗୋଟାଏ । ପୁଣି ଏ ଜହ୍ନ ଏକ ରୁପାର ନାଆ, ଛୁଟନ୍ତା ଧଳାଘୋଡ଼ାର ସଂଚାର ମଞ୍ଚ । ଜହ୍ନ ସଂପର୍କରେ ଅନେକାନେକ ଚିତ୍ରମୟ ବର୍ଣ୍ଣନା କବିଙ୍କ ସୌନ୍ଦର୍ଯ୍ୟ ଦୃଷ୍ଟିର ଦିଗନ୍ତକୁ ଆଲୋକିତ କରିଛି ଏବଂ ଏକ ସମ୍ମୋହିତ ପରିବେଶ ତିଆରି କରିବାରେ ସହାୟକ ହୋଇଛି । ଜହ୍ନ ସଂପର୍କରେ ଆଉ କେତୋଟି ଚିତ୍ରକଳ୍ପର ଉଦାହରଣ ଦିଆଯାଇପାରେ ।

ଆକାଶରେ ଜହ୍ନ ସୁନାଚକ । (ଅନ୍ୱେଷଣ)

ଜଳର ନାଭିରେ ଜହ୍ନ ଏକ ରାଜହଂସ ପରି । (ଗ୍ରଚ୍ଛଚିଦ୍ର)

କେବଳ ପାଣ୍ଡୁର ଏକ ପୋକଖିଆ ଜହ୍ନ
ଲଖିଥାଏ ଆକାଶ ଦେହରେ । (ସ୍ୱପ୍ନ ଭଙ୍ଗ)

ସନ୍ଧ୍ୟା, ରାତି, ମେଘ, ଗୋଧୂଳିର ରୂପକଳ୍ପାଶ୍ରିତ ବର୍ଣ୍ଣନା ଏକ ପ୍ରାଣମୟ କାବ୍ୟିକ ପରିବେଶ ତିଆରି କରେ । ଶ୍ରୀନୁଆ ମୁଖ୍ୟତଃ ଏ କ୍ଷେତ୍ରରେ ପ୍ରକୃତି ଜଗତକୁ ମାନବ ବା ମାନବେତର ଜଗତ ସହ ଯୋଡ଼ି ଦେଇଛନ୍ତି । ଚିତ୍ରକଳ୍ପ ତୁଚ୍ଛା ଅଲଂକରଣ ନ ହୋଇ କବିତାର ଆତ୍ମିକ ତାତ୍ପର୍ଯ୍ୟ ପାଇଁ ବେଶ୍ କିଛି ଭୂମିକା ନେଇଛି । ଏହା କେବେ ପାରମ୍ପରିକ ମନେହେଲେହେଁ ବହୁ ବେଳେ ନୂତନ ଓ ସତେଜ ଲାଗନ୍ତି । କେତୋଟିର ଉଦାହରଣ ଦିଆଯାଉ—

ସନ୍ଧ୍ୟା : ସନ୍ଧ୍ୟା ଆସେ ଠିକ୍ ଏକ ଭଜ୍ରୁଆର ପରି (ଦିନେ ଦିନେ)

ସଦ୍ୟ ବିଧବା ପରି ସନ୍ଧ୍ୟା ଆସେ ଲଙ୍ଗଳା ହାତରେ (ରଙ୍ଗ)

ରାତି : ରାତି ଗୋଟାଏ ଅତିକାୟ ଚଢ଼େଇ ପରି
ଝାମ୍ପୁଛି ପୃଥିବୀକୁ । (ବୁଢ଼ାଟି)

ଘୋଡ଼-ଘାଡ଼ ମେଘର ରେଟକେଇ / ରାତି ଆସେ
କାଚଭଙ୍ଗା ଲଣ୍ଠନ ପରି / ତାପ୍ନ ଜଳିଯାଏ
ଜହ୍ନ ଖସେ ମେଘର ହୃଦରେ । (ଐନ୍ଦ୍ରଜାଲିକ)

ମେଘ : ଆକାଶର ଅଗଣାରେ ଜଡ / ମେଘ ମାଛ କାତ (ଗ୍ରାଇ)

ପାଉଁଶିଆ ମେଘମାନେ ପୁଞ୍ଜପୁଞ୍ଜ / ଅଭିମାନ ଭଳି
ଝୁଲୁଛନ୍ତି ଆକାଶରୁ (ଫଟାକପାଳ)

ଗୋଧୂଳି : ଅସ୍ତସୂର୍ଯ୍ୟର ବାହକମାନେ ବାନ୍ଧୁଥାନ୍ତି ତାଂର କହଡ଼ି
ଦିଗନ୍ତର ପାଦ ପାଖେ ପଡ଼ିରହେ ନହତ ଗୋଧୂଳି (କଥାଥିଲା)

ଏହି ଚିତ୍ରକଳ୍ପ ଚୟନରେ କେତେକ ଭିନ୍ନଧର୍ମୀ ପ୍ରୟୋଗ ତାଙ୍କ କବିତାରେ ପରିଲକ୍ଷିତ । ସର୍ବତ୍ର ସୌନ୍ଦର୍ଯ୍ୟବିଳାସର ପରିପ୍ରକାଶ ।

ଯଥା : ଖ୍ରବନା ମୋହର ସୁଦୂର ଶଂଖଚିଲ (ଭାବନା)

କଥାଥିଲା ପିନ୍ଧିବାକୁ
ପ୍ରଗାଢ଼ ବିସ୍ମୟ ଭଳି ଲାଲ୍ ବନାରସୀ (କଥାଥିଲା)

ଶ୍ରାବଣ୍ଡୀର ଅନ୍ଧକାରପରି ଅଜସ୍ର କୁନ୍ତଳ (ଦ୍ୱୀପ)

ତୁମର ଦେହର ଘ୍ରାଣ ମୃଗନାଭି ପରି ମହକୁଛି । (ଦୂରତ୍ୱ)

ଭାନୁଜୀଙ୍କ ଭାବଜଗତର ଆଲୋଚନାବେଳେ ପ୍ରଦତ୍ତ ଅନେକ ଉଦ୍ଧୃତିରୁ ତାଙ୍କ ଚିତ୍ରକଳ୍ପ ପ୍ରୟୋଗରେ ବିଶେଷତ୍ୱ ଓ ଚମତ୍କାରିତାର ପରିଚୟ ମଧ୍ୟ ମିଳିପାରିବ ।

କବିଙ୍କ ଶବ୍ଦଚୟନରୁ ମଧ୍ୟ ସୌନ୍ଦର୍ଯ୍ୟ ଦୃଷ୍ଟି ଓ ଚିତ୍ର-ଚାତୁର୍ଯ୍ୟର ପରିଚୟ ମିଳେ । ଶବ୍ଦ ଚୟନ କେତେକ କ୍ଷେତ୍ରରେ ପାରମ୍ପରିକ ଓ କେତେକ ସ୍ଥଳରେ ବେଶ୍ ନୂଆ ଓ ଭାବପ୍ରବୋଧକ । ଏହା ଚିତ୍ରକଳ୍ପ ପ୍ରତୀକ ଓ ରୂପକର ହାତଧରି ଗତିଶୀଳ । ଭାନୁଜୀ ଚେଷ୍ଟାକୃତ ଭାବେ ନୂଆ ଶବ୍ଦସଂଯୋଜନା ପ୍ରତି ଆଗ୍ରହ ପ୍ରକାଶ କରିନାହାଁନ୍ତି । ସ୍ୱତଃ-ସ୍ଫୂର୍ତ୍ତି ଭାବେ ଏହି ଚୟନ ତାଙ୍କ ବର୍ଣ୍ଣନାରେ, ବକ୍ତବ୍ୟ ପ୍ରକାଶରେ ଆସିଯାଇଛି । ବିଭିନ୍ନ କବିତାରୁ କେତେକ ଉଦ୍ଧୃତିକୁ ନିମ୍ନମତେ ଏକତ୍ରୀକରଣ କରାଯାଇପାରେ ।

ତାରା ସଭା, ବାସି ତାରକା, ମେଞ୍ଚାଏ ତାରା, ମେଞ୍ଚିମେଞ୍ଚି ତାରକାର କ୍ଷତ, ଶୁଭ୍ରତାରା, ଆଞ୍ଜୁଳାଏ ତାରକାର ଛିଟା, ତାରାର କଉଡ଼ି, ନକ୍ଷତ୍ରର ପନ୍ଥୁଆର ।

ନୀଳଜହ୍ନ, ମଉଳା ବଙ୍କାଜହ୍ନ, ଜିକିଜିକି ଜହ୍ନ, ଜହ୍ନ ବଖରାଘର, ମଉଳା ଜହ୍ନର ଛିଟା ।

ଧାନରଙ୍ଗ ଖରା, ମାଛରଙ୍କା ରଙ୍ଗର ଖରା, ଖରାର ଚଢେଇ ।

ଶିଶିରର ସାନସାନ ଦେହ, କାକରର ଶବ, ତୁହିନ୍-ଶୁଭ୍ରତା ।

ପିଙ୍ଗଳ ମୌସୁମୀ, ଝଡ଼ ବ୍ୟାଲେରିନା, କ୍ଷୁରଧାର ପବନ ।

ଏବଂ ଅହଲ୍ୟା ଦେହ, ମୁଖମଳିନ ମୂହୂର୍ତ୍ତି, ପୀତସୂର୍ଯ୍ୟର ଉପତ୍ୟକା, ପିଚୁବୋଳା ରାତି, ଜୀର୍ଣ୍ଣଶୀର୍ଣ୍ଣ ଡାଲି, ବିଜୁଳିର ଛଟା, ନବୀତନ୍ତ୍ରସ୍ମୃତି ଶିଖା ଇତ୍ୟାଦି ।

ଭାନୁଜୀଙ୍କ କବିତାରେ ବ୍ୟବହୃତ ଶବ୍ଦସମ୍ଭାର ବିପୁଳ ନୁହେଁ । ପ୍ରଚଳିତ ଶବ୍ଦ ମାଧ୍ୟମରେ ନିଜ ଅଭିବ୍ୟକ୍ତିକୁ ସେ ସଚ୍ଚୋଟ ଭାବେ ଫୁଟାଇ ପାରିଛନ୍ତି । କ୍ଷେତ୍ରବିଶେଷରେ ସେ ଇଂରାଜୀ ଶବ୍ଦ, ଯାବନିକ ଶବ୍ଦ ଏବଂ ଦେହ ବର୍ଣ୍ଣନାଭିତ୍ତିକ କବିତାରେ କିଛି ଅବ୍ୟବହୃତ ଶବ୍ଦକୁ ଯଥାର୍ଥ ଅଭିବ୍ୟକ୍ତି ପାଇଁ ବ୍ୟବହାର କରିଛନ୍ତି । ଖୁବ୍ କମ୍ ଅପ୍ରଚଳିତ

ଓ କେତେ କଥିତ ଶବ୍ଦକୁ ସେ ପ୍ରୟୋଗ ମାନ୍ୟତା ଦେଇଛନ୍ତି । ଅନୁପ୍ରାସିକ ଶୃତୁର୍ଯ୍ୟ ଓ ଧ୍ୱନି ଚମତ୍କାରିତା ପ୍ରତି ସେ ମଧ୍ୟ ସଚେତନ ରହିଛନ୍ତି । ଏହାର କେତେକ ଉଲ୍ଲେଖ କରାଯାଇପାରେ । ସେଗୁଡ଼ିକ—ବିସ୍ରସ୍ତ, ନୁପୁଡ଼, ବିଣ୍ଟିବିଣ୍ଟି ମେଞ୍ଚାଏ ବଞ୍ଚନା, ଖଣ୍ଡି ଆ-ଖାବରି, ଚଡ଼ପାର୍ତ୍ତ, ହଲ୍ଲିଉଥାଏ, ଫୁସୁଲ୍‌ଫାସିଲ୍, ଜଗ୍ରପ୍, ନଲଠା, ବେଦ୍ୱେଲ, ଲେଙ୍ଗଡ଼ା, ଫାଁଗାଳି, ନିଧଡ଼କ, ଗୁଡ଼ରେଲ୍ଲଗୁରେଇ, ନୁରୁପୁରୁ, କୋଲଉଛୁ, ବୁଢ଼ଲ-ବୁଢ଼ଲ, ଧୋକଡ଼ୀ, ଛୁଗୁଲ୍ଲିନ୍ତି, ବଗୁଲିଆ, ରେକାବ ପ୍ରଭୃତି ।

ସମକାଳର ଅନ୍ୟ କାବ୍ୟଶିଳ୍ପୀଙ୍କ ପରି ଭାନୁଜୀଙ୍କ ଛନ୍ଦବିନ୍ୟାସରେ ପଦ୍ୟରୀତି ଏବଂ କଥ୍ୟରୀତିର ସମନ୍ୱୟ ଘଟିଛି । ପ୍ରାରମ୍ଭିକ ପର୍ଯ୍ୟାୟର କବିତାରେ ସେ ପଦ୍ୟରୀତି ବା ଗୀତଛନ୍ଦ ପ୍ରତି ଉନ୍ମୁଖ ଥିବା ଲକ୍ଷ୍ୟକରାଯାଏ । ତାଙ୍କର ଅଲଙ୍କାର ସନେଟ୍ ଏବଂ ସେହି ଶୃଙ୍ଖଳାର କବିତା ରହିଛି । ଅନୁପ୍ରାସିକ ଚାତୁର୍ଯ୍ୟ ଏହାକୁ ଗୀତିମୟ କରେ । ଯେମିତି—

> ମଗୁଶିର ଶୀତର ସକାଳ
> ପିମ୍ପୁଡ଼ି ଯାକ ବୁଢ଼ାମାର ବଡ଼
> ମନହୁଏ ଭାଙ୍ଗି ସୂର୍ଯ୍ୟ-ଘଡ଼
> ଶୋଇପଡ଼େ ପୁଣି ଘୋଡ଼-ଘାଡ଼ ।　　　　(ରବିବାର)

ଏକାନ୍ତ ମୁକ୍ତ ଗଦ୍ୟଛନ୍ଦ ପ୍ରୟୋଗରେ ବା କଥ୍ୟରୀତି ପ୍ରୟୋଗରେ ଭାନୁଜୀଙ୍କ କବିତା ବେଶ୍ ବୁଦ୍ଧିମନ୍ତ । ଏହି ପୂର୍ଣ୍ଣ ଗଦ୍ୟକୁ ଆକର୍ଷଣୀୟ କରିବାପାଇଁ ସେ ଉଜ୍ଜ୍ୱଳ ଚିତ୍ରକଳ୍ପର ପ୍ରୟୋଗ କରିଛନ୍ତି । ଚିତ୍ରକଳ୍ପପ୍ରୟୋଗ ହୋଇଉଠିଛି ଗଦ୍ୟଛନ୍ଦ ପାଇଁ ଏକ ଅପରିହାର୍ଯ୍ୟ ଆୟୁଧ । ଏହା ତାହାକୁ ଔଜଲ୍ୟ ଓ ଗତି ଦେଇଛି । ଏହି ଗଦ୍ୟପ୍ରୟୋଗରେ ଧ୍ୱନି ଚମତ୍କାରିତା ଥିଲେ ମଧ୍ୟ ସଙ୍ଗୀତ (Lyric)ର ଅଭାବ ପରିଲକ୍ଷିତ ହୁଏ । ଭାନୁଜୀଙ୍କ ଗଦ୍ୟ ଚିତ୍ରମୟ; କିନ୍ତୁ ତାଙ୍କ ଚିତ୍ର ଗଦ୍ୟମୟ ନୁହେଁ । ପରିଣତ ପର୍ଯ୍ୟାୟର ସମସ୍ତ କବିତାରେ ଗଦ୍ୟଛନ୍ଦ ବିଶେଷ ପ୍ରାଧାନ୍ୟ ପାଇଛନ୍ତି । ଏହି ଗଦ୍ୟରୀତି ବା ଛନ୍ଦର ନମୁନା ସକାଶେ ଦୁଇଟି ପଂକ୍ତି ଉଲ୍ଲେଖ କରାଯାଉ—

> ଦୁଇଗୋଡ଼ ସନ୍ଧି ଦେଇ ଘୋଡ଼ାଟା ଖସିଗଲା ପରେ
> ଧୋବାଘର ଲୁଗାପରି ଦେହ ମୋର ନିସ୍ତେଜ ସ୍ତୂପରେ
> ପରିଣତ ହୁଏ । ମୁଣ୍ଡଟା ଗଡ଼ିଯାଏ ଉଚ୍ଛିଷ୍ଟ ପଇଡ଼ ପରି
> ରାସ୍ତାକଡ଼ର ନାଳ ଭିତରକୁ । ସେତେବେଳେ ଦୁଃଖ
> ଗୋଟାଏ ଅସ୍ଥିର ଚଢ଼େଇ, ମୋ ସ୍ମୃତିର ପଞ୍ଜୁରି ଭିତରେ
> ଡେଣା ବାଡ଼ଉଛି । × ×

(ପୂର୍ଣ୍ଣିମୀ, ମୋ ରକ୍ତ ଭିତରେ : ବିଷାଦ ଏକ ଋତୁ)

ମୁଁ ଗୋଟାଏ ପ୍ରାସାଦ ତୋଳିବି ପାହାଡ଼ ଚୂଡ଼ାରେ । ଯେଉଁଠି
ପ୍ରତିଦିନ ସୂର୍ଯ୍ୟ ସିଂହାସନ ଗୁଡ଼ି ଯାଆନ୍ତି ବନସ୍ତକୁ ।
ଆଉ ପାହାଡ଼ର ଜାନୁଧର ଗୁରୁଣ୍ଡି ଗୁରୁଣ୍ଡି ଉଠିଆସେ
ଗେହ୍ଲାପୁଅ ପରି ଗୋଲଗାଲ ଜହ୍ନଟିଏ ।            (ଘର : ନଈ ଆରପାରି)

କବି ଭାନୁଜୀ ରାଓଙ୍କ ଗଦ୍ୟଛନ୍ଦ, ଚିତ୍ରକଳ୍ପ ପ୍ରୟୋଗ ଏବଂ ଭାବ ଚେତନାର ବିଭିନ୍ନ ଦିଗ ସମ୍ପର୍କରେ ସ୍ୱତନ୍ତ୍ର ଓ ବିସ୍ତୃତ ଭାବେ ଆଲୋଚନା କରାଯାଇପାରେ । ଦୃଶ୍ୟ-ମୋହ, ସୌନ୍ଦର୍ଯ୍ୟମୁଗ୍ଧତା ଏବଂ ଦୃଶ୍ୟ କଣଆରେ ଦୃଶ୍ୟାନ୍ତରକୁ ଗ୍ରହଣିବା ଯଦି ଆମ କବିତାର ଏକ ବିଶେଷ ଦିଗ ହୁଏ ଏବଂ କବିତା ସଂରଚନାରେ କଥ୍ୟରୀତି ଓ ଚିତ୍ରାକଳ୍ପ ଯଦି ଏକ ଶାଣିତ ଆୟୁଧ ହୁଏ—ଉଜ୍ଜ୍ୱଳ ଭାବସାନ୍ଦ୍ର ଚିତ୍ରକଳ୍ପ ସଂରଚନା, ସୌନ୍ଦର୍ଯ୍ୟ-ବୋଧର ଅପୂର୍ବ ପରିପ୍ରକାଶ ପାଇଁ ଭାନୁଜୀ ରାଓ ଆମ କବିତାରେ ଅଧିକ ସ୍ମରଣୀୟ ରହିବେ ।



ବିଷାଦ ଏକ ଗ୍ରହ : ୧୯୭୩, ଲର୍କ ବୁକ୍ସ, କଟକ-୨ ।
ନଈ ଆରିପାରି : ୧୯୮୭, ଓଡ଼ିଶା ଲେଖକ ସମବାୟ ସମିତି, ଭୁବନେଶ୍ୱର ।
ଚନ୍ଦନ ଦିନରେ ଏକା : ୧୯୯୪, କାହାଣୀ ପ୍ରକାଶନୀ, କଟକ-୧୩ ।

# ଗୁରୁପ୍ରସାଦଙ୍କ କବିତା ପ୍ରସଙ୍ଗ ଓ ଭାରତୀୟତା

ଏକ :

ଗୁରୁପ୍ରସାଦ ମହାନ୍ତି ଆମ ସମୟର ବିସ୍ତର ଆଲୋଚିତ କବି । ତାଙ୍କ ବିଷୟକ ଆଲୋଚନା ମୁଖ୍ୟତଃ ଟି. ଏସ୍. ଏଲିଅଟ୍‌ଙ୍କ The Waste Land and Other poems ସହ 'ସମୁଦ୍ରସ୍ନାନ'କୁ ଭିତ୍ତିକରି । ପୂର୍ବସ୍ଥ ପର୍ଯ୍ୟାୟ ପରବର୍ତ୍ତୀ ଓଡ଼ିଆ କବିତାର ଭାଷା ଶୈଳୀରେ ନୂତନତା ଓ ସତେଜତା, ବିଷୟ ବିନ୍ୟାସରେ ଏକ ଅନ୍ତର୍ମୁଖୀ ମାନସିକତା ପୋଷଣ, ସମୟ ଚେତନାର ଏକ ଜଟିଳ ଅନୁଭବ ତଥା ଭାଙ୍ଗିବାକୁ ଆରମ୍ଭ କରୁଥିବା ସ୍ଥିତି ଓ ମୂଲ୍ୟବୋଧଗତ ସଙ୍କଟ ସମ୍ପର୍କରେ ସଚେତନତା ନେଇ ତାଙ୍କର ଭୂମିକା । 'ନୂତନ କବିତା' (୧୯୫୫) ପରେ ୧୯୭୦ରେ ପ୍ରକାଶିତ 'ସମୁଦ୍ରସ୍ନାନ' ସଙ୍କଳନକୁ ନେଇ ଏ ଆଲୋଚନା । 'କାଳପୁରୁଷ' ଓ The Waste Landକୁ ନେଇ ବିବଦମାନ ଚର୍ଚ୍ଚା ଓ ବିତର୍କ ।

କବିତା ରଚନା କ୍ଷେତ୍ରରେ ସମ୍ପୂର୍ଣ୍ଣ ନୀରବ ଗୁରୁପ୍ରସାଦଙ୍କର ୧୯୭୭-୭୮ ବେଳକୁ 'ପ୍ରଜ୍ଞା'ରେ 'ବାବା ପାଇଁ ଦୁଇଟି କବିତା' ଏବଂ 'ସୁଚରିତା' ଲେଖକ ସଂଖ୍ୟାରେ 'ମୃତ୍ୟୁ' କବିତା ପ୍ରକାଶିତ ହୁଏ । କିଛିବର୍ଷ ପରେ 'ଝଙ୍କାର' ପୃଷ୍ଠାରେ ପ୍ରକାଶିତ ହୁଏ ହରେକୃଷ୍ଣ ଦାସ (୩) । ପୂର୍ବ ରଚନା ହରେକୃଷ୍ଣ ଦାସ (୧), (୨)କୁ ମିଶାଇ ୩୮ଟି କବିତା ସନ୍ନିବିଷ୍ଟ ସଙ୍କଳନ 'ଆଶ୍ଚର୍ଯ୍ୟ ଅଭିସାର'ର ଆତ୍ମପ୍ରକାଶ ଘଟେ ୧୯୮୮ରେ । ଭାଷା-ଶୈଳୀଗତ ଚମତ୍କାରିତା ସତ୍ତ୍ୱେ କବିଙ୍କ ବକ୍ତବ୍ୟ ଏ ପର୍ଯ୍ୟାୟରେ ଖୁବ୍ ନୂଆ ନୁହେଁ । ତେବେ ପାଶ୍ଚାତ୍ୟ ମୋହରୁ ଗୁରୁପ୍ରସାଦଙ୍କ କାବ୍ୟାତ୍ମକ ବହୁଭାବେ ମୁକୁଳି ଯାଇଛି ଏବଂ ଜନ୍ମମାଟି, ପାଣି ପବନର ସ୍ୱାଦଗନ୍ଧ ଓ ଅଭିସାରର ମୂର୍ଚ୍ଛନା 'ଆଶ୍ଚର୍ଯ୍ୟ ଅଭିସାର'ରୁ ବାରିହୁଏ ।

ବହୁ ଆଲୋଚନାରେ କୁହାଯାଇଛି, ଗୁରୁପ୍ରସାଦ ଦେହର କବି; ପୃଥିବୀର କବି । ନାରୀ ବା ଦେହର ବଳୟ ଭିତରେ ମନ ଓ ଆତ୍ମାର ସନ୍ଧାନ ପାଇଁ ଉନ୍ମୁଖତା ତାଙ୍କ ଦେହ ଅବବୋଧ ବା ପ୍ରେମ ଚେତନାର ପ୍ରମୁଖ ସ୍ୱର । ଏହା ଦ୍ୱିଧାଗ୍ରସ୍ତ ଓ ଅସମାହିତ— ତାହା କୌଣସି ସନ୍ତୋଷଜନକ ପରିଣତିରେ ପହଞ୍ଚି ନାହିଁ । ରୂପତୃଷ୍ଣା ଦୃଷ୍ଟିରୁ ସେ

କେତେକାଂଶରେ ଭକ୍ତ, ସୁଧାନାଥଙ୍କର ସମଗୋତ୍ରୀୟ । ତେବେ ଅନୁଭବର ନୂତନତା, ସମୟବୋଧ ସହ ତାହାର ସମନ୍ୱୟ ତାଙ୍କୁ ଭିନ୍ନକରି ଚିହ୍ନାଏ । ଦେହ ବା ପାର୍ଥିବତା ନେଇ କାବ୍ୟନାୟକର ଯାଞ୍ଚି ହେବା ବା ଅନ୍ୱେଷାବୋଧ 'ଆଶ୍ଚର୍ଯ୍ୟ ଅଭିସାର'ରେ ଏତେ ବେଶୀ ନାହିଁ; ନାହିଁ ମଧ୍ୟ ନିହାତି ଛିନ୍ନମୂଳ ଜୀବନ-ଜିଜ୍ଞାସା । ଗୁରୁପ୍ରସାଦଙ୍କର ସମୟବୋଧର ଦୁଇଟି ସ୍ତର । ପ୍ରଥମଟି ସମୟର ତରଳନ କ୍ଷୟକାରୀ ଶକ୍ତି, ଅନ୍ୟଟି ସମକାଳୀନତା ସମ୍ପୃକ୍ତ ସମୟବୋଧ ଯାହାକି ଯୁଦ୍ଧ ପରବର୍ତ୍ତୀ ନୈରାଶ୍ୟବୋଧ ଓ ବିଚ୍ଛିନ୍ନତା ସଂଯୁକ୍ତ ହୋଇ ଏକ ମୃତ୍ୟୁମୟ ବିଷାଦିତ ପରିବେଶ ରଚନା କରେ । ସୌନ୍ଦର୍ଯ୍ୟ ଅବବୋଧରେ ଗୁରୁପ୍ରସାଦଙ୍କ ଦୃଷ୍ଟି ମାଟିର ଦୃଶ୍ୟ ଗନ୍ଧ ଆସକ୍ତ । ବାଲିଚର, ଅଣ୍ଟାଗଛ ବା ପତଙ୍ଗଡ଼ା ଭିତରେ ସେ ଆକାଶମନସ୍କ ବା ଦିଗନ୍ତ ଧ୍ୟାନସ୍ଥ ହେଲାବେଳେ ନିଜ ମାଟିର ବାସ୍ନା ପ୍ରତି ପୁନର୍ବାର ଆସକ୍ତ ଓ ମମତ୍ୱବୋଧ ପ୍ରଦର୍ଶନ କରିଛନ୍ତି । 'ଆଶ୍ଚର୍ଯ୍ୟ ଅଭିସାର' ପର୍ଯ୍ୟାୟରେ କବିଙ୍କର ପାଶ୍ଚାତ୍ୟ ପ୍ରବଣତା ନାହିଁ । 'ସମୁଦ୍ରସ୍ନାନ'ର ବିଷାଦବାଦୀ ଅଚରିତାର୍ଥ ଦୃଷ୍ଟିଭଙ୍ଗୀ ଓ ଆତ୍ମହରଣପ୍ରବଣ ଆନ୍ତର୍ଜାତିକ ମନୋଭୂମି 'ଆଶ୍ଚର୍ଯ୍ୟ ଅଭିସାର'ରେ ଅନେକାଂଶରେ ଭାରତୀୟତାର ସ୍ପନ୍ଦନ ଓ ସ୍ୱାଦଗନ୍ଧ ବହନ କରିଛି ।

ଦୁଇ :

ଓଡ଼ିଆ କବିତାରେ 'ଭାରତୀୟତା' ପ୍ରସଙ୍ଗ ମୁଖ୍ୟତଃ ତା'ର ଆଞ୍ଚଳିକ ବିଶେଷତ୍ୱକୁ ବୁଝାଏ । ଆଙ୍ଗ୍ଲୋ-ଭାରତୀୟ ଲେଖକଙ୍କ ଲେଖା ପ୍ରସଙ୍ଗରେ ଭାରତୀୟତାର କଥା ଉଠିଥାଏ ଏବଂ ଭାରତୀୟତାର ଅର୍ଥ ଅନ୍ୱେଷା କରାଯାଇଥାଏ । ଆର୍. କେ. ନାରାୟଣ ବା ମନୋଜ ଦାସଙ୍କ ଗଳ୍ପ, ମୁଲକରାଜ ବା ରାଜାରାଓଙ୍କ ଉପନ୍ୟାସ, ଜୟନ୍ତ ମହାପାତ୍ର ବା ନିସୀମ ଇଜିକେଲଙ୍କ କବିତାରେ ବିଶ୍ୱସାହିତ୍ୟ ପରିପ୍ରେକ୍ଷୀରେ ଭାରତୀୟତାର ରୂପ-ସ୍ୱରୂପ ପ୍ରକଟନ କେତେ ବିଶ୍ୱସ୍ତ ବା ଯଥାର୍ଥ ଭାବରେ ହୋଇପାରିଛି ତାହା ଆଲୋଚିତ ହୁଏ । ଗୁରୁପ୍ରସାଦଙ୍କ କବିତା ପରିପ୍ରେକ୍ଷୀରେ ଭାରତୀୟତା ଟିକିଏ ଅଧିକ ଯଥାର୍ଥ ଏଇଥିଲାଗି ଯେ ତାଙ୍କ କାବ୍ୟାଦର୍ଶଟି ବହୁ ଭାବରେ ପାଶ୍ଚାତ୍ୟ ଧାରା ପ୍ରଭାବିତ । ସେଇ ଦୃଷ୍ଟିରୁ ସେ ଆଲୋଚିତ ମଧ୍ୟ । ଭାରତୀୟତା ମୁଖ୍ୟତଃ ଭାରତର ଐତିହ୍ୟ, ସାଂସ୍କୃତିକ ପ୍ରାଣସ୍ପନ୍ଦନ ଏବଂ ପ୍ରଚଳିତ ଜୀବନ ଚଳଣିର ବିଶେଷତ୍ୱକୁ ନେଇ ହିଁ ଏହି ଭାରତୀୟତା ମଧ୍ୟରେ ଉତ୍କଳୀୟ ଆଞ୍ଚଳିକତାର ପରିଚୟ ରହିଛି । ଉଭୟେ ଉଭୟର ପରିପୂରକ । ଉତ୍କଳୀୟ ଆଞ୍ଚଳିକତା ଭାରତୀୟତାର ଏକ ନିଜ ସଂସ୍କରଣ ନୁହେଁ କି ? ଗୁରୁପ୍ରସାଦଙ୍କ ବିଦେଶୀ ପ୍ରବଣତା ସତ୍ତ୍ୱେ ଆଞ୍ଚଳିକ ସ୍ୱାଦଗନ୍ଧ କଥା 'ସମୁଦ୍ରସ୍ନାନ' ପର୍ଯ୍ୟାୟରେ ବିସ୍ମରି ଯାଇ ନାହାନ୍ତି । 'ଆଶ୍ଚର୍ଯ୍ୟ ଅଭିସାର'ରେ ସେପ୍ରତି ସଜାଗ ମଧ୍ୟ ରହିଛନ୍ତି । କାବ୍ୟ ଉପକରଣରେ ଓ ଉପସ୍ଥରରେ ଅନେକ ଉଦାହରଣ ଦୁଇଟି ଗ୍ରନ୍ଥରୁ ମିଳିପାରିବ । ଏହି ବିଶେଷତ୍ୱ ବା ମାଟି ବାସ୍ନାରେ ସନ୍ଧାନ ନିମ୍ନୋକ୍ତ କେତେକ ପ୍ରସଙ୍ଗ ଓ ପ୍ରୟୋଗରୁ ମିଳିପାରିବ । ସେଗୁଡ଼ିକ ହେଉଛନ୍ତି :

(କ) କାବ୍ୟ ପରମ୍ପରା ସମ୍ପୃକ୍ତି

(ଖ) ମିଥ୍ ମନସ୍କତା

(ଗ) ଐତିହ୍ୟ ଓ ପରମ୍ପରାର ସ୍ମରଣ

(ଘ) ପଲ୍ଲୀ ଅଭିମୁଖିତା

(ଙ) ଆଧ୍ୟାତ୍ମିକ ଅନୁଭୂତି ଓ ବିଶ୍ବବୋଧ

(ଚ) ସୌନ୍ଦର୍ଯ୍ୟ ସମ୍ମୋହନ

(ଛ) ଭାରତୀୟ ପରିପ୍ରେକ୍ଷୀରେ ସମନ୍ୱୟବୋଧ

ଏହାର ବିଶ୍ଳେଷଣ କରାଯାଉ ।

[କ] ସ୍ୱକୀୟ କାବ୍ୟ ପରମ୍ପରା ସଂପୃକ୍ତି—ତାହା ପ୍ରତି ମାନ୍ୟ ଏବଂ ତା'ରି ଉଲ୍ଲେଖନୀୟ ସମନ୍ୱୟ ଓ ପ୍ରୟୋଗ ଯେ କୌଣସି ସଚେତନ କାବ୍ୟଶିଳ୍ପୀ ପକ୍ଷରେ ସ୍ୱାଭାବିକ । ଗୁରୁପ୍ରସାଦ ପାର୍ଥିବତା ବା ରୂପସର୍ବସ୍ୱତା ଭିତରେ ସୌନ୍ଦର୍ଯ୍ୟ ତଥା ମହତ୍ତ୍ୱର କିଛିର ସନ୍ଧାନ ପାଇଁ ପ୍ରୟାସ କରିଛନ୍ତି । ଆକାଶ ଓ ଦିଗନ୍ତର ଉଲ୍ଲେଖ, ବାଲି ଓ ଆକାଶ ବିବାଦ ଭିତରେ ତାହା ଲକ୍ଷ୍ୟ କରାଯାଇ ପାରିବ । ରୂପ ସୌନ୍ଦର୍ଯ୍ୟର ଆରାଜକତା ପରିପ୍ରେକ୍ଷୀରେ ତାଙ୍କ କବିତାରେ ଉପେନ୍ଦ୍ରଭଞ୍ଜ ଓ ରାଧାନାଥ ତଥା ମାନସିଂହଙ୍କର ଉଲ୍ଲେଖ ରହିଛି । ଆମ ପରମ୍ପରାରେ ଏ ତିନିଜଣ ସୌନ୍ଦର୍ଯ୍ୟର ବିଶିଷ୍ଟ କାବ୍ୟକାର । ପାରସ୍ପରିକ ସାମ୍ୟ ବୈଷମ୍ୟ ତ ଅନେକ ରହିଛି ! ଆଧୁନିକ ଓଡ଼ିଆ କବିତାର ବିଶିଷ୍ଟ ବିନ୍ଧାଣି ସଚ୍ଚି ରାଉତରାୟଙ୍କ ନାମକୁ ଗୁରୁପ୍ରସାଦ ଉଲ୍ଲେଖ କରି ରାଉତରାୟଙ୍କର କାବ୍ୟ ଆଭିମୁଖ୍ୟ ଓ ପ୍ରୟୋଗପ୍ରବଣତା ପ୍ରତି ମାନ୍ୟତା ଦେଇଛନ୍ତି । ଉପେନ୍ଦ୍ରଙ୍କ ଚନ୍ଦ୍ରଭାନୁ, ଲାବଣ୍ୟବତୀ ଓ ସାଧବ ଯୁବତୀ ପ୍ରସଙ୍ଗ ନୂଆ ପ୍ରୟୋଗ ମାନ୍ୟତା ପାଇଛି । ପୁଣି କାବ୍ୟ ଆଭିମୁଖ୍ୟ ଦୃଷ୍ଟିରୁ ଗୁରୁପ୍ରସାଦ କପରି ଭିନ୍ନ, ସେଇ କଥା କହିବା ପାଇଁ ପୂର୍ବସୂରୀମାନଙ୍କ କୃତିର ଉଲ୍ଲେଖ ସହିତ ନିଜସ୍ୱ ବିରୋଧାଭାସକୁ ମଧ୍ୟ ଅତି କଳାତ୍ମକ ଭାବେ ଉପସ୍ଥାପନ କରିଛନ୍ତି । ଜଗନ୍ନାଥ ଦାସଙ୍କ ଭାଗବତରୁ କେତେ ପ୍ରସଙ୍ଗର ନୂତନ ସଂଯୋଜନା ତାଙ୍କ ବକ୍ତବ୍ୟକୁ ଶକ୍ତି ଓ ତାତ୍ପର୍ଯ୍ୟ ଯୋଗାଇଛି । କାଳବୋଧ, ଅମଙ୍ଗଳ-ମଙ୍ଗଳ ଭାବନା, ଆଧ୍ୟାତ୍ମିକ ଆସ୍ପୃହା ସର୍ବୋପରି ଯୁଗ ଓ ଜୀବନ ପରିପ୍ରେକ୍ଷୀରେ ଏକ ଭାଗବତୀ ଆକୁଳତାର ସ୍ୱର ଗୁରୁପ୍ରସାଦଙ୍କ କବିତାରେ ଆମେ ପାଇଥାଉ । ଭାଗବତକାର ଜଗନ୍ନାଥ ଦାସଙ୍କ ନାମୋଚ୍ଚାରଣ ଆମ ଆତ୍ମାରେ ଏକ କାଳସଚେତନ ମହତ୍ତ୍ୱର ଆକାଂକ୍ଷୀ ସ୍ୱରର ଚନ୍ଦ୍ରପଟ ତୋଳିଧରେ ନାହିଁ କି ? କବି ତାଙ୍କ ସାକ୍ଷାତକାରରେ କହନ୍ତି—'ଭଞ୍ଜଙ୍କ କାବ୍ୟରୁ କିଛି ପଢ଼ିଛି । ତା'ପରେ ରାଧାନାଥ, ସଚ୍ଚି ରାଉତରାୟ ବିଶେଷକରି ଜଗନ୍ନାଥ ଦାସଙ୍କ

ଭାଗବତକୁ ଅନେକ ଥର ପଢ଼ିଛି, ଭାଗବତର ସେଇ ଯେଉଁ cosmic themes and that timeless quality about its poetry ମୋତେ ଗଭୀର ଭାବେ ପ୍ରଭାବିତ କରିଛି । ସଚ୍ଚି ରାଉତରାୟଙ୍କ କବିତାକୁ ମନ ଦେଇ ପଢ଼ିଛି । ଅନେକ ସେଥିରୁ ଭଲ ଲାଗିଛି । ମୁଁ ଡ୍ରାଫ୍ଟ ବି କରିଛି ।' (୧)

ଗୁରୁପ୍ରସାଦଙ୍କ କବିତାରେ କାବ୍ୟ-ପରମ୍ପରା ପ୍ରତି ମାନ୍ୟତା ଏବଂ ତା'ର ସମୃଦ୍ଧି-କରଣ ପ୍ରତି ପ୍ରଯତ୍ନ ଏକ ସାଂସ୍କୃତିକ ସହଭାଗିତାର କଥା । ଏହା ତାଙ୍କ ଆହରଣ ଓ ଅନୁକରଣ ମଧ୍ୟରୁ ପ୍ରତ୍ୟକ୍ଷ ବାରିହୋଇ ପଡ଼େ । ସଚ୍ଚି ରାଉତରାୟଙ୍କ 'ଅଲକା ସାନ୍ୟାଲ' ବଙ୍ଗୀୟ କବି ଜୀବନାନନ୍ଦ ଦାସଙ୍କର 'ବନଲତା ସେନ୍'କୁ ଉପଜୀବ୍ୟ କରି ଲିଖିତ । ରାଉତରାୟ ଏହାକୁ ନିଜସ୍ୱ ଢଙ୍ଗରେ ନିର୍ମାଣିଛନ୍ତି । ସୌନ୍ଦର୍ଯ୍ୟ ଅବବୋଧରେ ନିଜସ୍ୱତା ଓ ସମସ୍ତବୋଧ ଆରୋପ କରିଛନ୍ତି । ଗୁରୁପ୍ରସାଦ ଆଉ କେଇ ପାଦ ଆଗକୁ ଯାଇ ସଙ୍କଟ ଓ ବିପର୍ଯ୍ୟସ୍ତ ଅଧିଷ୍ଠିତ ସମସ୍ୟବୋଧକୁ ତା'ସହ ସଂଯୋଜିତ କରି ଅଲକା ସାନ୍ୟାଲକୁ ଆଉ ଏକ ରୂପାନ୍ତର ବା ଜୀବଦାନ ଦେଇଛନ୍ତି । ଏହି ସବୁ ପ୍ରସଙ୍ଗ ଉଲ୍ଲେଖ, କ୍ରିୟା-ପ୍ରତିକ୍ରିୟା, ସଂଯୋଜନା, ପରିଗ୍ରହଣ-ପ୍ରତ୍ୟାଖ୍ୟାନ, ଆତ୍ମୀକରଣ ତୁଚ୍ଛା ଏକ ବୈଚିତ୍ର୍ୟନାତ୍ମତୂର୍ଯ୍ୟ ନୁହେଁ; ବରଂ କବିର କାବ୍ୟଐତିହ୍ୟ ସଂପୃକ୍ତ ଓ ସ୍ୱକୀୟ ସାଂସ୍କୃତିକ ଭାବସ୍ପନ୍ଦନର ଭାଷ୍ୟ ବୋଲି କହିବାକୁ ହେବ । ଏହି ପ୍ରସଙ୍ଗର ପଂକ୍ତିମାନ ଉଲ୍ଲେଖ କରାଯାଇପାରେ—

> "ଏ ରାତି ବିଶ୍ରାନ୍ତ ହଏ ସ୍ୱପ୍ନ ଆଉ ଯୁଗ ଯୁଗ କଳଙ୍କ କଳଙ୍କ ତାରି ଆଉ ତାରି
> ତୁମରି ଭ୍ରୂଲତା ତଳେ ମିଶିଯାଏ ଦିଗ୍‌ବଳୟ
> ରାଧାନାଥ ରାୟ ଆଉ ସଚ୍ଚି ରାଉତରାୟ"

ସେ କହିଲା, "ଏହି ମୋର ସିଲକ ଶାଢ଼ୀ ଆକାଶୀ ରଙ୍ଗରେ / ଆକାଶରୁ ଖସିଆସେ
ତାରା ଆଉ ସଚ୍ଚି ରାଉତରାୟ ।"

(କପୋତ କପୋତୀ)

> ସବୁଜ କବିତା ପରି ହୁଏତ ବା ଏ ପୃଥିବୀ ରୋମାଣ୍ଟିକ ସ୍ୱପ୍ନାଭ ସୁନ୍ଦର,
> 'ଧୂପର' ହରିହ ପରି ହୁଏତ ବା ଏହି ମନ ଆକାଶରେ ଭାରାତୁର ମେଘ ।

(ହରେକୃଷ୍ଣ ଦାସ ୨)

---

(୧) ଗୁରୁପ୍ରସାଦଙ୍କ ସହ ସାକ୍ଷାତକାର—ଶରତଚନ୍ଦ୍ର ଶତପଥୀ ଓ ପ୍ରଫୁଲ୍ଲ କୁମାର ଜଗଦେବ— ଗୁରୁପ୍ରସାଦ ବିଶେଷାଙ୍କ ମୂଲ୍ୟାୟନ : ୧୯୮୦ ।

ମୁଁ ନୁହେଁ ଧୂପର ହସରେ, ଗାର୍ଲସ୍କୁଲ, ଚୁମ୍ବନ ବା ଚମ୍ପୁର ନାୟକ
ଗୃହୁକଲା ଅଭାବ ମୋ ଠାରେ
ତାର ସିଲ୍କ ଲୁଗାଡଲ୍ରୁ ଗୋଲ ଗୁଡ଼ ଯେତେବ ଉଙ୍କି ମାରେ । (ଗୋବରଗଣେଷ)

ମୁଁ ତୁମକୁ ଭଲପାଏ ଚନ୍ଦ୍ରଭାନୁ ଭଲ ପାଉଥିଲା
× × ଲାବଣ୍ୟବତୀରୁ ତୁମେ ବା ରଥକଲ୍ଲୋଳରୁ × × (ପ୍ରିୟ ବାନ୍ଧବୀ)

ଏତେବେଳେ ଚକ୍ରବାକ ବୋଧହୁଏ କାନ୍ଦୁଥିବ
ଏତେବେଳେ ବଚ୍ଛଣାରେ ନଦ ଭାଙ୍ଗି ଆସୁଥିବ ଲାବଣ୍ୟବତୀର
ତୁମେ ମୁଁ ଆମେ ଦୁହେଁ ଆକାଶ ଓ ମ୍ଲାନ ନଈବାଲି
ତୁମେ ଆଉ ମୁଁ ଦୁହେଁ, ଭଞ୍ଜ ଆଉ ମାନସିଂହ, ରାଧାନାଥ ପଢ଼ି
ନିଶ୍ଚିହ୍ନ ମିଳାଇଯିବା ସ୍ୱାମୀ ଆଉ ଜନରବ ଗୁଡ଼ । (ଶରତ ଋତୁର ନନ୍ଦା)

ତୁମକୁ ବା ସଚ୍ଚିବାବୁ ଦେଖିଥିଲେ କେବେ
ଜାଣେ ନାହିଁ ଅଳକା ସାନ୍ୟାଲ × ×
ତା' ପରେ ବା ପୁଣି କେବେ ନୂଆଶାଲ୍ ପଠାଣବସ୍ତିରୁ
ଭାରତର ସ୍ୱାଧୀନତା ଦେଲା ପୁଣି ଦ୍ୱିତୀୟ ନମ୍ବର × × (ଅଳକା ସାନ୍ୟାଲ)

ପ୍ରଥମା ନାୟକ ହସେ ତା' ଦେହରେ କଳା ଶାଢ଼ୀ, ବୁକ୍ ଆଉ ବ୍ରଣର ବିକାର ।
(କାଳ ପୁରୁଷ)

× × କିଛି ଭଲ ଲାଗେ ନାହିଁ,
ମାର୍କସ, ଗାନ୍ଧୀ, ଜଗନ୍ନାଥ ଦାସ ।
ସାଧବ ଯୁବତୀମାନେ ଅତି ପ୍ରମୋଦରେ
କାର୍ ଚଢ଼ି ବୁଲିଗଲେ ଉଡ଼ିଗଲେ କାଉ ଓ ବାଦୁଡ଼ି × ×

ସମକାଳୀନ କାବ୍ୟଧାରାର ଆଉ କୌଣସି କବି ପୂର୍ବସୂରିଙ୍କ ପ୍ରତି ଏତେ ମାନ୍ୟତା ଓ ପ୍ରବଣତା ପ୍ରତ୍ୟକ୍ଷ ଓ ମୁକ୍ତ ଭାବେ ପ୍ରକାଶ କରିବା ମନେହୁଏ ନାହିଁ । ନିଜ କାବ୍ୟ ପରମ୍ପରାର ଆଲୋକରେ କାବ୍ୟଧାରାର ଲାଳନପାଳନ ଓ ଶୁଶ୍ରୂଷା ଗୁରୁପ୍ରସାଦଙ୍କୁ ମାଟିର ବାସ୍ନା ଅନୁରକ୍ତ କବି ବୋଲି ଚିହ୍ନିତ କରେ । ଉଦ୍ଧୃତ ପଂକ୍ତିମାନ ପ୍ରତ୍ୟକ୍ଷ ଭାବେ ସ୍ପଷ୍ଟ ଅର୍ଥବହ । ତା'ର ବିସ୍ତୃତ ବିଶ୍ଳେଷଣ କରାଯାଇ ପାରେ । ସିଲ୍କ ଶାଢ଼ୀ ଆଦାଶୀ ରଙ୍ଗରେ, ତାରା ଆଉ ସଚ୍ଚି ରାଉତରାୟଙ୍କର ଉଲ୍ଲେଖ ଭିତରେ ସଚ୍ଚିବାବୁଙ୍କୁ ନୂଆ ରୂପ ଚୟନ ଓ ପ୍ରୟୋଗକାଂକ୍ଷୀ ଏକ ଉଜ୍ଜ୍ୱଳ ପୂର୍ବସୂରି ଭାବେ ମାନ୍ୟତା ଦିଆଯାଇଛି । 'ସବୁଜ କବିତା' ତା' 'ଧୂପ'ର ବିଶେଷତ୍ୱକୁ ଗୋଟିଏ ଧାଡ଼ିରେ ଚମତ୍କାର ଭାବେ ସୂଚାଯାଇଛି ଏବଂ ନିଜ ବକ୍ତବ୍ୟ ସହ ତା'ର ସମନ୍ୱୟ ଘଟିଛି । ନିଜର କାବ୍ୟଗୁରୁ ଏଲିଏଟଙ୍କୁ ଗ୍ରହଣ କରି

କାବ୍ୟନାୟକଙ୍କୁ ଏକ ଆନ୍ତର୍ଜାତିକ ମଣିଷ ବୋଲି ତର୍କଣା କଲାବେଳେ ତା'ର ପରିଚୟ ମାନସିଂହଙ୍କ 'ଧୂପ', 'ଗାର୍ଲ୍ସ ସ୍କୁଲ', 'ଚୁମ୍ବନ' (ଦୁଇଟିଯାକ କାଳୀଚରଣଙ୍କ ଭିନ୍ନ ଧାରାର ନାଟକ),'ଚମ୍ପୁ'ର ନାୟକ ଠାରୁ ଯେ ଭିନ୍ନ—ଏହାକୁ ଆଉ କିଭଳି ଭାବେ କବି ଉପସ୍ଥାପନ କରିଥାନ୍ତେ ? ଏହା ଏକାସାଙ୍ଗେ କାବ୍ୟ ପରମ୍ପରାର ପରିଗ୍ରହଣ ଓ ପ୍ରତ୍ୟାଖ୍ୟାନ । ନାୟକଙ୍କୁ ଚନ୍ଦ୍ରଭାନୁ ଓ ନାୟିକାକୁ ଲାବଣ୍ୟବତୀ ମଧ୍ୟରେ ଠାବ କରିବା ମାନସିକତା କାବ୍ୟ ପରମ୍ପରାର ଦର୍ପଣରେ ନିଜ ରୂପଚ୍ଛାୟାର ପ୍ରତିଫଳନ ନୁହେଁ କି ? ସମକାଳୀନ ଭୋଗଦଶାସ୍ତ ଜ୍ୱଳନ ଓ ଅନ୍ତର୍ଦାହର ଚିହ୍ନ ଅରଣ୍ୟ ଅଜଗର ପ୍ରସଙ୍ଗରେ ସଂଯୋଜିତ ହୋଇ ବେଳେ କବି 'ଚନ୍ଦ୍ରଭାନୁର ହୁଙ୍କାର' ଓ 'ଲାବଣ୍ୟବତୀର ଇଷିକାର'କୁ କଳାଧଙ୍ଗିତ ଭାବେ ଉଲ୍ଲେଖ କରନ୍ତି । 'ଅଳକା ସାନ୍ୟାଲ'ରେ ସଚ୍ଚି ରାଉତରାୟ ନୂଆ-ଖାଇ ଦଙ୍ଗା କଥା ଉଲ୍ଲେଖକରି ଏକ ଭାରତୀୟ ସମସ୍ୟାବୋଧ ସହ ନାରୀର ସ୍ଥିତି ଓ ନିର୍ଯାତନାକୁ ରୂପ ଦେଇଥିଲେ । ତାକୁ ପରବର୍ତ୍ତୀ ବିବର୍ତ୍ତିତ ଭାରତୀୟ ପ୍ରେକ୍ଷାପଟରେ ଗୁରୁପ୍ରସାଦ ଭିନ୍ନ ରୂପାନ୍ତର ଦେଇଛନ୍ତି । ସମସ୍ୟାବୋଧ ଓ କାବ୍ୟ ପରମ୍ପରା ସମ୍ପ୍ରୀତି ଦୃଷ୍ଟେ 'କାଳପୁରୁଷ' ଭିତରେ ବଡ଼ ସଚେତନ ଭାବେ କବି ସଚ୍ଚି ରାଉତରାୟଙ୍କ ଯୁଗନାରୀର ପ୍ରତିନିଧି ସ୍ଥାନୀୟା ପ୍ରତିମା ନାୟିକାର ଉଲ୍ଲେଖ କରିଛନ୍ତି ।

'କାଳପୁରୁଷ' ରଚନା କାଳର ପ୍ରମୁଖ ମନନଶୀଳତାର ଅନ୍ୟତମ ମୂଳବିନ୍ଦୁ ଗାନ୍ଧୀ ଓ ମାର୍କସଙ୍କ ସହ ଆଧ୍ୟାତ୍ମିକ ଅଷ୍ଟଦ୍ୱାର ଭାଷ୍ୟକାର ଜଗନ୍ନାଥ ଦାସଙ୍କ ଉଲ୍ଲେଖ ସେ ସଚେତନ ଭାବେ କରିଛନ୍ତି । ତାଂଙ୍କ ସାଧବଯୁବତୀ ଓ ତା'ର ବନ୍ଧୁର ବନ୍ଧାଣ ପ୍ରସଙ୍ଗର ନାୟିକାକୁ କବି ସାଂପ୍ରତିକ ପ୍ରେକ୍ଷାପଟରେ ଭିନ୍ନ ଆଖିରେ ଦେଖିଛନ୍ତି । ଏବର ନାୟିକା କାର୍ ଚଢ଼େ, ତା'ର ଆମୋଦ ଅନେକଟା ଦେହସର୍ବସ୍ୱ । ତା'ର ଆବେଗ ଓ ପ୍ରେମ-ପ୍ରବଣତା ଭିନ୍ନ ନାଁହାକୁ, ନାୟିକାକୁ ପରମ୍ପରାର ପୀଠିକାରେ ଗୁରୁପ୍ରସାଦ ଏଣୁ ଭିନ୍ନଭାବେ ଦେଖିଛନ୍ତି ।

'ଆଶ୍ଚର୍ଯ୍ୟ ଅଭିସାର'ର 'ମୃତ୍ୟୁ' କବିତାରେ କବି ଗଙ୍ଗାଧର ମେହେରଙ୍କ 'ମୁଁ ତ ଅମୃତ ସାଗର ବିନ୍ଦୁ । ନଭେ ଉଠିଥିଲି ତେଜି ସିନ୍ଧୁ ॥ ପଥେ ଶୁଖିଗଲେ ପାପତାପରେ । ହୋଇ ଶିଶିର ଖସିବି ତାପରେ ।'' କୁ ଗ୍ରହଣ କରି ସ୍ୱକୀୟ କାବ୍ୟବକ୍ତବ୍ୟ ପ୍ରକାଶ କରନ୍ତି । ଏଥିରେ ଗୁରୁପ୍ରସାଦଙ୍କର ସମସ୍ୟାବୋଧ ଓ ମୃତ୍ୟୁ ପ୍ରତି ନିର୍ଲିପ୍ତ ଦୃଷ୍ଟିଭଙ୍ଗୀ ପ୍ରକାଶ ପାଇଛି । ମୃତ୍ୟୁ ଅମୃତରେ ପର୍ଯ୍ୟବସିତ ହେବାର ଉପନିଷଦୀୟ ଭାବନା ବା କାମନା ସହ ମୁହୂର୍ତ୍ତଧନ୍ୟ ଜୀବନ ଜୀଇଁବାର ଏଷଣା ରହିଛି । ଶିଶିରବିନ୍ଦୁର ସୂର୍ଯ୍ୟମୟତାର ସ୍ୱଳ୍ପକାଳୀନ ଅନୁଭୂତି କମ୍ ଜୀବନ ଆସକ୍ତି ଓ ହର୍ଷୋତ୍ଫୁଲ୍ଲତାର କଥା କହେ ନାହିଁ । ଗଙ୍ଗାଧରଙ୍କୁ ସମ୍ବୋଧନ ଓ ସ୍ମରଣ କରି ଗୁରୁପ୍ରସାଦ କହନ୍ତି—

"ମହାଶୟ,

ମୁଁ ଯଦି ପାରନ୍ତି ରଖି ଆପଣଙ୍କ 'ଅମୃତ' ଓ 'ଶିଶି'ରର ଆଶା ।"

ହରେକୃଷ୍ଣ ଦାସ [୪]ରେ ହରେକୃଷ୍ଣ ଦାସ ମୁହଁରେ କାବ୍ୟ ନାୟକର ବକ୍ତବ୍ୟ ନିମ୍ନମତେ :

ହରେକୃଷ୍ଣ ଦାସ

ବାରମ୍ବାର ଫେରୁଥାଇ ମୃତ୍ୟୁରୁ ଅମୃତ ଖୋଜି ।

କାଳ ପୁରୁଷ'ରେ ପ୍ରକାଶିତ

ଏହି ବକ୍ତବ୍ୟର ପୁନଃ ପୁନଃ ଉଚ୍ଚାରଣ ଓ ପ୍ରତିଧ୍ୱନି ଭାରତୀୟ ଉପନିଷଦ ପରମ୍ପରାର ବିନୀତ ସ୍ମରଣ ନୁହେଁ କି ? ଅତଏବ ଗୁରୁପ୍ରସାଦଙ୍କର ପରମ୍ପରା ସଂପ୍ରୀତି ବଡ଼ ଉଲ୍ଲେଖଯୋଗ୍ୟ ଭାବେ ତାଙ୍କ କବିତାପଂକ୍ତିରେ ପ୍ରମୂର୍ତ୍ତ । ଏହା ତାଙ୍କର ସ୍ୱକୀୟ ସାଂସ୍କୃତିକ କାବ୍ୟ ଐତିହ୍ୟର ସ୍ମରଣ; ଅନ୍ୟ ଅର୍ଥରେ ଭାରତୀୟତାବୋଧ । ନିଜ ମାଟିର ବାସ୍ନା ବା ସ୍ୱାଦ ଗନ୍ଧ ଅନୁରାଗସୂଚକ । ଏହା ଅବଶ୍ୟ ଏ କ୍ଷେତ୍ରରେ ମୁଖ୍ୟତଃ ଆଞ୍ଚଳିକ ଢଙ୍ଗରେ ରଞ୍ଜିତ ଓ ସିକ୍ତ ।

[ଖ] ଆମ କବିତାରେ ମିଥ୍ ପ୍ରୟୋଗ ପାଶ୍ଚାତ୍ୟ କବିତା ସମ୍ପୃକ୍ତିରୁ ଆସିଛି । ମିଥ୍‌ର ଭୂମି ବିଶ୍ୱମୁଖୀ । ପାଶ୍ଚାତ୍ୟ କବିଏ ଭାରତୀୟ ପରମ୍ପରାରୁ ଆହରଣ କରି ମିଥ୍ ପ୍ରୟୋଗ କ୍ଷେତ୍ରରେ ସ୍ୱକୀୟ ବକ୍ତବ୍ୟ ଦେଇଛନ୍ତି । ଏହି ସୂତ୍ରରେ ଭାରତୀୟ କବିର ଏକ ଆନ୍ତର୍ଜାତିକ ସ୍ମରଣଭୂମି ରହିଛି । ଗୁରୁପ୍ରସାଦଙ୍କ ପାଶ୍ଚାତ୍ୟ ପ୍ରସଙ୍ଗ ଏଠାରେ ଆଲୋଚ୍ୟ ନୁହେଁ । ଗୁରୁପ୍ରସାଦଙ୍କ ମିଥ୍‌ବୋଧଟି ଭାରତୀୟ । ଅନୁସରଣରେ ପାଶ୍ଚାତ୍ୟ ପ୍ରସଙ୍ଗ ଓ ଢଙ୍ଗ ରହିଛି । ଗୁରୁପ୍ରସାଦଙ୍କ କାବ୍ୟନାୟକର ପାପବୋଧ, ଅମଙ୍ଗଳ-ମଙ୍ଗଳ ଭାବନା, ସ୍ଥିତିଗତ କ୍ଳାନ୍ତତା ଓ ଉଦ୍‌ବିଗ୍ନତା ସର୍ବୋପରି ଆଧ୍ୟାତ୍ମିକ ଆତ୍ମୋଦ୍ଧାର ସଚ୍ଚପ୍ରକାଶ ପାଇଁ 'ଭାଗବତ' ହିଁ ହୋଇଛି ବଳିଷ୍ଠ ଆଧାର । ଭାଗବତୀ ପରିମଣ୍ଡଳ କଥା ପୂର୍ବରୁ କୁହାଯାଇଛି । ତାଙ୍କର ଅକ୍ରୂର, ଉଦ୍ଧବ ଉଚ୍ଚାରଣ, ଅବଧୂତଙ୍କ ଅଜଗର ପ୍ରସଙ୍ଗ, ତକ୍ଷକ ପରୀକ୍ଷିତ ପ୍ରସଙ୍ଗ, ଏକପାଦ ବୃଷଭ କଥା, ଏକ ଦେହେ ପୁରୁଷ ଓ ନାରୀ ଭାବେ ଜନ୍ମ ପ୍ରସଙ୍ଗ ପ୍ରଭୃତି ଭାରତୀୟ ଆଧାର ତାଙ୍କ ବକ୍ତବ୍ୟକୁ ସମୃଦ୍ଧ କରିବା ସଙ୍ଗେ ସଙ୍ଗେ କାବ୍ୟନାୟକକୁ ଏକ ସାଂସ୍କୃତିକ ପରିପ୍ରେକ୍ଷୀ ପ୍ରଦାନ କରିଛି । କବି 'କାଳପୁରୁଷ' ଓ 'ଅକ୍ରୂର ଉବାଚ'ରେ ଅକ୍ରୂର ଓ ଉଦ୍ଧବଙ୍କ ଉଚ୍ଚାରଣ ଭିତରେ ମୁକ୍ତିକାମୀ ଓ ଜୀବନକାମୀ ଆତ୍ମାର ସ୍ପର୍ଶ-କାତରତା, 'ବିଶନ ମହାନ୍ତି'ରେ ବିଶନ ମହାନ୍ତିଙ୍କ ପ୍ରସଙ୍ଗ ଉତ୍ଥାପନରେ ଏକ ମୁକ୍ତି-ବ୍ୟାକୁଳ ଜଗନ୍ନାଥୀ ଆତୁରତା, 'ସଞ୍ଜୟ ଓ ଧୃତରାଷ୍ଟ୍ର ସମ୍ବାଦ' ଭିତରେ 'କୁରୁକ୍ଷେତ୍ର'କୁ ଏକ ଚିରସ୍ଥିତ, ଅନ୍ତହୀନ ଚେତନା ଓ ସଂଘର୍ଷର ଭୂମି ଭାବେ ରୂପାୟିତ କରିବା ପ୍ରୟାସ ଅତି କଳାସଙ୍ଗତ ଭାବେ କରି ପାରିଛନ୍ତି । ଆଧୁନିକ ଯୁଦ୍ଧଧ୍ୱାନ୍ତ ପୃଥିବୀ ନିଜ ଜ୍ଞାତିଙ୍କ ରକ୍ତରେ ଚିତା ଯେଉଁଥିବା ଏକ କୁରୁକ୍ଷେତ୍ର ଛଡ଼ା ଭିନ୍ନ କିଛି ନୁହେଁ ବୋଲି ଅବତାରଣା

କରିଛନ୍ତି । ଗୁରୁପ୍ରସାଦ ଝୁବ୍ ମିଥ୍ୟନସ୍ତ ନ ହେଲେ ବି ବକ୍ତବ୍ୟର ଷାଂକାଶ ଓ ଆବେଦନର ତୀବ୍ରତା ପାଇଁ ତାକୁ ଆପଣାମତେ ପ୍ରୟୋଗ କରିଛନ୍ତି ।

[ଗ] କାବ୍ୟ-ପରମ୍ପରାର ସମ୍ପ୍ରୀତ ଭିନ୍ନ ସ୍ୱଜାତ୍ୟ ଐତିହ୍ୟ ଓ ପରମ୍ପରାର ସ୍ମରଣ ଓ ତା'ର ପ୍ରସଙ୍ଗୋଚିତ ସମନ୍ୱୟ ଜଣେ କବିର ମାଟିପ୍ରବଣତା ଓ ସାଂସ୍କୃତିକ ଭାବ ସ୍ପନ୍ଦନର କଥା କହିଥାଏ । ଏହି ଐତିହ୍ୟ ଓ ପରମ୍ପରାର ସ୍ମରଣ ଗୁରୁପ୍ରସାଦଙ୍କଠାରେ ଯେତିକ ସ୍ୱତଃସ୍ଫୂର୍ତ୍ତି ହେଉକ ସଚେତନତା ସଂଜାତ ବୋଲି ମଧ୍ୟ କହିବାକୁ ହେବ । ଗୁରୁପ୍ରସାଦ ସଚେତନ ଭାବେ The Waste Landକୁ 'କାଳପୁରୁଷ' ଭାବରେ ଏକ ଆଞ୍ଚଳିକ ରୂପାନ୍ତର ଦେଇଛନ୍ତି । ପ୍ରୁଫକ୍‌ଙ୍କ ପ୍ରେମ ସଙ୍ଗୀତକୁ 'ଗୋବରଗଣେଶ'ରେ ଠାବ କରିଛନ୍ତି । ହରେକୃଷ୍ଣ ଦାସ [୧], [୨] ଭିତରେ ଆମେ କେଉଁ ପାଶ୍ଚାତ୍ୟ ନାୟକକୁ ମଧ୍ୟ ଭେଟିବା । ତେବେ କବିଙ୍କର ଏହି ଐତିହ୍ୟ ଓ ପରମ୍ପରାର ସ୍ମରଣରେ ବିଭିନ୍ନ ସମୟରେ ବିବର୍ତ୍ତି ଭାରତୀୟ ଜୀବନଧାରା, ଧାର୍ମିକ ଓ ଆଧ୍ୟାତ୍ମିକ ଅଭ୍ୟୁଦୟ ଓ ବିଳୟକୁ ଲକ୍ଷ୍ୟ କରି ପାରିବା । 'ଚଠି' କବିତାରେ 'ପିତୃ ପୁରୁଷର ଜରାମୃତ୍ୟୁ ବ୍ୟାଧିର ଖବର' କିମ୍ବା 'କାଳ ପୁରୁଷ'ରେ 'ମୁଁ ଆଜି ତଥାପି ଖୋଜେ ଆଦି ଜନ୍ମସ୍ଥାନ ମୋର/ମୋର ଅନ୍ଧ ପିତା ମାତା ଅରୁନ୍ଧତୀ ତାରାର ଆଲୁଅ'ର ଉଚ୍ଚାରଣ ମୁଖ୍ୟତଃ ଏକ ଅନ୍ୱେଷଣ ଓ ପରିଚୟ ଜିଜ୍ଞାସାକୁ ପ୍ରକାଶ କରେ । ପିତୃପୁରୁଷ ପ୍ରତି ଶ୍ରଦ୍ଧାର୍ପଣ, ନିଜର ମୂଳ ଅନୁସନ୍ଧାନ, ଅରୁନ୍ଧତୀ ତାରାର ରୂପାୟନରେ ମଳିନ ସ୍ଥିତିରୁ ପବିତ୍ର ଓ ଉଜ୍ଜ୍ୱଳ ହେବାର ବ୍ୟାକୁଳତା ପୋଷଣ ନିଜସ୍ୱ ପରମ୍ପରା ଓ ଐତିହ୍ୟ ସମ୍ପ୍ରୀତିର କଥା । ସମୟବୋଧ ଓ ସ୍ଥିତିଗତ ଅନ୍ୱେଷା ପ୍ରସଙ୍ଗରେ ଗୁରୁପ୍ରସାଦଙ୍କ ଠାରେ ବେଶୀ ମାତ୍ରାରେ ନ ହେଲେ ମଧ୍ୟ ଏକ ତୀର୍ଥଙ୍କର ବ୍ୟାକୁଳତାକୁ ଲକ୍ଷ୍ୟ କରିହୁଏ । ଗୁରୁପ୍ରସାଦଙ୍କ ଅନ୍ୱେଷାଧର୍ମୀ ଯାତ୍ରା ଭିତରେ ଅତୀତ ଭାରତର ଗୌରବୋଜ୍ଜ୍ୱଳ ପରମ୍ପରା ନେଇ ଏକ ଅତୀତଅଭିମୁଖୀ ସ୍ମୃତିସ୍ପର୍ଶ (Nostalgic touch) ଏବଂ ସାଂପ୍ରତିକ କାଳର ଦୁଃସ୍ଥିତି ଓ ବିଡ଼ମ୍ବନାଗତ କାରୁଣ୍ୟକୁ ଅନୁଭବ କରିହୁଏ । ପ୍ରମୁଖ କବିତା 'କାଳପୁରୁଷ'ରୁ ଏଇ ପ୍ରସଙ୍ଗର କେତୋଟି ପଂକ୍ତି ଉଦ୍ଧାର କରାଯାଇପାରେ ।

ହେ ଅଙ୍କୁର ସଖା ମୋ ବୃଦ୍ଧ ବୃକ୍ଷ
ମୁଁ ତୁମକୁ ଖୋଜିଥିଲି କେତେ ରେଳପୋଲ ଡେଇଁ
କେତେ ଯୁଗ ଯୁଗାନ୍ତର ସିଂହଳ ଓ ମାଳୟ ଦ୍ୱୀପରେ
କେତେ ଚକ୍ରି କୋଠା ଡେଇଁ ବିବର୍ଣ୍ଣ ପଥର ସ୍ତୂପ ବାରବାଟି

ପାରିବା ଭିତରେ...

× × × ଦେଶର ଜନତା ମୋର ମୋ ଦେଶରୁ...
ସହରରେ ବର୍ଷାପାଣି ପରିବା ଦ୍ୱୟପାରେ

ମୁଁ ଆଜି ସାଧନା ଖୋଜି ପାଉଛି ନିଶବ୍ଦ ପ୍ରାଚୀ ଘାଟରେ ଘାଟରେ···
ମଶାଲ ଅଲୁଅ ସବୁ ନିଭିଗଲା ଗୋଟି ଗୋଟି
ନାରିକେଳ, ତାଳବଣ, ଝିଙ୍କତର ବଗିଚ ଉପରେ
ପ୍ରାଚୀ ନଦୀ କୂଳେ କୂଳେ ବାଲିଚର ମାଡ଼ିଗଲା ପରେ ପରେ
ଆରତି ଘଣ୍ଟାର ଧ୍ୱନି ଚୁପ୍ ହେଲା ସେତେବେଳେ ।
ଉଜ୍ଜୟିନୀ ଓ ଦନ୍ତପୁରରେ
ତାଳପତ୍ର ପୋଥି ଆଉ ଶିଳାଲିପି ଭିତରେ
ସ୍ମୃତିଆଡ଼େ ପଡ଼ା ହେଲା ପରେ × × ×
ରାମକୃଷ୍ଣ ମିଶନ୍‌ରୁ କେତେ ବାଟ ଏମାର ମଠକୁ ?

× × ×

ମୁଁ ଜାଣିଲି ସେତେବେଳେ ପିତୃମାତୃ ବନ୍ଧୁ ହୀନ ଆମୁକ୍ଷୁ ବଂଶଜଙ୍କୁ
ଦେଶବାସୀ ଛଡ଼ୁ ପୁଣି ଧନ ଜନ ଲକ୍ଷ୍ମୀ, ଧର୍ମ ପୁଣି ଗୋବ୍ରାହ୍ମଣ ଛଡ଼ୁ

ପ୍ରାଚୀନଦୀ, ଉଜ୍ଜୟିନୀ, ଝିଙ୍କିତ, ଦନ୍ତପୁର, ରାମକୃଷ୍ଣ ମିଶନ୍, ଏମାର ମଠ ସ୍ମୃତିର, ଅରୁନ୍ଧତୀ ତାରା ସହିତ ଅନ୍ୟାନ୍ୟ ସ୍ୱାତୀ ଶତଭିଷା ଆଦି ନକ୍ଷତ୍ରଙ୍କ ଉଲ୍ଲେଖ କିମ୍ବା ମହାପରିନିର୍ବାଣ ପ୍ରସଙ୍ଗ କେବଳ ଇତିହାସ ପୁରାଣ ଆମୁଖତା ନୁହେଁ, ଏହାର ଉଲ୍ଲେଖ ଏବଂ ପ୍ରସଙ୍ଗୋଚିତ ସମନ୍ୱୟ ହିଁ ଏକ ଭାରତୀୟ ଜୀବନ ଦୃଷ୍ଟି—ନିଜ ଐତିହ୍ୟର ରୂପ-ରାଗକୁ ହିଁ ପ୍ରକାଶ କରେ । 'ହରିଜନ ମହାତ୍ମ୍ୟ'ରେ ଭଗବାନଙ୍କ ବ୍ୟକ୍ତିଗତ କାରୁଣ୍ୟ ଓ ଯୁଗ ଯନ୍ତ୍ରଣାର ଗ୍ଲାନି ପ୍ରସଙ୍ଗରେ ସ୍ମରଣ କରି ପଚାରନ୍ତି—

ଆପଣ ଫେରିବେ କି'ଣ ଶ୍ରୀକ୍ଷେତ୍ରକୁ ପୁଣିଥରେ ? ଅନ୍ୟ ଦାରୁ
ଧୂପଝୁଣା ଚନ୍ଦନର ସୁଗନ୍ଧରେ ଅନ୍ୟ ରଙ୍ଗ ଅନ୍ୟ ଚିତ୍ରାଙ୍କନ
ଆପଣ ତ ଫେରିଥିଲେ ତ୍ରେତୟା ଓ ଦ୍ୱାପରରେ, ପୁଣି ଏକ ଅରଣ୍ୟ ରାଜ୍ୟରେ
ନିଦ୍ରିତ ରାଣୀର ଗର୍ଭେ ଭିତରକୁ ଆଲୋକିତ ଶ୍ୱେତହସ୍ତୀ ହୋଇ ?

'କ୍ରିସ୍‌ମାସ୍' କବିତାରେ ଯୀଶୁଙ୍କ ପୁନରାବିର୍ଭାବ ହେବା ପ୍ରସଙ୍ଗ ଉତ୍ଥାପନ କରି ସେ କୋଡ଼ିଏଟି ଶତାବ୍ଦୀ ପରେ ତଥାପି ସମସ୍ତ ଅଶାନ୍ତ ଓ ଯନ୍ତ୍ରଣାକ୍ତ ବୋଲି କୁହନ୍ତି । ବିଭିନ୍ନ ପ୍ରସଙ୍ଗରେ କୃଷ୍ଣ, ବୁଦ୍ଧ ଏବଂ ଯୀଶୁଙ୍କ ଉଲ୍ଲେଖ ଏକ ମହତ୍ତର ସମନ୍ୱୟକୁ ସୂଚାଏ । ଗୁରୁପ୍ରସାଦଙ୍କ ପରମ୍ପରା ଓ ଐତିହ୍ୟର ସ୍ମରଣ ଏଣୁ ଭୂମିରେ ଓ ସ୍ମୃତିରେ ଭାରତୀୟ ରଙ୍ଗରେ କିଛି ଭବେ ଆଞ୍ଚଳିକ । ପୁଣି ତାହା ବିଶ୍ୱମାନସିକତାକୁ ଛୁଏଁ !

ବର୍ଷା ଗୁରୁପ୍ରସାଦଙ୍କ କବିତାରେ ଜୀବନ-ଆହଲ୍ଲାର ପ୍ରତୀକ । 'କାଳପୁରୁଷ'ରେ ଅନ୍ୱେଷଣର ପରିଧିକୁ ସ୍ଥାନିକ ବ୍ୟାପ୍ତି ଦେଲାବେଳେ ସେ ବର୍ଷାର ଗତିପଥରେ ତାମ୍ରଲିପ୍ତ, ଗୁଣ୍ଡିଚ, ସିଂହଳଦ୍ୱୀପ, କଟକ, କଲିକତା, ବାରୁଣୀବନ୍ତ ଏବଂ ଅନ୍ୟ ପ୍ରସଙ୍ଗରେ ପ୍ରୟାଗ ଓ ରାମେଶ୍ୱରର ଉଲ୍ଲେଖ କରିଛନ୍ତି । ଗୁରୁପ୍ରସାଦଙ୍କ କବିତାରେ ପ୍ରତିଫଳିତ ବିଚ୍ଛିନ୍ନତାବୋଧ ପାଶ୍ଚାତ୍ୟ ପୋଡ଼ାଭୂଇଁର ପ୍ରଭାବ ପୁଷ୍ଟ ବୋଲି ବହୁ ଆଲୋଚନାରେ ଦର୍ଶାଯାଇଛି । ସମସ୍ତ ପୁଣି ଭୟ, ପାପବୋଧ, ମହାପାତକ ଦ୍ୱାରା ନିର୍ମିତ ପ୍ରମାଣ ବୋଲି ସେ କହିଛନ୍ତି । 'ସମୁଦ୍ର ସ୍ନାନ'ରେ ପ୍ରତିଫଳିତ ଛିନ୍ନମୂଳ ଅନିକେତ ଭାବକୁ 'ଆଶ୍ଚର୍ଯ୍ୟ ଅଭିସାର'ରେ ସେ ପରିହାର କରିଛନ୍ତି । ସ୍ନେହ ସୌହାର୍ଦ୍ଦ୍ୟର ଅବିଚ୍ଛେଦ୍ୟ ବନ୍ଧନ ଏବେ ବି ଭାରତୀୟତାର ଆତ୍ମାକୁ ବିଚ୍ଛିନ୍ନତା ମୁକ୍ତ କରି ରଖିଛି—ଏ ପ୍ରକାର ଏକ ଆତ୍ମୀୟ ବିଶ୍ୱାସବୋଧ ଗୁରୁପ୍ରସାଦଙ୍କଠି ପରିଲକ୍ଷିତ ହୋଇଛି । 'ବାବା ପାଇଁ ଦୁଇଟି କବିତା' ଏହା ସପକ୍ଷରେ ଏକାନ୍ତ ବଳିଷ୍ଠ ଉଦାହରଣ । 'ମା' ଓ 'ପୁଅ' ଚେତନାବୋଧ ଭାରତୀୟ ଭାବର ମୂଳ ନମୁନା । ସୌହାର୍ଦ୍ଦ୍ୟ ଓ ମମତ୍ୱବୋଧର ନିବିଡ଼ତା ଦେଇ ପାରିବାରିକ ବନ୍ଧନର ଅତୁଟତା ଏଇ ଭାବର ଭୂମି । ନିଜ ମା'ଙ୍କ ପ୍ରୟାଣରେ କାବ୍ୟନାୟକ ପୁଅକୁ ସମ୍ବୋଧନ କରି ସ୍ମୃତି ଓ ମମତ୍ୱବୋଧର ନିବିଡ଼ତା ଦେଇ ନିଜର ଶୂନ୍ୟତାବୋଧକୁ ସମାହିତ କରିବା ସଙ୍ଗେ ସଙ୍ଗେ ତିନୋଟି ପିଢ଼ି (generation)କୁ ଗୋଟିଏ ଆତ୍ମୀୟତାର ରଜ୍ଜୁରେ ବାନ୍ଧି ରଖିଛନ୍ତି । ରକ୍ତର ସମ୍ପର୍କ ଭିତରେ ସେ ପାଆନ୍ତି ଆତ୍ମାର ସମ୍ପର୍କ ।

ମା'ଙ୍କ ସ୍ନେହ ଓ ସ୍ମୃତି ଏବଂ ଅପତ୍ୟର ମମତା ଭିତରେ ଗୁରୁପ୍ରସାଦଙ୍କ କାବ୍ୟନାୟକ ନିଷ୍ଠ ବର୍ତ୍ତମାନ ଓ ଶୂନ୍ୟତାବୋଧକୁ ଅତିକ୍ରମ କରୁଛି । ଏଠାରେ ଆତ୍ମୀୟତାବୋଧ ଏବଂ ମା', ପୁଅ (ବାବା) ଧନ୍ଦ ଆତ୍ମିକୀକରଣରେ ଅକପଟ ଉଚ୍ଚାରଣ ମଧ୍ୟରେ କାବ୍ୟନାୟକ ହୁଏତ ନିଜର ମୂଳ (root)କୁ ଖୋଜି ପାଏ । ବିପର୍ଯ୍ୟସ୍ତ ମୂଲ୍ୟବୋଧ ଓ ବ୍ୟକ୍ତିଗତ କ୍ଷୟିଷ୍ଣୁତାର ଦରଜକୁ ଆତ୍ମସ୍ଥ କରି ମା'ର ମହନୀୟ ମମତ୍ୱବୋଧର ସ୍ମୃତିଚାରଣ ଓ ପୁଅର ନିଷ୍କଳଙ୍କ ନିଷ୍ପାପ ଭାବକୁ ଯୋଡ଼ି କବି ଅନୁଭବ କରନ୍ତି ଏକ ଉତ୍ତୀର୍ଣ୍ଣତାର ଦ୍ୟୋତନା । ଏହି ଆତ୍ମୀୟତାବୋଧ, ଆତ୍ମିକୀକରଣ ହେଉଛି 'କାଳପୁରୁଷ'ର ଅନ୍ୱେଷାଧର୍ମୀ ଅସମାହିତ ଭାବାବେଗର କ୍ଷତିପୂର୍ତ୍ତି । କେଇଟି ପଂକ୍ତି ଉଦ୍ଧାର କରାଯାଇପାରେ ।

ତୋ ଆଖିର ଏହି ତାରା
ମୋ ଆଖି ତାରାରୁ ନିଏ ଛଡ଼େଇ ଖେଳଣା କେତେ
କେତେ ଭଙ୍ଗା କଣ୍ଢେଇର ହାତଗୋଡ଼ ଭଙ୍ଗା ଚକ
କେତେ ସ୍ପ୍ରିଙ୍ଗ୍ ପେଁକାଳି, ପୁଣି କେତେ ରଙ୍ଗର ଆଲୁଅ...

ତୋ ବୁଢ଼ୀମାଆର ଆଖି ତଳରୁ ବି ଆଖି ମୋର
ଏମିତି ଛଡ଼େଇ ହନେ ଆଣିଥିଲି କେତେ ଗପ, କେତେ ଗୀତ
କେତେ ଯେ ଆକାଶ ଡେଇଁ କେତେ ଗୁଡ଼ି ବେଲୁନ୍‌ରେ
କେତେ ଲୁହ, କେତେ ଡର, କେତେ ବୁଢ଼ୀ ଅସୁରୁଣୀ ମୁହଁ । × ×

ଏ ଶୀତର ଏ କୁହୁଡ଼ି, ମୋ ବୋଉ ତୋ ବୁଢ଼ୀମାଆ
ତୋ ବୁଢ଼ୀମାଆର ଚମ
ଧଳା ଶାଳ ଗୁଦରର ଅଫେରନ୍ତ ଆକାଶ ଆକାଶ
ଆଜି ତେଣ୍ଡୁ ତୋ ଆଖିର ତାରାରେ ମୋ ମୃତ୍ୟୁ ହୁଏ
ମୋର ଜନ୍ମ ଜନ୍ମାନ୍ତର / ବନ୍ଧୁ ଲମ୍ବ ବଳୟର ନଷ୍ଟ ଇତିହାସ ।

(ବାବା ପାଇଁ ଦୁଇଟି କବିତା : ଏକ)

ତା ବାଟରେ ଫୁଲ ପଡ଼ୁ, ବର୍ଷା ହେଉ ଚନ୍ଦନ ଓ ଝୁଣା
ଅସ୍ପଷ୍ଟ ନକ୍ଷତ୍ର ଯେତେ ମୁହଁ ହବୁ ବରକ୍ତିର
ଲେପ ପାଉ ଶୂନ୍ୟ ଆକାଶରେ
ଯାଯାବର ତା ଆତ୍ମାର ଗନ୍ଧ ହେଉ ତୋର ଗୀତ ପଦ
ଅର୍ଥହୀନ ଉଲ୍ଲାସର ସାନ ସାନ ଅଫେରନ୍ତ ଢେଉ ।

(ବାବା ପାଇଁ ଦୁଇଟି କବିତା : ଦୁଇ)

[ଘ] ଆରଣ୍ୟକତାର ଅନ୍ୟ ପରିଚୟ ପଲ୍ଲୀ ଆମୁଖତା—ଗ୍ରାମଶୋଭା ମୁଗ୍‌ଧତା । 'ସମୁଦ୍ର ସ୍ନାନ'ର 'ଛୁଟିର ଖବର', 'ଦୃଷ୍ଟିର ବସନ୍ତ', 'ସିତୁଆ' ଏବଂ 'ଆଶ୍ଚର୍ଯ୍ୟ ଅଭିସାର'ର 'ମାର୍ଶାଘାଇ', 'ନିଶ୍ଚିନ୍ତ କୋଇଲି', 'ଲ୍ୟାଣ୍ଡସ୍କେପ [୧]' ଆଦି କବିତା ଗ୍ରାମୀଣ ଜୀବନ ସୋହାଗ ଓ ସଙ୍ଗୀତ ସପକ୍ଷରେ ସାକ୍ଷ୍ୟ ଦିଅନ୍ତି । ଏହାର ଉପସ୍ଥାପନ ପ୍ରାୟତଃ ସ୍ମୃତିଧର୍ମୀ ସୌନ୍ଦର୍ଯ୍ୟ ଓ ମମତାସିକ୍ତ । ଏଇ ଜୀବନ ଧାରା ସଭ୍ୟତା ସଙ୍କ୍ରମଣ ଯୋଗୁଁ ବିପର୍ଯ୍ୟସ୍ତ ହେବାକୁ ବସିଛି । ଗୁରୁପ୍ରସାଦଙ୍କ ଗ୍ରାମଶୋଭା ମୁଗ୍‌ଧତାର ଚୟଚେତନା ଅତ୍ୟନ୍ତ ପ୍ରାଣମୟ ।

ଟୁପ୍‌ଟାପ୍ ବାଲିଚର, ଗାଁ ସ୍କୁଲ, ଡାକପିଅନ, ସାଇକେଲ ଘଣ୍ଟି
କେଉଟ ସାହିର ଡିଙ୍ଗି ଟୁପ୍‌ଟାପ୍, ଲୁଗା ନାହିଁ ଧୋବାରୁଠ ଅଡ଼େ
ଗୁରୁବାର ଓଷା ନାହିଁ ମାଣବସା ହୁଳହୁଳି ସଜରୁଣୀ ଶାଶୁ ବୋହୂ କଳି
ଟୁନ୍‌ଶାନ୍ ତୁମ ଗାଁ ଆମ ଗାଁ
ହଠାତ୍ ଏ ଶ୍ରୀହୀନ ଖବରେ ।

(ଛୁଟିର ଖବର)

ଏହି ଖେତ୍‌ର ଦକ୍ଷିଣାରେ ଧାନ କଟା ମହକ ଓ ନଗୁଣ୍ଡିଆ ଶୈଳି
ନଗୁଣ୍ଡିଆ ଗୁଳ ତଳେ ଧାର ଧର ଗିମ୍ପ୍ଳ ଓ କର୍ଙ୍କି କେତେ ଅସରପା ଗୋଡ଼
କେତେ ଅପା, ନୂଆବୋଉ, କେତେ ଖୁଡ଼ୀ ବଡ଼ମାଆ
ହନୁମାନ ମୁଣ୍ଡୀ ଗାଆଁ ଆଖଡ଼ା ଘରର ··
(ଦୃଷ୍ଟିର ଦିଗନ୍ତ)

'ମାଣ୍ଡୀଘଇ', 'ନଷ୍ଟନୀଡ଼ କୋଇଲି'ରେ ପଲ୍ଲୀର ଦୃଶ୍ୟମୋହ କବି ହୃଦୟକୁ ଦ୍ରବୀଭୂତ ଓ ତଲ୍ଲୀନ କରିଛି । ଦୃଶ୍ୟମୁଗ୍ଧତା ଅପେକ୍ଷା କବିର ସ୍ମୃତିଧର୍ମିତାର ପ୍ରଭାବ ପ୍ରକଟ ଗ୍ରନ୍ଥରେ ଅଧିକ ବୋଲି ମନେହୁଏ । 'ଝିଉଆ'ରେ ଘାସ କାକର, ଧାନ ମହକ ତାହାକର ଡାକ ଅଧ ଛିଡ଼ ଗାଁର ଆତ୍ମୀୟତାବୋଧ ଓ ସୌନ୍ଦର୍ଯ୍ୟ ସମ୍ମୋହନ କବିଙ୍କୁ ଅଧିକ ଜୀବନ ସମ୍ବେଦୀ କରିଛି । କବିଙ୍କ ସୌନ୍ଦର୍ଯ୍ୟ ସମ୍ମୋହନ ପ୍ରସଙ୍ଗ, ପରବର୍ତ୍ତୀ ପର୍ଯ୍ୟାୟରେ ଆଲୋଚିତ ହୋଇଛି । ଏଇ 'ଝିଉଆ' କବିତାରେ ପୃଥିବୀ ପ୍ରତି ଗୁରୁପ୍ରସାଦଙ୍କ ଆତ୍ମୀୟତାବୋଧ ଏତେ ନିବିଡ଼ ଯେ ତାଙ୍କର ବିଚ୍ଛିନ୍ନତାବୋଧକୁ ଏହା ସଂପୂର୍ଣ୍ଣ ଆଚ୍ଛନ୍ନ କରି ପକାଏ । ଏ ପ୍ରସଙ୍ଗର ପଂକ୍ତିଟିଏ—

ଏହି ଭଲପାଇବାର ଦେହ ଧରି ଏ ପୃଥିବୀ ହୁଏତ ବା ଏତେ ରୂପବତୀ
ହଳଦୀ ଓ ଅଳତାର ଦାଗ ଗୋଳି ଆକାଶରେ
ଫାଲ୍‌ଗୁନର ଦିନ ଯେବେ ଫେରେ
ପଦ୍ମସର କୁହୁଡ଼ିରେ ଘୋଡ଼ିହୋଇ ଆମ୍ବତୋଟା
ଟୁପ୍‌ଟାପ୍ ନଡ଼ିଆ କାମ୍ବୁଡ଼ୋଳି ବଣ × ×
(ସମୁଦାୟ 'ଝିଉଆ' କବିତା ପଠନୀୟ)

[ଙ] ଗୁରୁପ୍ରସାଦଙ୍କ କବିତାରେ ଆଧ୍ୟାତ୍ମିକ ଆକୂତି ଓ ବିଶ୍ୱବୋଧ ମିଶି କରି ରହିଛି । 'ସମୁଦ୍ର ସ୍ନାନ'ରେ 'କାଳପୁରୁଷ' ଓ 'ଅଙ୍କୁର ଉବାଚ' କବିତା ଦ୍ୱୟ ଦେହର ଜଳୟ ଓ ଯୁଗର କ୍ଲାନ୍ତି ଓ ଗ୍ଲାନିରୁ ମୁକ୍ତି-ବ୍ୟାକୁଳତାର ସ୍ୱର ବହନ କରିଛି । 'ଆଶ୍ଚର୍ଯ୍ୟ ଅଭିସାର'ର 'ଦର୍ଶନ ମହାନ୍ତି' 'ସଞ୍ଜୟ ଓ ଧୃତରାଷ୍ଟ୍ର ସମ୍ବାଦ' ଏହି ଧାରାର । ଏ ପ୍ରକାର କବିତା ଅନେକ ପ୍ରଶ୍ନ, ସଂଶୟ, ଦ୍ୱିଧା, ସମ୍ଭାବନା ଓ ଆକୁଳତା ସଂପନ୍ନ । ଭକ୍ତ ଦର୍ଶନ ବା ଦର୍ଶନ ମହାନ୍ତି ଯବନ ଆକ୍ରମଣରୁ ଜଗନ୍ନାଥ ବିଗ୍ରହକୁ ରକ୍ଷା କରିବା ପାଇଁ ତାର ସ୍ଥାନାନ୍ତର କରିଥିଲେ । ପରେ ଏହା ଶ୍ରୀକ୍ଷେତ୍ରରେ ପୁନଃ ସଂସ୍ଥାପିତ ହୋଇଥିଲା । 'ଅଙ୍କୁର ଉବାଚ'ର ଅଙ୍କୁର ପରେ ସେ ହୋଇଛନ୍ତି କବିଙ୍କ କାବ୍ୟସତ୍ତା । ଦର୍ଶନ ମହାନ୍ତି ସହ ଏ ଆତ୍ମୀକରଣ ଏବଂ ତା'ର ଭକ୍ତି ଓ ବ୍ୟାକୁଳତା ଜରିଆରେ ପରମ ପୁରୁଷଙ୍କ ସହ ନିଜକୁ ଯୋଡ଼ିବା—ଗୁରୁପ୍ରସାଦଙ୍କ କାବ୍ୟନାୟକକୁ ଯନ୍ତ୍ରଣାବୋଧରୁ ମୁକ୍ତି ଦେଇଛି । ପରମ-ପୁରୁଷଙ୍କ ଅନ୍ୱେଷା ଓ ସମ୍ଭାବନା ଏବଂ ବ୍ୟକ୍ତି ପରିଧି ଓ ଯୁଗ ଯନ୍ତ୍ରଣାରୁ ମୁକ୍ତି କାମନା ଏ କବିତାରେ ଖୁବ ସାନ୍ଦ୍ର । କବି ଉଚ୍ଚାରଣ କରନ୍ତି—

ମହାଶୟ,

ମୋର ଭଙ୍ଗା ମୃଦଙ୍ଗର ନଷ୍ଟ ଗର୍ଭ ନଷ୍ଟ ତାଳ ଲୟ
ଆପଣଙ୍କ ଅର୍ଦ୍ଧଦଗ୍ଧ ନଷ୍ଟ ଦାରୁ ନଷ୍ଟ ଦେହ ପର × ×

ଆଜର ଏ ସୂଚୀଭେଦ୍ୟ ଅନ୍ଧାରର ଉଚ୍ଛିଷ୍ଟ ଭିତରେ
ଆପଣ ଫେରିବେ ପୁଣି ଅନ୍ୟ କେଉଁ ଆକାରରେ
ମୋର ଭଙ୍ଗା ମୃଦଙ୍ଗର ଅନ୍ଧାର ଗର୍ଭରୁ ?
ଏ ଜନ୍ମର ଯାତ୍ରା ପ୍ରଭୁ ଭସ୍ମାବହ କେଉଁ ମୁକ୍ତି
ଭସ୍ମାବହ କେଉଁ ପାପ ମହା ନିର୍ବାଣକୁ ?

'ସଞ୍ଜୟ ଓ ଧୃତରାଷ୍ଟ୍ର ସମ୍ବାଦ'ରେ ସୃଷ୍ଟିର ହିଂସ୍ରତା ଓ ଅପରାଧବୋଧ ସମ୍ପର୍କରେ ପ୍ରଶ୍ନ ଜର୍ଜରିତ କବିସତ୍ତା ରହସ୍ୟବାଦୀ ହୋଇ ପଡ଼ିଛି । 'ଏ ଯୁଗର ଏ ସ୍ଥାନରେ ତୁମର ସବିତା ଏଠି ସମ୍ଭାବନା' [ଅଙ୍କୁର ଉଦ୍‌ବାଟ]ର ସ୍ୱର 'ମୁଁ ମୋଟେ ପାରେନା ବୁଝି ଭଗବାନ କୃଷ୍ଣ ବାସୁଦେବ/କୁରୁକ୍ଷେତ୍ର ପର ବହୁ ବିଭିନ୍ନ କ୍ଷେତ୍ରରେ/କେତେଥର ? କାହିଁକି ବା ?' ର ପ୍ରଶ୍ନମନସ୍କ ଦୃଷ୍ଟିଭଙ୍ଗୀରେ ରୂପାନ୍ତରିତ ହୋଇଛି । ଏ ପ୍ରକାର କବିତା ରଚନା ସ୍ୱଳ୍ପ ହେଲେ ମଧ୍ୟ କାବ୍ୟନାୟକର ମୁକ୍ତି ବା ଉତ୍ତୀର୍ଣ୍ଣତା ପାଇଁ ହିଁ ଏହି ଆଧ୍ୟାତ୍ମିକ ଆକୁତି ହୋଇଛି ହେତୁ ।

[ଚ] ପ୍ରକୃତି ବା ଦୃଶ୍ୟମୋହ ଗୁରୁପ୍ରସାଦଙ୍କ ପରି ରୋମାଣ୍ଟିକ କାବ୍ୟସ୍ୱର ପାଇଁ ସହଜାତ ହୋଇପାରେ; କିନ୍ତୁ ଯେଉଁ ଯେଉଁ ସୌନ୍ଦର୍ଯ୍ୟ ସମ୍ପୃକ୍ତ ଉପାଦାନ କବିଙ୍କ ସୌନ୍ଦର୍ଯ୍ୟ ସମ୍ମୋହନର ପରିମଣ୍ଡଳ ନିର୍ମାଣ କରିଛି ସେଗୁଡ଼ିକ ଏଇ ମାଟିର ବାସ୍ନା ବିଜଡ଼ିତ ଭାରତୀୟତାର ସ୍ୱାଦଗନ୍ଧ ଦ୍ୱାରା ଉଚ୍ଚକିତ ଓ ଉଚ୍ଚାଟିତ । ବିଭିନ୍ନ କବିତାରେ ପାଚିଲା ଧାନର ବାସ୍ନା, ଝିଙ୍କାରିର ଝିଁ ଝିଁ, ଡାହୁକ-ଡ଼ାହୁକୀର ଗୁଞ୍ଜନ, ଶଙ୍ଖଚିଲ୍‌ଡେଣା, ଡାହୁକର ଡାକ, ଚକ୍ ଚକ୍ ତାରା, କୁରୁବକ, କଦମ୍ବ, ମେଘ, ମୟୂର, ସୋରପକ୍ଷୀଆଁରା, ହେନା ଫୁଲ, ଗୋଲ୍‌ଡବାଣ ଫୁଲ, କ୍ଷୀରକୋଳି ଫୁଲ, କାଶ ଫୁଲ, ଚମ୍ପା ଫୁଲ, ଆମ୍ବବଉଳର କଷି ଆଉ କଢ଼ି, ଗହ୍ଲଳ ତୋଟା, ଖଜୁରିଗଛ, ଅଶ୍ୱତ୍ଥଗଛ, ଖଜୁରି ବଣ, ଘାସ, ଗୁଡ଼ୁକଙ୍କ, ଜୋରପାଣି, ବରଫଳ, ଶିଉଳି, ବେତକୋଳି, କଇଁନାଡ଼, ଝରଣା, ଖରା, ବଉଦ, 'ନରମ ଖରାର ମେଘ', 'ଧାନର ନରମ ଶିରା' ଆଦି ଦୃଶ୍ୟଧର୍ମୀ ଉପସ୍ଥାପନା ଓ ସଂଯୋଜନା କବିଙ୍କ ସୌନ୍ଦର୍ଯ୍ୟ-ସମ୍ମୋହନର ଏକ ଆତ୍ମୀୟ ପରିମଣ୍ଡଳ ତିଆରି କରେ । ଏହା ଖାଲି ସ୍ମୃତିଧର୍ମୀ ଉପସ୍ଥାପନ ନୁହେଁ; କବିସତ୍ତାର ଏକ ଆବେଗାନ୍ୱିତ ବିଜଡ଼ନ, ଏକ ମାଟିପ୍ରବଣତା । ଏହି ସୌନ୍ଦର୍ଯ୍ୟ-ସମ୍ମୋହନ ଓ ଦୃଶ୍ୟମୋହର ଦୁଇଟି ପଂକ୍ତି ଉଦ୍ଧାର କରାଯାଉଛି ।

ଏ ବର୍ଷାରେ ଆଶା ଅଛୁ, ଆଶୀର୍ବାଦ ଅଛୁ, ସ୍ୱାସ୍ଥ୍ୟ ନିର୍ବେଗ ବିଶ୍ରାମ
ନିଘୋଡ଼ ଅନ୍ଧାର ତଳେ ଅଛୁ ବୁଢ଼ୀ ଅସୁରୁଣୀ
ଭୂତ କଥା ବାଘ କଥା ଅଛୁ ବୁଢ଼ୀ ମାଆ
ଏ ବର୍ଷାର ଦେହ ତଳେ ଅଛୁ ଅଛୁ ଧାନକ୍ଷେତ ଅଛୁ ଅଛୁ ଆମ୍ବତୋଟା
ଦୂର ନଈ ଆର ପାର ଗାଆଁ । (କାଳନ୍ଦୁରୁଷ)

ପୃଥିବୀ ସୁନ୍ଦର ଏଠି । ଦେହ ତ ନିର୍ଯାସ ତାର
ମନ ଏଠି ନୀଳ ନୀଳ ନିର୍ଜନ ଆକାଶ
ମୁଁ ଭଲପାଇବି ଚେଣ୍ଟ୍ର କେନାଲର କୂଳେ କୂଳେ
ଘାସ ଆଉ ଧାନକ୍ଷେତ ମାଛରଙ୍କା ଶଙ୍ଖଚିଲ,
ପାଣି ପଙ୍କ କଇଁଫୁଲ
ଖଜୁରି ଡାଳର ଡାହି ଛୁଇଁ ଛୁଇଁ ଫେରୁଥିବା
ପବନର ଅନାସକ୍ତ ସ୍ନେହ ଓ ନିଶ୍ୱାସ । (ମାର୍ଶାଘାଇ)

[ଛ] 'ସମୁଦ୍ର ସ୍ନାନ'ର ସମୟବୋଧଟି ଥିଲା ମୁଖ୍ୟତଃ ପାଶ୍ଚାତ୍ୟ ଅନୁଧାବୀ—ଭାରତୀୟ ମାନସିକତାର ପ୍ରତିଫଳନ ଥିଲା ଅସ୍ପଷ୍ଟ । 'ଆଶ୍ଚର୍ଯ୍ୟ ଅଭିସାର'ରେ ତାହା ବିକଶିତ ହୋଇଛୁ । ଏଠାରେ ଭାରତୀୟ ପରିପ୍ରେକ୍ଷୀରେ କବିଙ୍କ ସମୟବୋଧ ବା ସମକାଳୀନ ସଚେତନତାର କଥା ଆଲୋଚ୍ୟ । କବିଙ୍କ 'ହରେକୃଷ୍ଣ ଦାସ (୧), (୨)'ରେ ପୃଥିବୀର ପାରମ୍ପରିକ ଅଥଚ ଚିରସ୍ଥିତ ଜୀବନ ପ୍ରବାହ ଭିତରେ ଅବକ୍ଷୟ, ଆଶଙ୍କା, ଭୟ, ପାପବୋଧ, ଦୁର୍ଦ୍ଦିନ, ନୈରାଶ୍ୟ, ସୌହାର୍ଦ୍ଦ୍ୟ-ସମ୍ପର୍କହୀନତାର କଥା ଏକ ଯନ୍ତ୍ରଣା ଜର୍ଜରିତ ଶ୍ଳେଷାତ୍ମକ ଅଭିବ୍ୟକ୍ତି ଦେଇ ଆତ୍ମପ୍ରକାଶ କରିଥିଲା । 'ହରେକୃଷ୍ଣ ଦାସ (୩)' ରେ ଭାରତର ସ୍ୱାଧୀନତା ପ୍ରାପ୍ତିର ଉଲ୍ଲାସ ଓ ଆତ୍ମତ୍ୟାଗ ପୁଣି ସ୍ୱାଧୀନତା ପରବର୍ତ୍ତୀ ସ୍ୱପ୍ନଭଙ୍ଗର କାରୁଣ୍ୟ ଅତି ମାର୍ମିକ ଭାବେ ପ୍ରତିଫଳିତ । ସ୍ୱାଧୀନତାଜନିତ ଉଲ୍ଲାସର ପ୍ରତୀତି ନିମ୍ନୋକ୍ତ ପଙ୍କ୍ତିରେ ସୂଚିତ :

ସମସ୍ତ ସହିତ ଅଭିସାର ମୁହୂର୍ତ୍ତରେ
କେତେ ପକ୍ଷୀ କେତେ ଫୁଲ କେତେ ବ୍ୟାଣ୍ଡବାଜା !

'ସମୁଦ୍ର ସ୍ନାନ'ର ବହୁ ସ୍ଥଳରେ 'ଗାନ୍ଧୀବାଦ', 'ଗାନ୍ଧୀଟୋପି'ର ପ୍ରସଙ୍ଗୋଚିତ ଉଲ୍ଲେଖ, ଯୋଜନା କମିଟି ଇତ୍ୟାଦି କଥା ସୂଚାଯାଇଥିଲେ ମଧ୍ୟ ଗୁରୁପ୍ରସାଦଙ୍କଠୁଁ ପ୍ରକୃତରେ ହରେକୃଷ୍ଣ ଦାସ (୩) ଭଳି କବିତା ଆଶା କରାଯାଉଥିଲା, ଯାହାକୁ ସେ ଲେଖିଲେ

ଅନ୍ୟୂନ ଅର୍ଦ୍ଧେକ ଦଶନ୍ଧି ପରେ । ସ୍ୱାଧୀନତା ଓ ସମ୍ଭ୍ରମ ତଥା ଭାରତୀୟ ପ୍ରତ୍ୟୟର ସେତୁ ସ୍ୱାଧୀନତାର ପରବର୍ତ୍ତୀ କାଳରେ କ୍ରମଶଃ ହୁଗୁଳି ଯାଇଛି । ଶ୍ଳୋଗାନ, ପ୍ରସେସନ୍, ଜୁଲୁସ୍, ରକ୍ତଭିଜା ସାର୍ଟ ଓ ରୁମାଲ, ପୋଡ଼ୁଥିବା ଗାଡ଼ିଚକ ରବରର ଧୂଆଁ, ଲାଠିଗୁଳି ଜନିତ ଆବହାୱା ଭିତରେ ଆସେମ୍ବ୍ଲିର ନିର୍ଜନ ସିଡ଼ି ପ୍ରକମ୍ପିତ । ସେଉଁମାନେ 'ଧୋତି ଖଦି କୁର୍ତ୍ତାରେ 'ଗାନ୍ଧୀଟୋପି ଝୁଲିବ୍ୟାଗ ବାଡ଼ିଧରି' ସଂଗ୍ରାମ ଓ ରକ୍ତପାତର ପୀଠ 'ଇରମ୍'ରୁ ବା 'ଇଞ୍ଚୁଡ଼ି'ରୁ ଫେରିଥିଲେ ସେମାନଙ୍କର ସେ ଯାତ୍ରା, ସେ ଶ୍ଳୋଗାନରେ ଥିଲା ଏକ ନିର୍ଭୀକ ନିଶ୍ଚିନ୍ତ୍ୟ । ସେଥିରେ ନଥିଲା କ୍ରୋଧ, ଘୃଣା ଓ ଉଲଗ୍ନ ଆକ୍ରୋଶର ପ୍ରତିଫଳନ । ହରେକୃଷ୍ଣ ଦାସର ସତ୍ତା ମଧ୍ୟରେ କାବ୍ୟନାୟକ ସ୍ୱାଧୀନତା ପରବର୍ତ୍ତୀ ସ୍ୱପ୍ନଭଙ୍ଗକୁ ସାମ୍ନା କରିଛି । ସମୟର ସେ ଅଭିସାରରେ ଆଶ୍ଚର୍ଯ୍ୟ କାବ୍ୟନାୟକ ଭିତରେ ଥିଲା ପ୍ରାପ୍ତି ଓ ପୁଲକର ଭାବ । ତା'ର ଆଶ୍ଚର୍ଯ୍ୟଭାବ ପର୍ଯ୍ୟବସିତ ହୋଇଛି ବିସ୍ମୟ ଓ ବିମୂଢ଼ତାରେ, ଅସ୍ୱସ୍ତି ଓ ଆଶଙ୍କାରେ । ତା' ଆଖିରେ ସନ୍ଦେହ ଓ ଅବିଶ୍ୱାସର ଗଭୀର ପ୍ରଶ୍ନବାଚୀ । ସ୍ୱାଧୀନତାର ସେ ଅଭିସାର ରାତି ସେଦିନ ଆସିଥିଲା କି ନାହିଁ ସେ ସଂପର୍କରେ କାବ୍ୟନାୟକ ସେମିତି ସନ୍ଦିଗ୍ଧ ।

ଆଶ୍ଚର୍ଯ୍ୟ ସେ ହଜିଥିବା ମୁହୂର୍ତ୍ତର ସମୟର ଅଭିସାର ରାତି
ପକ୍ଷୀ ଆଉ ଫୁଲ ସବୁ
ହସ ଗୀତ ବ୍ୟାଣ୍ଡବାଜା
କେବେ ଥିଲା ? କେଉଁଠି କେଉଁଠି ?

ସଂକଳନର ନାମକରଣ ଏହି ଆଶ୍ଚର୍ଯ୍ୟ ଅଭିସାର ମୁହୂର୍ତ୍ତର ସ୍ୱପ୍ନ, ସମ୍ଭାବନା ଏବଂ ତତ୍ ପରବର୍ତ୍ତୀ ସ୍ୱପ୍ନଭଙ୍ଗକୁ ଉପଜୀବ୍ୟ କରି । ସ୍ୱାଧୀନତା ପରବର୍ତ୍ତୀ ସ୍ୱପ୍ନଭଙ୍ଗର ସ୍ୱର ଏ କବିତାରେ ଏକାନ୍ତ ସୁତୀବ୍ର କରୁଣ । 'ହରେକୃଷ୍ଣ ଦାସ (୪)' ମାରଣାସ୍ତ୍ର ଅଧ୍ୟୁଷିତ 'ଶତାବ୍ଦୀର ନଷ୍ଟ ଦେହ ଶେଷ କଣିକ'ର ତିକ୍ତାନୁଭୂତିକୁ ପ୍ରକାଶ କରିଛି । ଏଠାରେ ହରେକୃଷ୍ଣ ଦାସର ଅନ୍ୱେଷା ଭିତରେ ଏକ ଭାରତୀୟ ଐତିହ୍ୟର ସ୍ମୃତିଚାରଣ ସହିତ ବର୍ତ୍ତମାନର ସଂଘାତ ଓ ଦ୍ୱିଧାକୁ ରୂପ ଦିଆଯାଇଛି । ସମୟର ଇସ୍ତାହାର ଆଜି ଯାନ୍ତ୍ରିକତା କବଳିତ । ଅତୀତର ଐତିହ୍ୟ ସହ ସାଂପ୍ରତିକତାର ଏକ ତୁଳନାତ୍ମକ ଚିତ୍ର ଏ କବିତାରେ ଦିଆଯାଇଛି । 'ଆଶ୍ଚର୍ଯ୍ୟ ଅଭିସାର'ର 'ଜନ୍ମଦିନ' 'ଗୋଟିଏ ମୃତ୍ୟୁର ପରେ ପରେ (୧), (୨)'ରେ ନାମୋଲ୍ଲେଖ କରି ନଥିଲେ ମଧ୍ୟ ମହାତ୍ମା ଗାନ୍ଧୀ ଓ ଇନ୍ଦିରାଙ୍କ ହତ୍ୟାଜନିତ ସଂତ୍ରାସ ଦ୍ୱାରା ଭାରତବର୍ଷର ପରିମଣ୍ଡଳ କବଳିତ ବୋଲି ସେ ଅତି କଳାତ୍ମକ ଭାବେ ସୂଚାଇଛନ୍ତି । ଏ ହତ୍ୟା ମାନବିକତାର ହତ୍ୟାର ଏକ ନଜିର । ଏଣୁ ସମୟର ଆଶ୍ଚର୍ଯ୍ୟ ଅଭିସାର ଆଜି ବିଡ଼ମ୍ବିତ, ହିଂସ୍ରତା କବଳିତ । କବିଙ୍କ ସ୍ମୃତିଚାରଣ ଭିତରେ ଏକ ଶୋଚନାଦଗ୍ଧ କାରୁଣ୍ୟ ପ୍ରକଟିତ । ଏହା ତଥାକଥିତ ଯୁଦ୍ଧଧ୍ୱାନ୍ତ ପାଶ୍ଚାତ୍ୟ ନୈରାଶ୍ୟବୋଧର

ଅନୁରଣନ ନୁହେଁ । ପୁନଶ୍ଚ ଏକ ବ୍ୟାପକ ଅର୍ଥରେ କବି ଯୁଦ୍ଧ ଓ ସଂହାରକୁ ଗ୍ରହଣ କରିଛନ୍ତି । ଯୁଦ୍ଧ ଓ ଯାନ୍ତ୍ରିକତା ଦ୍ୱାରା ଆଜି ମାନବିକତା ବିପର୍ଯ୍ୟସ୍ତ, ସୌନ୍ଦର୍ଯ୍ୟ ବିନଷ୍ଟ । ଆମର ସ୍ଥିତି ଏକ ମ୍ରିୟମାଣ ସ୍ଥିତି । 'ଲ୍ୟାଣ୍ଡସ୍କେପ୍ ୧' ର କୃଷ୍ଣଚୂଡ଼ାର ଲାଲିମା ସୌନ୍ଦର୍ଯ୍ୟବୋଧର ପ୍ରତୀକ ହୋଇଛି । ତା'ର ବିଲୁପ୍ତି-ବିବର୍ଣ୍ଣତା ଯାନ୍ତ୍ରିକତାର ଜୟଯାତ୍ରାକୁ ସୂଚାଇଛି । ଏ ପ୍ରସଙ୍ଗରେ ବ୍ୟକ୍ତିର ଯାତ୍ରା ବିପର୍ଯ୍ୟସ୍ତ ଅନିଶ୍ଚିତ ଦିଗନ୍ତକୁ ବୋଲି କବି ସୂଚାଇଛନ୍ତି—

ଚରିତ ସଂହାର ପରେ ଏ କାଳର ଯାତ୍ରା ତେବେ<br>
କହ କେଉଁଠାକୁ ?<br>
ଆସନ୍ନ ଦିଗନ୍ତ କେଉଁ, ମ୍ରିୟମାଣ ବିପର୍ଯ୍ୟସ୍ତ<br>
ଅନିଶ୍ଚିତ ଗ୍ରହକକ୍ଷର କେଉଁ ସୂର୍ଯ୍ୟାସ୍ତକୁ ?

ଏହିଭଳି ବିଭିନ୍ନ ପ୍ରସଙ୍ଗ, ପରିପ୍ରେକ୍ଷୀ ଓ ବିଶେଷତ୍ୱ ମଧ୍ୟ ଦେଇ ଗୁରୁପ୍ରସାଦଙ୍କ କବିତାର ଭାରତୀୟ ଦୃଷ୍ଟିକୁ ଚିହ୍ନଟ କରାଯାଇପାରେ ।

ଛଅ :

ବହୁଦିନୁ ନୀରବ ଗୁରୁପ୍ରସାଦ 'ଆଶ୍ଚର୍ଯ୍ୟ ଅଭିସାର'ରେ ତାଙ୍କ କାବ୍ୟାଭିସାରର ନିସ୍ୱାଣୀଳତାକୁ ପ୍ରକାଶ କରିଛନ୍ତି । ଏ ଅଭିସାର 'ଆଶ୍ଚର୍ଯ୍ୟ', 'ଅଦ୍ଭୁତ', 'ହତବାକ୍' କରିଦେବା ଭଳି ନୁହଁ । ତାଙ୍କ କବିତାର ବିଦେଶୀ ବାସ୍ନାକୁ ଦୂର କରିବା ପାଇଁ ବନ୍ଧୁ ଅଭିଯୁକ୍ତ ଗୁରୁପ୍ରସାଦଙ୍କ ସତର୍କ ସଚେତନତା ପ୍ରଣିଧାନଯୋଗ୍ୟ । 'ଆଶ୍ଚର୍ଯ୍ୟ ଅଭିସାର'ର ବହୁ କବିତା ଭାରତୀୟ ପରିପ୍ରେକ୍ଷୀର, ଭାରତବର୍ଷର । ତେବେ ସାମଗ୍ରିକ ଭାବରେ ଗୁରୁପ୍ରସାଦଙ୍କ ସମ୍ପର୍କରେ ପୁନଶ୍ଚ କୁହାଯାଇପାରେ ଯେ ସଚେତନ ଭାବେ ଗୁରୁପ୍ରସାଦ ପାଶ୍ଚାତ୍ୟ ସାହିତ୍ୟରୁ ଆହରଣ ଓ ତା'ର ସମୀକରଣ କଲାବେଳେ ଭାରତୀୟ ଜୀବନ ଦୃଷ୍ଟି ବା ନିଜ ମାଟିର ବାସ୍ନା ବା ସ୍ୱାଦଗନ୍ଧକୁ ପାସୋରି ଯାଇ ନାହାନ୍ତି । ନିଜ ମାଟିର ପାଣି ପବନର ବିଶ୍ୱସ୍ତ ଦାୟାଦ ଭାବେ ନିଜକୁ ଗୁରୁପ୍ରସାଦ ଉପସ୍ଥାପିତ କରିଛନ୍ତି । ତାଙ୍କ ଚେତନାର କିଛି ଭାବରେ ବିସ୍ତାର ଓ ପ୍ରସାରଣ ଘଟିଛି । ଆବେଗ-ତାରଲ୍ୟ ବୌଦ୍ଧିକ ଗାମ୍ଭୀର୍ଯ୍ୟରେ ପରିଣତ ହୋଇଛି । ଚେତନାର ଶୃଙ୍ଗଉନ୍ମୁଖୀ ଆରୋହଣ ପଥର କେଉଁ ଏକ ଘାଟିରେ ସେ ଅଟକି ରହିଛନ୍ତି । ପତ୍ର ପତ୍ରିକାରେ କ୍ୱଚିତ୍ ଆତ୍ମପ୍ରକାଶ କରୁଥିବା ଗୁରୁପ୍ରସାଦଙ୍କ ପାଇଁ ଓଡ଼ିଆ ପାଠକ ନୂଆ କିଛି ସମ୍ଭାବନାର ପ୍ରତ୍ୟାଶା କରିବ କି ?

●

# ମୃତ୍ୟୁବୋଧ : ଅରଣା ମଇଁଷି

ଏକ :

ଆଲୋଚ୍ୟ କବିତା 'ଅରଣା ମଇଁଷି' (ଝଙ୍କାର : ବିଷୁବ ସଂଖ୍ୟା, ୧୯୭୮)ର କବି ଦୀପକ ମିଶ୍ର । ପ୍ରୟୋଗବାଦୀ ଓଡ଼ିଆ କବିତା ପରମ୍ପରାରେ ଷଷ୍ଠ ଦଶକର ମଧ୍ୟଭାଗରୁ ମୃତ୍ୟୁପ୍ରତି ସ୍ରଷ୍ଟାମାନଙ୍କର କଳାତ୍ମକ ଦୃଷ୍ଟିଭଙ୍ଗୀର ପ୍ରବଣତା ଅଧିକ ଲକ୍ଷ୍ୟ କରାଯିବ । ରମାକାନ୍ତ, ସୀତାକାନ୍ତ, କମଳାକାନ୍ତ, ଦୀପକ ଓ ସୌଭାଗ୍ୟ ପ୍ରମୁଖ ପ୍ରତିନିଧି ଶ୍ରେଣୀର କବିମାନେ ଏ ଚେତନାର ପରିପ୍ରକାଶ ଦିଗରେ ସ୍ୱକୀୟ ସିଦ୍ଧି ହାସଲ କରିଛନ୍ତି । ପ୍ରେମ ଓ ମୃତ୍ୟୁ ମୁଖ୍ୟତଃ ସାଂପ୍ରତିକ କବିତାର ଭୂମି ଯେଉଁଠି ଜୀବନଚର୍ଯ୍ୟା ହିଁ କବିତା । ମୃତ୍ୟୁକୁ ନେଇ କାବ୍ୟ ମନନରେ ରମାକାନ୍ତ ରଥ ଏ ଦୁଇ ଦଶକର ସର୍ବଶ୍ରେଷ୍ଠ ସଚେତନ ସ୍ରଷ୍ଟାମାନସ । ସୀତାକାନ୍ତ ମହାପାତ୍ରଙ୍କ କବିତାରେ ମୃତ୍ୟୁପ୍ରତି ଦୃଷ୍ଟିଭଙ୍ଗୀ ବିଶେଷତଃ ଦର୍ଶନାତ୍ମକ । ସେ ଅଧିକ ଜୀବନବାଦୀ ହୋଇଥିବାରୁ ମୃତ୍ୟୁ ତାଙ୍କ ପାଖରେ ବିଷାଦବୋଧର ଏଷଣା ସୃଷ୍ଟି କରେ । ଅନ୍ୟପକ୍ଷରେ କମଳାକାନ୍ତ ଲେଙ୍କା ଓ ସୌଭାଗ୍ୟ ମିଶ୍ରଙ୍କ କବିତାରେ ମୃତ୍ୟୁପ୍ରତି ଶ୍ଳେଷ (irony) ଯଥେଷ୍ଟ ମାତ୍ରାରେ ପ୍ରକଟିତ ହୋଇଛି । ମୃତ୍ୟୁର ଚିତ୍ରାଙ୍କନରେ ଦେହ, ପ୍ରେମ ଓ ଈଶ୍ୱରଙ୍କୁ ନେଇ ଏକ ଉଦାର ଋଷିସୁଲଭ ଦୃଷ୍ଟିଭଙ୍ଗୀ ରମାକାନ୍ତ ରଥଙ୍କ ଭିନ୍ନ ଦୀପକ ମିଶ୍ରଙ୍କ କବିତାରେ ବିପୁଳ ଭାବରେ ଲକ୍ଷ୍ୟ କରାଯିବ । ଶ୍ରୀ ରଥଙ୍କର 'ଅନନ୍ତ ଶୟନ'ଠାରୁ ଆରମ୍ଭ କରି 'ସପ୍ତମ ଋତୁ' (୧୯୭୭) କବିତା ଗ୍ରନ୍ଥ ପର୍ଯ୍ୟନ୍ତ ମୃତ୍ୟୁହିଁ କବିତାର ଅନ୍ୟତମ ମୁଖ୍ୟ ଉପାଦାନ ହୋଇଛି ।

ଦୀପକ ମିଶ୍ରଙ୍କ କାବ୍ୟଗ୍ରନ୍ଥ ଅନୁଷ୍ଟୁପ୍ (୧୯୬୮), ନିଷିଦ୍ଧ ହ୍ରଦ (୧୯୭୦) ଏବଂ ବିଶେଷ କରି ନିର୍ଜନ ନକ୍ଷତ୍ର (୧୯୭୧) ନେଇ ପରବର୍ତ୍ତୀ ତିନୋଟି କବିତାଗ୍ରନ୍ଥ (ମଧ୍ୟାହ୍ନର ଗ୍ରୀଷ୍ମ : ୧୯୭୪, ବୃତ୍ତ : ୧୯୭୫, ସପ୍ତମ ପୃଥିବୀ : ୧୯୭୭)ରେ ଯେଉଁ କେତୋଟି ନିର୍ଦ୍ଦିଷ୍ଟ ଦୃଷ୍ଟିକୋଣ ବା ଚୈତନିକ ଅଭିବୃଦ୍ଧି ଲକ୍ଷ୍ୟ କରାଯିବ, ଆଲୋଚ୍ୟ 'ଅରଣା ମଇଁଷି' କବିତାଟି ତାହାଠୁଁ ଭିନ୍ନ । ଏକ ପାରମ୍ପରିକ ଥିମ୍‌ରେ ଅଧିକତର ଶୈଳିକ ସମୃଦ୍ଧି ନେଇ ପ୍ରୟୋଗବାଦିତା ଆରୋପ କରାଯିବା ଏ କବିତାରେ ବଡ଼କଥା । ଦୀପକଙ୍କର ମୃତ୍ୟୁପ୍ରତି ଶ୍ଳେଷ, ସମ୍ମୋହନ ଓ ସନ୍ନ୍ୟାସୀସୁଲଭ ଦୃଷ୍ଟିଭଙ୍ଗୀ ଅନ୍ୟାନ୍ୟ ବହୁ କବିତାରେ ଉପଲବ୍ଧ ।

ମିଥ୍ ଓ ପୁରାତନ କଥାକୁ ଉତ୍କୃଷ୍ଟ ଆକାରରେ ଉପସ୍ଥାପନ କରି କାବ୍ୟକୃତି ରଚନା କରିବା ପ୍ରତୀକବାଦୀ ଓଡ଼ିଆ କବିତାରେ ଏକ ବିଶିଷ୍ଟ ଶୈଳୀ । ଆଲୋଚ୍ୟ 'ଅରଣା ମଇଁଷି' କବିତାଟି କବି ମଧୁସୂଦନ ରାଓଙ୍କ 'ଅରଣା ମଇଁଷି ଉଦ୍ଧତ ଅନାଇ/ମଇଁଷିର ପାଖ ନଯାଅ ଦନାଇ' ପଂକ୍ତିକୁ ଆଧାର କରି ତା'ର ଭାବବୃତ୍ତ ନିର୍ମାଣ କରିଛି । ବେଦ, ଉପନିଷଦ୍‌ଠୁଁ ଆରମ୍ଭ କରି ସାଂପ୍ରତିକ କାଳର ସାହିତ୍ୟ ଓ ଧର୍ମକେନ୍ଦ୍ରିତ ପରମ୍ପରାରେ 'ମଇଁଷି' ମୃତ୍ୟୁର ବାହନ ରୂପେ ପ୍ରତୀକିତ । ସେହି ପାରମ୍ପରିକ ଚିନ୍ତାଟିରେ ଅଧିକ କଳାତ୍ମକତା ଆରୋପ ଏବଂ ନୂତନ ବକ୍ତବ୍ୟ ଦେଖିବାର ପ୍ରବଣତାରୁ 'ଅରଣା ମଇଁଷି'ର ସୃଷ୍ଟି ।

କବି ମଧୁରାଓଙ୍କ ଦୃଷ୍ଟିରେ ମୃତ୍ୟୁପ୍ରତି ଏକ ସଚେତନ ଦୃଷ୍ଟିଭଙ୍ଗୀ ପ୍ରକାଶ ପାଇନାହିଁ । ଏହା କେବଳ ଏକ ଋଷିସୁଲଭ ବାକ୍ୟ ବା ପଦ୍ୟର ଆବୃତ୍ତି ଯାହା ଉପଦେଶର ପର୍ଯ୍ୟାୟଭୁକ୍ତ । ଏଥିରେ ମୃତ୍ୟୁର ହିଂସ୍ରତା କିମ୍ବା ମୃତ୍ୟୁ ଉଦ୍ଧତ ଜୀବନର ସଂପର୍କ ସମ୍ବନ୍ଧରେ କୌଣସି ସୂଚନା ଦେବାର ପ୍ରୟାସ ନାହିଁ । ଆଲୋଚ୍ୟ କବିତାଟିରେ ଏ ଉପଦେଶର କୌଣସି ଆବଶ୍ୟକତା ବା ଅର୍ଥ ନାହିଁ । କାରଣ ମଇଁଷିପଲ ବା ମୃତ୍ୟୁ ଗହ୍ୱରରେ ଦନାଇର ଜୀବନ ବଢିବାକୁ ବାଧ । ଉପଦେଶ ଯେତେ ମଧୁର ହେଲେ ବି ଏକ ଭିନ୍ନ ସତ୍ୟ ବା ଅବବୋଧର ଜଗତ ଆଲୋଚ୍ୟ କବିତାରେ ଉଦ୍‌ଘାଟିତ ହୋଇଛି । କବି ଶ୍ରୀ ମିଶ୍ର ମଧୁରାଓଙ୍କର ଏ ପଂକ୍ତିକୁ ଅର୍ଥବନ୍ଧ କରି ଏକ ବିରୋଧାଭାସର ସ୍ୱର ବାଢ଼ିଛନ୍ତି ।

ଦୁଇ :

କବିତାଟିର ପ୍ରଥମ ସଂଚରଣ ଖଣ୍ଡରେ କବି ଏକ ହଟଗୋଳର ଦୃଶ୍ୟର ରୂପକଳ୍ପ ରଚନା କରିଛନ୍ତି । ମଇଁଷି ଓ ଦନାଇ ନାମକ ବାଳକଟିଏ ଏକ ପଡ଼ିଆ ମଝିରେ ଦୁଇଟି ଜାଗାରେ ଠିଆ ହୋଇଥିବେ । ମୃତ୍ୟୁ ଓ ଜୀବନ । 'ମଇଁଷିର ଦୃଷ୍ଟି ସାକ୍ଷାତ ଯମଦୂତପରି ବା ଯମଭଳି'—ପଂକ୍ତିଟି ମୃତ୍ୟୁକୁ ସୂଚାଉଛି । ତା'ର ମାଟିକୁ ଶୁଙ୍ଘିବା, କିଛି ଖୋଜି-ହେବା, ଖରକୁ ବା ଖୁରିରେ ଲାଞ୍ଜ ପିଟିବା ଓ ଦଉଡ଼ିଙ୍କା ଘାସର କର୍କଶ ପିଠିରେ ମୁହଁବୁଲାଇବା ଯେତିକି ଭୟପ୍ରବୋଧନା ସୃଷ୍ଟି କରୁନାହିଁ; 'ପୁନଶ୍ଚ ସେ ଫିଙ୍ଗୁଥିବ/ନିସ୍ତେଜ ଦୃଷ୍ଟିର ଛାୟା ଯାତାୟାତ କରୁଥିବା/ସଂସାର ଉପରେ ।'—ଏ ପଂକ୍ତିରେ ମୃତ୍ୟୁ ପ୍ରତୀକର ସୂଚନା ତୀବ୍ରତର ହେଉଛି । ହାଫ୍‌ପ୍ୟାଣ୍ଟ ପିନ୍ଧି ଓ ଅଣ୍ଟାରେ ରଙ୍ଗବେରଙ୍ଗ ଗାମୁଛା ଗୁଡ଼େଇ ପେଟ ଓ ଛାତି ମଝିରେ ଦୁଇହାତ ଛନ୍ଦି ଠିଆହୋଇଥିବା ଦନାଇର ପିଠି ଏକ ବାଳିଶେଯ ପରି ଦିଶିବା—ଏ ଚିତ୍ର ଏବଂ ସୂର୍ଯ୍ୟର ଶିଥିଳ ହାତ ଲହଡ଼ି ଖାଇଁ ଝସି ଚାଲିଯିବା—ଏ ଚିତ୍ର ସମୟର ଗତାନୁଗତିକ ପ୍ରବାହ ଓ କ୍ଷୟିଷ୍ଣୁ ଶକ୍ତିକୁ ସୂଚାଉଛି । ଏଠାରେ ପରିବେଶ ସୃଷ୍ଟି ପାଇଁ ଚିତ୍ରକଳ୍ପ ସାହାଯ୍ୟ କରୁଛି । ପୁନଶ୍ଚ ସେ

ମଇଁଷିର ଲଞ୍ଜ ଛୁଇଁବାକୁ ହାତ ବଢ଼ାଇବା ଅନ୍ୟ ଏକ ଦୃଶ୍ୟ । ମୃତ୍ୟୁ ପଛେ ପଛେ ହିଁ ଗୃହିଥାଏ ଦନାଇ । ସଂସାରରେ ଆତଯାତ ପ୍ରତ୍ୟେକ ଚରିତ୍ର ଗୋଟେ ଗୋଟେ ଦନାଇ । ଏମାନେ ପ୍ରତି ମୂହୂର୍ତ୍ତରେ କେବଳ ମଇଁଷି ବା ମୃତ୍ୟୁର ପଶ୍ଚାଦ୍ଧାବନ କରୁଥାନ୍ତି । ପାଦେ ପାଦେ ଆଗେଇ ଯାଉଥାନ୍ତି ମଇଁଷିର ଲଞ୍ଜ ଛୁଇଁବାକୁ । ଏହାର ନାମ ବାଟ ଗୃହିବା । ଏହାର ନାମ ଜୀବନ । ଜୀବନ ଯାପନ । ଜୀବନର ଯାତ୍ରା । ଏକ ପ୍ରଶ୍ନମନସ୍କ ଚିତ୍ରକଳ୍ପର ଉପସ୍ଥାପନରେ କବି ଏହି କଥାକୁ ଉଜ୍ଜ୍ୱଳ କରିଛନ୍ତି ।

> ସେ ଯେଉଁ ପିଲା ହେଁପି ଅଭିନବ ଖାଇଦ୍ଧର କୌତୁକ
> ନେଇ ହେଲା ଦୃଶ୍ୟମାନ, ସେ କ'ଣ ଆମର କାହାର
> ପିଲାବେଳ ? ନାମ ଯା'ର ହୁଏତ ଦନାଇ ଓ ତା'ର
> ଅଙ୍କଟ ମନର ଗ୍ଳାନି ଓଲଟି ପଡ଼ଇ ମଇଁଷିର ମୃତ୍ୟୁନଳା
> ତୋଳାର କାଚରେ ଓ ପାଦେପାଦେ ସେ ଯାଏ ଆଗେଇ
> ଛୁଇଁବାକୁ ଅନ୍ଧାର ପରି କଳା ଲଞ୍ଜର ଚଅଁର ।

କବିତାର ଶେଷାଂଶରୁ ବର୍ଣ୍ଣାଳିଗ ଧାଡ଼ି ମଧ୍ୟରେ 'ଅରଣା ମଇଁଷି' ସଂପର୍କୀୟ ସ୍ୱାଭାବିକ ଉପଦେଶମୂଳକ ପଂକ୍ତିକୁ ଏକ ବିରୋଧାଭାସ ମଧ୍ୟରେ ଗୁଡ଼ି ଦିଆଯାଇଛି । ମୃତ୍ୟୁର ଅପରିହାର୍ଯ୍ୟତା ବା ଅନିବାର୍ଯ୍ୟତା ଭିତରେ ଦନାଇକୁ ମଇଁଷି ପାଖକୁ ନ ଯିବାକୁ କହିବା ଅର୍ଥହୀନ ମନେ ହୋଇଛି ।

ପୁନଶ୍ଚ ମଇଁଷିର ଚିତ୍ରକଳ୍ପ ଭିତରେ ଦନାଇର ଦେଭିଜାଲ ଯୌବନ, ବୁଢ଼ା ମଇଁଷି କପାଳ ଘର ଝାଙ୍ଗରା ମୁଣ୍ଡ, ଦୁଇ କ୍ଳାନ୍ତି ସେଜପରି ଆଖିର ଦୃଶ୍ୟ ପ୍ରତୀତ ହୋଇଛି । ମଇଁଷି ପଲର ସେଁ ସେଁ ନିଶ୍ୱାସରେ 'ଦଉର୍କ ପାଦଥାପି ବାଦଶାହୀ ମୃତ୍ୟୁ' ଆସୁନାହିଁ; ସବଦା ତା'ର 'ପୁରୁଣା ତାମ୍ବୁରା ତାରରେ' ସେଇ ଗୋଟିଏ କଥାହିଁ ବାଜୁଛି ଯା'ର ମାନେ ଜୀବନର ଅନ୍ୟନାମ ମୃତ୍ୟୁ । ମଇଁଷିର ଯିବାଆସିବା କମ୍ବା ଗୃହିଁବା ନୂଆ କଥା ନୁହେଁ; କାରଣ ମୃତ୍ୟୁ ବା ମଇଁଷି ଗହଣରେ ଜୀବନଟାଇ ଆତଯାତ । ଏମିତିକି ପ୍ରତ୍ୟେକଙ୍କ ଅଙ୍ଗରେ ଚରିଯାଇଛି ମଇଁଷିର ଗନ୍ଧ । ମଇଁଷି ପାଖକୁ ଦନେଇ ନଯିବାର ପ୍ରଶ୍ନ ଉଠୁଛି କେଉଁଠୁ ? ମଇଁଷି ଗୋଠ ହିଁ ତା'ର ଜୀବନ, ତା'ର ସଂସାର ।

> ତୋ' ଅଙ୍ଗ ମସ୍ତକ ଖାଲି ଜଣାଯାଏ ଅରଣା ମଇଁଷିର
> ଉତ୍କଟ ବନ୍ୟଗନ୍ଧ ଭଳି ଓ ତୋ'ର ସ୍ୱରକଣ୍ଠେ
> ମଇଁଷିର ପଲ ଘେରିଛନ୍ତି ଯା'ର ସେଁ ସେଁ ନିଶ୍ୱାସରେ
> ଦଉର୍କ ପାଦ ଥାପି ବାଦଶାହୀ ମୃତ୍ୟୁ ଆସେ
> ବୈରାଗୀର ପୋଷାକ ପିନ୍ଧି । × ×

ଏଠାରେ ମୃତ୍ୟୁ ଆସିବା କେବେ ବଡ଼ କଥା ନୁହେଁ । କାରଣ ମୃତ୍ୟୁ ଭିତରେ ହିଁ ଜୀବନର ବେଉସା ଚାଲିଛି । ମୃତ୍ୟୁ ଓ ଜୀବନ ଯେମିତି ହାତ ଧରାଧରି ହୋଇ ବାଟ ଚାଲିଛନ୍ତି । ଜୀବନଟା ମୃତ୍ୟୁର ଗୀତରେ ଏକ ଉତ୍ସବ ମାତ୍ର । 'ବାଦଶାହା ମୃତ୍ୟୁ'ର ବକ୍ତବ୍ୟରେ ଦନାଇ ବାଲ୍ୟକାଳରୁ ଅବଧି ତା' ଜୀବନର ସାୟାହ୍ନ ଯାଏ ହିଁ ସବୁବେଳେ ମଇଁଷିର ଗୀତ ଦେଖି ଆସିଛି । ବାଲ୍ୟକାଳରେ ହୁଏତ ପଢ଼ାଆରେ, ଯୌବନରେ ବାସର ଘର ଫୁଲଶେଯରେ, ବାର୍ଦ୍ଧକ୍ୟରେ, କତଘରେ—ସେଇ ମୃତ୍ୟୁର ଭିନ୍ନ ଭିନ୍ନ ରୂପ, ଗୀତ, ଭିନ୍ନ ଭିନ୍ନ ପରପ୍ରକାଶ । ତାହା ଯଥାକ୍ରମେ କୋମଳ ମୃତ୍ୟୁର, ଉତ୍ତପ୍ତ ମୃତ୍ୟୁର ଓ ନୀରବ ମୃତ୍ୟୁର ଗୀତ । ମୃତ୍ୟୁ ତା'ର ପରିଚିତ ସ୍ୱରରେ ପ୍ରତିଦିନ ଦନାଇକୁ, ସଂସାରକୁ ଏଇ କଥାହିଁ ପୁନରାବୃତ୍ତି କରୁଥାଏ । ଅତଏବ ମଇଁଷିକୁ ଗୀତ କାହାରି ଜନ୍ମଜାତକ ପରିକଳ୍ପନା ଅବାନ୍ତର ।

ବାଲ୍ୟକାଳେ ପଢ଼ାଆରେ ପଢ଼ିଥିଲି— / ତୋ'ର ଯେଉଁ ଗୀତ
ସେ ବି ମୋର ଗୀତ—କୋମଳ ମୃତ୍ୟୁର
ବାସର ଘର ଫୁଲଶେଯ ଧରିଥିଲି— / ତୋ'ର ଯେଉଁ ଗୀତ
ସେ ବି ମୋର ଗୀତ—ଉତ୍ତପ୍ତ ମୃତ୍ୟୁର
ଏବେ କତଘ ଶୁଣୁଛି ଯେଉଁ ବୃଦ୍ଧର ଗୀତ
ସେ ବି ମୋର ଗୀତ—ନୀରବ ମୃତ୍ୟୁର···

ଜୀବନର ଅନ୍ୟନାମ ଏଣୁ ମୃତ୍ୟୁ, ଏଣୁତ ଓ ଶ୍ମଶାନରେ ସବୁଠି ମଇଁଷିର ଗୀତ । ଶେଷ ପଂକ୍ତିରେ କବି ମଇଁଷିର ସର୍ବକାଳୀନ ଉପସ୍ଥିତିର ଚିତ୍ରକୁ ଅତି ପ୍ରାଞ୍ଜଳ କରିଛନ୍ତି । ଏ ସଂସାର ସର୍ବଦା ମୃତ୍ୟୁରୂପକ ମଇଁଷିର ଦୃଷ୍ଟି ସୀମାର ବଳୟରେ ଆବଦ୍ଧ ହୋଇଥାଏ । ସ୍ୱାଭାବିକ ଭାବେ ଅବଶ୍ୟ ଦନାଇ ବା ଅନ୍ୟ କାହାର ଜୀବନାବସାନ ଘଟେ ।

ସେ ମଇଁଷି ଆଖିରେ ନିଦ କେବେ ଆସେ ନାହିଁ
ସର୍ବଦା ସେ ରହିଛି ଅନାଇ,
ଯଦିଓ ବେଳ ଆସିଗଲେ, ଶୋଇପଡ଼େ ନିର୍ବୋଧ ଦନାଇ ।

ଦନାଇ ଯେ ପାର୍ଥିବ ବ୍ୟକ୍ତିଟିଏ ସେ ନିର୍ବୋଧ ହେବାକୁ ହିଁ ବାଧ୍ୟ । ସଂସାରର ପ୍ରତ୍ୟେକ ମଣିଷ ଅନ୍ଧାର ପରି କଳା ମଇଁଷି ଲଙ୍ଗୁର ଚଅଁର ଛୁଇଁବାକୁ ପାଦେ ପାଦେ ଆଗେଇବାକୁ ବାଧ୍ୟ । ଅତଏବ ମଇଁଷିର ଦୃଷ୍ଟି ସୀମା ଭିତରେ ଜୀବନ ବା ସଂସାର ଚାଲେ । ମୃତ୍ୟୁର ହିଂସ୍ରତା, ଆକସ୍ମିକତା, ସ୍ୱାଭାବିକତା ବା ମୃତ୍ୟୁ ନିଜେ କିଛି ବଡ଼ ଘଟଣା ନୁହେଁ; ଅତଏବ ମଇଁଷି ବା ମୃତ୍ୟୁର ଗହଣରେ ବଞ୍ଚିରହିବା ହେଉଛି ଦନେଇ ବା ପ୍ରତ୍ୟେକ

ମଣିଷର ଭାଗ୍ୟ । ଦେଇନେଇ ବା କାହାର ଯିବାଆସିବା ହୁଏ ନାହିଁ ମଇଁଷି ପଲରେ ବା ମୃତ୍ୟୁ ଗହଣରେ ବହତ ସ୍ଥାପନ ଅନିବାର୍ଯ୍ୟ । ଜୀବନ ଓ ମୃତ୍ୟୁକୁ ଏତେ ପାଖାପାଖି ଦେଖିବାର ଚଯଟିକୁ 'ଅରଣା ମଇଁଷି'ରେ କବି ସ୍ପଷ୍ଟ ଭାବେ ସଂଯୋଜିତ କରିପାରିଛନ୍ତି ।

**ଛନ :**

ମଇଁଷି ଶବ୍ଦକଲର ଚମତ୍କାର ପ୍ରୟୋଗରେ ଆଲୋଚ୍ୟ କବିତାଟି ଯଥାସମ୍ଭବ ପ୍ରୟୋଗବାଦୀ ହୋଇପାରିଛି ଓ ଭାବଗତ ସଂବୃଦ୍ଧି ହାସଲ କରିଛି । ତେବେ ବାକ୍-ବହୁଳତା ଓ କେତେକ ସ୍ଥାନରେ ହାଲିକା ପ୍ରୟୋଗକୁ ବାଦ ଦେଇଥିଲେ ସଂରଚନା ଓ ବକ୍ତବ୍ୟଟି ଅଧିକ ଘନ ହୋଇପାରିଥାନ୍ତା । ମୃତ୍ୟୁର ଏକ ଶୀଳରୂପ ଆଙ୍କିଥିଲେ ବି ଏ କବିତାଟିରେ ମୃତ୍ୟୁପ୍ରତି ଏକ ଜୀବନଭିତ୍ତିକ ଦୃଷ୍ଟିଭଙ୍ଗୀ ପ୍ରକାଶ ପାଇଛି । କବିତାଟିରେ ଜୀବନ ଓ ମୃତ୍ୟୁର ଦାର୍ଶନିକ ଉପଲବ୍ଧି ପ୍ରକଟିତ ହୋଇଛି । ବର୍ଣ୍ଣବୋଧ ପାଠର ଏକ ଅତି ପରିଚିତ ପ୍ରଚଳିତ ପଂକ୍ତିକୁ କଂକ୍ରିଟ୍ ରୂପଦେଇ 'ଅରଣା ମଇଁଷି' କବିତାଟି ସାର୍ଥକତା ହାସଲ କରିଛି ବୋଲି କହିବାକୁ ହେବ ।



# ସୀତାକାନ୍ତଙ୍କ କବିତା : ଏକ ମୁଗ୍ଧଦୃଷ୍ଟି

**ଏକ :**

ଅଦ୍ୟାବଧି ୧୧ ଗୋଟି ମୌଳିକ କବିତା ସଂକଳନର ପ୍ରଣେତା କବି ସୀତାକାନ୍ତ ମହାପାତ୍ର ଜଣେ ଐତିହ୍ୟ ଓ ପରମ୍ପରା ସଚେତନ ଦାର୍ଶନିକ କବି ଭାବେ ସୁପ୍ରତିଷ୍ଠିତ । କବିତା ବ୍ୟତୀତ କବିତା ସମ୍ପର୍କୀୟ ବିଭିନ୍ନ ବ୍ୟକ୍ତିନିଷ୍ଠ ଲଳିତ ଗଦ୍ୟ ରଚନା, ଉଭୟ ଓଡ଼ିଆ ଓ ଇଂରାଜୀ ଭାଷାରେ ଲିଖିତ ବହୁ ପ୍ରବନ୍ଧ ତାଙ୍କର ସାରସ୍ୱତ ଅବଗାହନ, ମନୀଷା ଓ କବିତ୍ୱର ଉଜ୍ଜ୍ୱଳ ପରିଚୟ ବହନ କରେ । ଇଂରାଜୀ ସମେତ ବିଶ୍ୱର ବହୁ ଭାଷାରେ ତାଙ୍କ କବିତାର ଅନୁବାଦ ଓଡ଼ିଆ କବିତାକୁ ଭାରତବର୍ଷ ଓ ବିଦେଶରେ ସୁପରିଚିତ କରାଇଛି ।

[ସୀତାକାନ୍ତଙ୍କ କବିତା ମୁଖ୍ୟତଃ ଏକ ଅନ୍ୱେଷଣ, ଚେତନାର ଏକ ମହତ୍ତମ ଆରୋହଣ । ପରମ୍ପରା ଓ ଆଧୁନିକତା, ସ୍ୱକୀୟ ମାଟିର ସରହଦ ସହ ବିଶ୍ୱ ପରିଧିର ସମନ୍ୱୟ, ମାଟିଠୁଁ ଅନ୍ତରୀକ୍ଷ ଯାଏଁ ଚେତନାର ବିସ୍ତାର ଓ ବିଚରଣ, ଜୀବନ ଓ ମୃତ୍ୟୁର ଦାର୍ଶନିକ ଉପଲବ୍ଧି ଆଦି ବହୁ ବିଶେଷତ୍ୱର ଅଭିଜ୍ଞାନ ହିଁ ତାଙ୍କ କବିତା] ବେଦ ଉପନିଷଦ, ପୁରାଣର ବହୁ ପ୍ରସଙ୍ଗ ଓ ଚରିତ୍ର, ଲୋକକଥା, କିମ୍ବଦନ୍ତୀଠୁଁ ଆରମ୍ଭ କରି ଜଡ଼-ଜୀବନ୍ତ ପ୍ରକୃତିର ରୂପାୟନ, ବାପା, ଜେଜେପା, ଆଈବୁଢ଼ୀ ଆଦି ରକ୍ତ ସମ୍ପର୍କର ସ୍ମୃତି ଓ ଆତ୍ମୀୟତାବୋଧର ପରିମଣ୍ଡଳ, ସାରଳା ଦାସ, ଜଗନ୍ନାଥ ଦାସ ତଥା ଅଚ୍ୟୁତାନନ୍ଦ, ଭୀମ ଭୋଇଙ୍କ ଆଧ୍ୟାତ୍ମିକ ଓ ରହସ୍ୟବାଦୀ ଚେତନା ମୁଖ୍ୟତଃ ସୀତାକାନ୍ତଙ୍କ କବିତାର ଉପାଦାନ ଓ ପୃଷ୍ଠଭୂମି । 'ଦୀପ୍ତି ଓ ଦ୍ୟୁତି' (୧୯୬୩) ରୁ 'ବର୍ଷା ସକାଳ' (୧୯୯୩) କାବ୍ୟ ସଙ୍କଳନ ଜୀବନ ଓ ଜୀବନୋତ୍ତର ଉପଲବ୍ଧିର ଗଭୀରତମ ଅଭିବ୍ୟକ୍ତି ।

ସୀତାକାନ୍ତଙ୍କ କବିତା ଏକ ନିର୍ଦ୍ଦିଷ୍ଟ କ୍ରମଉତ୍ତରଣର ସ୍ୱର ସ୍ୱାକ୍ଷର । ଆରୋହଣ ପର୍ବର ପାହାଚ ପାହାଚ ଅତିକ୍ରମ କରି ଏକାନ୍ତ ସୂକ୍ଷ୍ମ ଅର୍ଥ ଅନ୍ୱେଷାର ଲକ୍ଷ୍ୟଭୂମିରେ ସେ ବର୍ତ୍ତମାନ । ତାଙ୍କ କାବ୍ୟ କୋଣାର୍କର ଯଥାର୍ଥ ମୁଖଶାଳା 'ଦୀପ୍ତି ଓ ଦ୍ୟୁତି' । ଏ ସଙ୍କଳନରେ ପ୍ରକଟିତ ଭାବ, ବିଷୟ-ବିନ୍ୟାସ, ଚଯ ଚେତନା, ପ୍ରତୀକ, ମାନବିକ ସହୃଦୟତା, ଯୁଗ-ଯନ୍ତ୍ରଣା, ମୁକ୍ତି ପିପାସା, ଦାର୍ଶନିକ ଜିଜ୍ଞାସା, ମିଥ୍ ପ୍ରବଣତା ପ୍ରଭୃତି

ଦିଗମାନ ପରିଣତ ପର୍ଯ୍ୟାୟରେ ସ୍ପଷ୍ଟ ଓ ବିସ୍ତାରିତ ରୂପ ଲାଭ କରିଅଛନ୍ତି । 'ଅଶ୍ରୁ ଓ ସ୍ୱାଦ' କବିତାଟିରେ କବିତାର ଅଭିମୁଖ୍ୟ ସଂପର୍କରେ ସେ ଯେଉଁ ସଂଜ୍ଞା ପ୍ରଦାନ କରିଥିଲେ ତାକୁ ଅତିକ୍ରମ କରି ଏକ ଅପାର୍ଥିବତା, ଅସୀମ ଜିଜ୍ଞାସା ଆଡ଼କୁ ତାଙ୍କ କବିତା ପ୍ରଧାବିତ । ଦୃଶ୍ୟ ମୋହରୁ ଅନ୍ୟ ଦୃଶ୍ୟ ଓ ଦୃଶ୍ୟାନ୍ତର ଆଡ଼କୁ, ସାମାଜିକ ସମସ୍ୟାସଙ୍କଟରୁ ବୃହତ୍ତର ମାନବିକ ଭାବଧାରା ଆଡ଼କୁ ଏ ଗତି । ପ୍ରାଥମିକ ପର୍ଯ୍ୟାୟର 'ବିମ୍ବ ଦର୍ପଣରେ ସୂର୍ଯ୍ୟାସ୍ତ' ମୃତ୍ୟୁ ଓ କାଳବୋଧ ସମ୍ପର୍କୀୟ ଏକ ଗମ୍ଭୀର ଦାର୍ଶନିକ ରୂପାୟନ । 'ଆଶ୍ୱିନ' କବିତାରେ ଧୂସର ଜୀବନ ପରିଧିରେ 'ସତ୍ୟ ଶିବ ସୁନ୍ଦରର ବିରାଟ ପୁରୁଷ'ଙ୍କ ପ୍ରତ୍ୟାଶୀ କବିଙ୍କର ଜୀବନ ଓ ଯୁଗ ଯନ୍ତ୍ରଣାରୁ ମୁକ୍ତିବ୍ୟାକୁଳତାର ପରିପ୍ରକାଶ । ଯେଉଁ ମାନବିକ ସହୃଦୟତା ଓ ସୌନ୍ଦର୍ଯ୍ୟବୋଧ ସୀତାକାନ୍ତଙ୍କ କବିତାରେ ପ୍ରକାଶମାନ 'ଟ୍ରାଜେଡ଼ି' ତା'ର ଆଦ୍ୟ ଉଚ୍ଚାରଣ । କବି କହନ୍ତି—'ସିଏ ଗୋଟେ ପ୍ରଜାପତି, ଅଥବା ମୋ ଆପଣା ହୃଦୟ ।' ଗୋପବନ୍ଧୁଙ୍କୁ ଶ୍ରଦ୍ଧାର୍ଘ୍ୟ ବାଢ଼ିବାର ଆକୂତି ଭିତରେ କବି ତାଙ୍କ ଦୁବଘାସ, ଘାସଫୁଲ, ଆଷାଢ଼ର ପଙ୍କିଳ ବର୍ଷାର ଚିତ୍ରଚେତନା ଭିତରେ ପ୍ରତ୍ୟକ୍ଷ କରନ୍ତି । ଏଇ ଚିତ୍ରଚେତନା ସୀତାକାନ୍ତଙ୍କ କାବ୍ୟ ପରିଧିରେ ଏକ ବିଶେଷ ଦୃଶ୍ୟମାନ ବିଷୟ । 'ନଈ ପଠା'କୁ କ୍ଷୟମୁଖୀ ବିଭଙ୍ଗ ଶତାବ୍ଦୀ ବୋଲି ଗ୍ରହଣ କରି ତା' ଭିତରେ ସବୁଜ-ସମ୍ଭାବନାର ପ୍ରତ୍ୟୟ ଲୋଡ଼ିବା କିମ୍ବା 'ସହରର ଇତିକଥା'ରେ କୃଷ୍ଣ ଚେତନା ଓ 'କୁବୁଜା-ବିଭୋରତା' ମଧ୍ୟରେ ଆଧ୍ୟାତ୍ମିକ ଉପଲବ୍ଧି ବା ମୁକ୍ତିବ୍ୟାକୁଳତାକୁ ରୂପ ଦେବାର ପ୍ରୟାସ ପରିଲକ୍ଷିତ । 'ବୁଢ଼ୀ ମା' କବିତାରେ କାହାଣୀ, ରହସ୍ୟ ଓ ଆତ୍ମୀୟତାର ଅସରନ୍ତି ଉତ୍ସ ବୁଢ଼ୀମା' ହେଉଛନ୍ତି ଏ ପୁରୁଣା ପୃଥିବୀ । ସୀତାକାନ୍ତଙ୍କ ପରମ୍ପରା ସଂପ୍ରୀତ ପାରିବାରିକ ପୃଷ୍ଠଭୂମିଠୁଁ କିମ୍ବଦନ୍ତୀ ଓ ଇତିହାସ ସୃଷ୍ଟି ଯାଏ ପ୍ରଲମ୍ବିତ—ତା'ର ଆଦ୍ୟ ଉଚ୍ଚାରଣ 'ବୁଢ଼ୀମା' । ମିଥ୍‌ର ଚରିତ୍ର ଓ ନିର୍ଯ୍ୟାସ ସହ ଆଧୁନିକ ଜୀବନକୁ ଯୋଡ଼ି ଏକ ମହତ୍ତମ ଓ ସମସ୍ତୋତ୍ତୀର୍ଣ୍ଣ ଉପଲବ୍ଧି ପ୍ରଦାନ କରିବାର ଲକ୍ଷ୍ୟ ଆଦ୍ୟ ଭାଗର 'ଦୁର୍ଯ୍ୟୋଧନ' ଓ 'ଜାରା ଶବରର ସଙ୍ଗୀତ' କବିତାରେ ମୂର୍ତ୍ତିମନ୍ତ ।

'ଅଷ୍ଟପଦୀ' (୧୯୬୭) 'ଦୀପ୍ତି ଓ ଦ୍ୟୁତି'ର ଏକ ବିସ୍ତାରିତ ଉତ୍ତରଣଶୀଳ କାବ୍ୟରୂପ । 'ଅଷ୍ଟପଦୀ'ର ପରିକଳ୍ପନା ସଂରଚନା ଅନନ୍ୟ ଓ ଅପୂର୍ବ । ଦେବକୀର ଅଷ୍ଟମ ଗର୍ଭରେ କୃଷ୍ଣଙ୍କ ଜନ୍ମ କଂସଚେତନା ଅଧ୍ୟୁଷିତ ସମସ୍ତ ପାଇଁ ହିଁ ଥିଲା କଲ୍ୟାଣ ଚେତନାର ଓଁକାର ଧ୍ୱନି । କବିଙ୍କ ଦୃଷ୍ଟିରେ ଏ ଶତାବ୍ଦୀ କଂସଚେତନା ଅଧ୍ୟୁଷିତ ଏକ ଦୁଃସମୟ ବାଲି, ନିଆଁ, ଶୋଷ ଜର୍ଜରିତ ବର୍ଷାପିପାସୀ ମଳା ଭୂଇଁ । 'କୋଡ଼ିଏଟି ଶତାବ୍ଦୀର ଗର୍ଭପାତ ପରେ', 'ଅଷ୍ଟମର ସମ୍ଭାବନା', 'ଅଷ୍ଟମ ଗର୍ଭର ସ୍ୱପ୍ନ', 'ଅଷ୍ଟପଦୀ'ର ନାମକରଣ ଓ ସଂରଚନାକୁ ସାର୍ଥକ କରିଛି । କବିଙ୍କ ବ୍ୟକ୍ତି ପରିଧି ଓ ସ୍ଥାନିକ ଭୂଗୋଳ ସଂପ୍ରୀତ ଏକ ବିଶ୍ୱ ପରିଧିକୁ ପ୍ରସାରିତ ହୋଇଛି । ଏଲିଅଟ୍‌ଙ୍କ ପୋଡ଼ାଭୂଇଁର ଚେତନା ଓ ସଂସ୍କୃତି ଓ

ସୌନ୍ଦର୍ଯ୍ୟର ହେତୁ ଭାଙ୍ଗିଯିବାର ଅବସାଦବୋଧ 'ଅଷ୍ଟପଦୀ'ର ପରିକଳ୍ପନା ପାଇଁ ହୁଏତ ଅନୁପ୍ରେରଣା ଯୋଗାଇ ଥିବ । ତେବେ ଆନ୍ତର୍ଜାତିକ କାବ୍ୟାଦର୍ଶ ଓ ଭୂମି ସହ ଓଡ଼ିଆ କବିତାର ପରିଚିତି ସ୍ଥାପନକୁ ଏହା ତ୍ୱରାନ୍ୱିତ କରିଛି । ସୀତାକାନ୍ତଙ୍କ ଆର୍କିଟାଇପ୍ ଓ ମିଥ୍‌ର ପରିସର ବ୍ୟାପ୍ତ ହୋଇଛି । ପୌରାଣିକ ଚରିତ୍ର ଓ ଭାବ ନିର୍ଯ୍ୟାସ ସହ କାବ୍ୟ ପୁରୁଷର ଅସ୍ମିତା ସହଭାଗିତା, ପୁରାଣଠୁଁ ମୁକ୍ତଧ୍ୱାନ୍ତ ଆଧୁନିକ ବିଭଙ୍ଗ ପରିବେଶର ସମନ୍ୱୟ ଖ୍ରୀଷ୍ଟଚେତନା-ବୁଦ୍ଧଚେତନା-କୃଷ୍ଣଚେତନାର ଏକ ସାଂସ୍କୃତିକ ସହାବସ୍ଥାନ 'ଅଷ୍ଟପଦୀ'କୁ ଏକ ସମକାଳ ସଚେତନ ବଳିଷ୍ଠ ପ୍ରସାରିତ ରୂପ ଦେଇଛି । 'ଅଷ୍ଟପଦୀ'ରେ ନର୍କ ଓ ଜ୍ୱଳନର ପରିବେଶ ଯେତେବେଶୀ ଭାରଗ୍ରସ୍ତ ନୁହେଁ; ଅଧିକନ୍ତୁ ବିଶ୍ୱ ପରିଧିର । କାବ୍ୟନାୟକର 'ମୁଁ', 'ଆମେ' ଏତେ ବେଶି ଭାବେ ସମଗ୍ର ମାନବ ଦ୍ୟୋତନାର ପ୍ରତିନିଧିତ୍ୱ କରେ ଯେ ବ୍ୟକ୍ତିକେନ୍ଦ୍ରିକତାର ବାଡ଼ବତା ଭାଙ୍ଗି ଯାଇ ବିଶ୍ୱ ମଣିଷର ଆତ୍ମିକ ଯନ୍ତ୍ରଣା ଓ ମୁକ୍ତି ପିପାସା ସେଠି ଝଲସି ଉଠେ । 'ମୃତ୍ୟୁ ନାଚ'ରେ 'ଫାଟିଯାଇଛି ହୃଦୟର ପାଣି ଝିଲ' ଉକ୍ତିଟିରେ ହୃଦୟ ହେଉଛି ସାଂପ୍ରତିକ ପୃଥିବୀ । 'ମୁଁ ଯୁଦ୍ଧକ୍ଷେତ୍ରି ଦେଖେ ମୋର ଆପଣାର ଭାଇ ସବୁ ଯନ୍ତ୍ରଣାରେ ବ୍ୟଥିତ ଅସ୍ଥିର/ଡ଼ୁବିଯାଇ ସେ ନିଆଁରେ' କିମ୍ବା 'ମୁଁ ଆଙ୍କି ଗ୍ଲାନିଛି ଖାଲି ଆକାଶର ପୋଡ଼ା ଗାଲେ ମୃତ ସ୍ୱପ୍ନ ଆଗ୍ନେୟ ସ୍ପନ୍ଦନ' ସମଗ୍ର ମଣିଷ ଜାତିର ଯନ୍ତ୍ରଣାର ସ୍ୱର ବହନ କରେ । 'ସବୁଜ-ଦ୍ୟୋତନା' ନଥିବା ପୃଥିବୀରେ ସବୁ ମଣିଷ ଯେମିତି ଅଭିଶପ୍ତ ଯଦୁବଂଶ, ରକ୍ତନଦୀ କୂଳର ଦୁର୍ଯ୍ୟୋଧନ । 'ଅଷ୍ଟପଦୀ' ରେ ସ୍ଥାନ କାଳକୁ ମିଶି ଯାଇ ଅତୀତ, ବର୍ତ୍ତମାନ ଓ ଭବିଷ୍ୟତ ଗୋଟିଏ ଖିଅରେ ବାନ୍ଧି ହୋଇଛନ୍ତି । 'ସ୍ମରଣୀୟର ଉପକଥା'ରେ ଏଣ୍ଟ୍ରି ନୂଆଖାଲି, ହାଗ୍ରୋସୀମା ସହିତ ପିଣ୍ଡାରକ, ଦ୍ୱାରକା, ପ୍ରଭାସ, ଶାମ୍ବର ନାଗ୍ନ ବେଶ, ଏରକାର ବଣ ହୁଏ ଏକାକାର । 'ମାଟି ଓ ମଣିଷ'ରେ କଂସଚେତନାରୁ ମୁକ୍ତି ପାଇଁ ବସୁମତୀ ବ୍ୟାକୁଳତା ଓ ବସୁଧୈବ-ଆଚ୍ଛନ୍ନତା ଏକ ଉତ୍ତୀର୍ଣ୍ଣ କୃଷ୍ଣଚେତନାର ପରିଚାୟକ । 'ନିଃଶଙ୍କର ମଧ୍ୟବର୍ଗ' 'ମରୁପଥର ସ୍ୱରଲିପି'ରେ କବି ମାତାମହ-ପିତାମହ-ବଡ଼ବଡ଼ୁଆଙ୍କ ତ୍ୟାଗ ଓ ସ୍ମୃତି ବିଜଡ଼ିତ ମାଟି ଭିତରେ ଧ୍ୱଂସମୁଖୀ ଦ୍ୱାରକାକୁ ଦେଖନ୍ତି ପୁଣି ବାଲି-ମରୁଭୂମି-ଓଟ ପରିକା ମରୁ ଭୂ-ଚେତନାର ବିଭଙ୍ଗ ପରିବେଶରେ 'ସମୁଦ୍ରର ନୀଳ ଆଖି'କୁ ଲୋଡ଼ି ବସନ୍ତି । ଦୁର୍ଯ୍ୟୋଧନର ଦ୍ୱନ୍ଦ୍ୱ ଓ ଦହନ ଭିତରେ କବି ଦେଖନ୍ତି ସାଂପ୍ରତିକ ମଣିଷର ସ୍ଥିତି ଓ ଅସହାୟତା । କାବ୍ୟପୁରୁଷ ତାକୁ 'ସ୍ମୃତିହୀନ ସାଦା ନୀରବତା'ରେ ପରିଣତ କରିବା ପାଇଁ ମହାବାହୁଙ୍କୁ ଆର୍ତ୍ତି ବାଢ଼େ – ଅନାଦି ଶ୍ୟାମଘନଙ୍କୁ ମୁକ୍ତି ମାଗେ । ନିଜ ପାଇଁ, ସମସ୍ତ ପାଇଁ, ପୃଥିବୀ ପାଇଁ ଏକ କୁବୁଜାର ରୂପଚେତନା ଭିତରେ କୃଷ୍ଣ-ବଂଶୀରତାର ଆର୍ଦ୍ର ମେଘମୟ ସ୍ପର୍ଶ ମାଗେ । 'ଅଷ୍ଟପଦୀ' ଅସ୍ତିତ୍ୱର ଯନ୍ତ୍ରଣା ଓ ଉତ୍ତୀର୍ଣ୍ଣତା ପ୍ରୟାସର ଏକ ଉଜ୍ଜ୍ୱଳ ଉଦ୍‌ଭାସନ ।

'ଅଷ୍ଟପଦୀ'ର ବ୍ୟାପକ କାନ୍‌ଭାସକୁ ଆଉ ଏକ ବୃହତ୍ତମ ପରିଧିକୁ ଟାଣିନେବା ପାଇଁ କବିଙ୍କୁ 'ସମୁଦ୍ର'ର ଅପେକ୍ଷା କରିବାକୁ ପଡ଼େ । 'ଅଷ୍ଟପଦୀ'ର 'ମୋନୋଲିଥ' କବିତା ସମୁଦ୍ର-ମନସ୍କତା ଓ ଚେତନାର ତଲ୍ଲୀନତା ପାଇଁ ଏକ ଦ୍ୱାର ଏବଂ 'ଶବରର ଆକାଶ' (୧୯୭୧) ଗ୍ରନ୍ଥଟି 'ଅଷ୍ଟପଦୀ' ଓ ସମୁଦ୍ର (୧୯୭୭) ମଝିରେ ଏକ ସେତୁ ଭାବେ ଠିଆ ହୁଏ । 'ଶବରର ଆକାଶ' ସୀତାକାନ୍ତଙ୍କ ମାଟିର ମୋହ ସହିତ ଆକାଶୀ ଅଭିସାର ଓ ସମୁଦ୍ରମନସ୍କତାର ସ୍ୱର ସିଂଫୋନୀ । କବି ଏକ ବ୍ୟକ୍ତିକ ଉପଲବ୍‌ଧିର ଜଗତକୁ ଫେରି ଆସିଛନ୍ତି । ନିଜର ସଂଜ୍ଞା ଓ ସ୍ଥିତି ସମ୍ପର୍କରେ ପ୍ରଶ୍ନାକୁଳ କବିମାନସ ଉତ୍ତୀର୍ଣ୍ଣତା ପ୍ରତ୍ୟାଶୀ ହୋଇ ଉଠିଛି । ଦୃଶ୍ୟ ସମ୍ମୋହନ ଓ ପୌରାଣିକ ଅନୁଷଙ୍ଗ ଦେଇ ଏଇ ଅନ୍ୱେଷା ଓ ଆକୁଳତାର ସ୍ୱର ନିର୍ଯ୍ୟାସ । ବଗିଚ୍ଚ, ଏରୋପ୍ଲେନ, ଏକେଲା ହଂସ (ହଂସ), କୋଠରୀ ଖୋଲପାରେ ରହିଥିବା ଗେଣ୍ଡା (କୋଠରୀ) ଆଦି ବହୁ ଦୃଶ୍ୟ ଓ ବସ୍ତୁ ଅନୁଷଙ୍ଗ ଦେଇ ଏହା ରୂପାୟିତ । ଏହାକୁ ଚହଲା ମାଟି ଓ ଅଚହଲା ଆକାଶର ମୋହ ବୋଲି କବି ଆଖ୍ୟାୟିତ କରିଛନ୍ତି (ଏବେବି ତୃଷ୍ଣା) । ଆକାଶ ଓ ସମୁଦ୍ରର ଶୂନ୍ୟତା, ସର୍ବୋପରି ନୀଳିମ ବିସ୍ତାର ସହ ନିଜ ସତ୍ତାକୁ ଏକୀଭୂତ କରିବା ପ୍ରୟାସ ସହିତ ଐଶ୍ୱରୀୟ ଭାବଚେତନା, ସମୟବୋଧ, ଜୀବନ ଓ ଜଗତ ଜିଜ୍ଞାସା ଆଦି ଭାବ 'ଶବରର ଆକାଶ'ରେ ବିଧୃତ ।

'ସମୁଦ୍ର' ସୀତାକାନ୍ତଙ୍କ କାବ୍ୟ ପରିଧିରେ ବିପୁଳ ଉତ୍ତରଣ ବହନ କରିଥିବା କାନ୍ତିକାରୀ ଅଧ୍ୟାୟଟିଏ । ଏହା ଚେତନାର ପରମ ଓ ଚରମ ଉପଲବ୍‌ଧିର ଭାଷ୍ୟ । ଜୀବନ ଭିତରେ ମୃତ୍ୟୁ—ମୃତ୍ୟୁ ଭିତରେ ଜୀବନର ଉପଲବ୍‌ଧି ଓ ସ୍ୱାଦାନୁଭବ, ସୀମା ମଧ୍ୟରେ ଅସୀମ—ଅସୀମ ମଧ୍ୟରେ ସସୀମ ଜିଜ୍ଞାସା, ସମୁଦ୍ର ମଧ୍ୟରେ ସତ୍ତାର ବିନ୍ଦୁ ଓ ବୁଦ୍‌ବୁଦ୍‌ମୟତା, ରକ୍ତ, ସ୍ନାୟୁରେ ବିପୁଳ ସମୁଦ୍ର-ଶିହରଣ, ମୁହୂର୍ତ୍ତ ମଧ୍ୟରେ କାଳର ଅନୁଭବ—ମହାକାଳ ମଧ୍ୟରେ ମୁହୂର୍ତ୍ତମୟତା ଆଦି ଆପାତଃ ବିରୋଧୀ ଜଟିଳ ଅନୁଭବ 'ସମୁଦ୍ର' କାବ୍ୟ ଗ୍ରନ୍ଥରେ ଖୁବ୍ ସାନ୍ଦ୍ର ଓ ଉଚ୍ଚକିତ । 'ସମୁଦ୍ର' କବିଙ୍କ ବହୁଚର୍ଚ୍ଚିତ କାବ୍ୟ ଗ୍ରନ୍ଥ । ଜୀବାତ୍ମାର ମଚ୍ଛଭୂ ଚେତନା ଓ ଜୀବନ ଯନ୍ତ୍ରଣାରୁ ଊର୍ଦ୍ଧ୍ୱଗାମୀ ପରମ ସତ୍ତାମୟ ସମୁଦ୍ରର ନୀଳ ଓ ସବୁଜ ଦ୍ୟୋତନାର ସ୍ପର୍ଶ ଅଭିଳାଷ ଏଠାରେ ଏକାନ୍ତ କାମ୍ୟ ହୋଇ ଉଠିଛି । ଏ ସ୍ପର୍ଶ କ'ଣ ମୁକ୍ତି ନା ମୃତ୍ୟୁ ? ଏହା ଜୀବନ-ସ୍ପନ୍ଦନ—ଏକ ଇନ୍ଦ୍ରିୟୋତ୍ତର ଉପଲବ୍‌ଧି । ପାର୍ଥିବତା ସହିତ ଅପାର୍ଥିବତାର ସମନ୍ୱୟ, ମାୟାବର୍ତ୍ତ ଓ ଜୈବିକ ଚେତନା ପୀଡ଼ିତ ସତ୍ତାର ନୂତନ ରୂପାନ୍ତର, କ୍ଷୁଦ୍ରତର ସତ୍ତାର ବିସ୍ତାର ଓ ବିଗଳନରେ କାବ୍ୟପୁରୁଷର ସମୁଦ୍ର ବିଳାସ ଓଡ଼ିଆ କବିତାକୁ ଏକ ନୂଆ ଭୂମି ଓ ଉପଲବ୍‌ଧି ଯୋଗାଇଛି ।

ସମୁଦ୍ର ଏଠାରେ ଜଡ଼ ଓ ଜୀବନ୍ତ, ସ୍ୱୟଂ ଚରିତ୍ର ଓ ବୃହତ୍ତର ପ୍ରତୀକ, ଏକ ଭୂମି ଓ ଚେତନା, ଆଧାର ଓ ମାର୍ଗ—ବହୁ ଦୃଶ୍ୟ ଓ ପ୍ରତୀକର ସମଷ୍ଟି ରୂପ । 'ସମୁଦ୍ର'ର ସଂରଚନା ଜଟିଳ । 'ପରିଚୟ', 'ପ୍ରତିବେଶୀ', 'ପରିଣାମ' ଆଦି ଛଅଟି ପର୍ଯ୍ୟାୟରେ

'ସମୁଦ୍ର'ର ବକାଣ ରୂପାୟିତ ହୋଇଥିଲେ ହେଁ ଏକ ବୃହତ୍ତର ଚେତନା ସହ କାବ୍ୟ ପୁରୁଷର ଏକୀଭୂତ ହେବା ଇଚ୍ଛା ଏତେ ପ୍ରବଳ ଓ ଉତ୍ତରଳ ଯେ 'ପଶଚାସ୍ତ' ପର୍ଯ୍ୟାୟରେ 'ପରଣାମ'ର ଅନୁଭବ ମଧ୍ୟ ଆସିଯାଏ । କାବ୍ୟପୁରୁଷର ସତ୍ତା ଏଠାରେ ସାମୁଦ୍ରିକ । କ୍ରୀତଦାସ, ଓଟ, ବାଲି କଙ୍କଡ଼ା, ପୋକ, ଦୁବଘାସ, ମରୁଭୂମି, ଶୁଖିଲା ମଞ୍ଜି, ନଈ ପଥର, ସମୁଦ୍ର ଉପକୂଳର କରଦ ରାଜ୍ୟର ପ୍ରଜା, ଶିଉଳି ଘାଟରେ ଭର୍ତ୍ତି ମନ୍ଦିରର ଭଙ୍ଗା ଚଟାଣ ଆଦି ରୂପକ ଓ ପ୍ରତୀକକୁ ଆଶ୍ରା କରି ପ୍ରକାଶିତ । ସମୁଦ୍ରର ମହମ୍ମ ସତ୍ତ୍ୱଟି କାଉଗର, କଳାକାହ୍ନୁ, ପୂର୍ଣ୍ଣିମୀ ଜହ୍ନ, ଅନାମିକା, ଗାଉଁଲି ତନ୍ତ୍ରୀ, ଲକ୍ଷ୍ମୀପାଦ, ନୀଳଦୀପ, ନୀଳ ବଉଦ, ବର୍ଷା ମଙ୍ଗଳ, ମୟୂର କଣ୍ଠର ନୀଳ ଆଦି ବହୁ ରହସ୍ୟବ୍ୟଞ୍ଜକ ନୀଳ ଓ ସାତ୍ୱିକା ଦୃଶ୍ୟମାନ ରୂପ ଚେତନା ଦେଇ ପ୍ରକଟିତ । ଆକାଶ, ପୃଥିବୀ ଓ ସମୁଦ୍ରର ଆତ୍ମିକ ରୂପ ନୀଳ ଓ ସବୁଜ ନୁହେଁ କି ? ଭାରତୀୟ ପରମ୍ପରାରେ ମୃତ୍ୟୁ, ଈଶ୍ୱର, ପରମାତ୍ମା ବା ପରମ ପୁରୁଷଙ୍କ ରଙ୍ଗ ନୀଳ ବୋଲି ଗୃହୀତ । ପୁରାଣ, ଲୋକକଥାର ପ୍ରସଙ୍ଗ ଓ ଭାବ ଜଗତ୍ୟର ଯଥାଯଥ ସଂଯୋଜନ ସୀତାକାନ୍ତଙ୍କ ଐତହ୍ୟ ସଂପ୍ରୀତର ବାହକ ହୋଇଛି । 'ସମୁଦ୍ର' ପର୍ଯ୍ୟାୟରେ କବିଙ୍କ ସମୟ ଓ ମୃତ୍ୟୁବୋଧ 'ଅଷ୍ଟପଦୀ' ପରି ସମକାଳୀନତାର ପରଚୟ ନୁହେଁ—ଏହା ଚିରସ୍ତ୍ୱତ ଅନୁଭବ ଓ ସମୟୋତ୍ତୀର୍ଣ୍ଣତାର ସ୍ୱର ବହନ କରୁଛି ।

'ଚନ୍ଦନଦୀ' (୧୯୭୯)ରେ ସମୁଦ୍ରମନସ୍କତାର ସ୍ୱର ଅନୁରଣିତ । 'ଚନ୍ଦନଦୀ' ବ୍ୟକ୍ତ ଆତ୍ମାର ଦହଗଞ୍ଜ, ମୁକ୍ତ ଓ ଅସୀମ ବ୍ୟାକୁଳତା ନେଇ ବଳସିତ । ସାଂପ୍ରତକ ସମସ୍ୟା, ସଂସାରର ଦୁଃଖ ଅର୍ତ୍ତି, ଜୀବନ ଯାତ୍ରା ଅନ୍ତରାଳରେ ଅରୂପ ଓ ପରମର ଡାକ ପ୍ରତି ଉନ୍ମୁଖ ରହିବା ହିଁ ଏହାର ପ୍ରମୁଖ ପ୍ରତପାଦ୍ୟ । ଚନ୍ଦ୍ରପ୍ରତମାପ୍ରାପ୍ତ ଦଶୁଥିବା ଏଇ ଦେହ ଚନ୍ଦନଦୀ—ଚନ୍ଦନଦୀ ଜୀବନର ପ୍ରବାହ ଓ ସମୟର ଗତଶୀଳତା ମଧ୍ୟ । ଚନ୍ଦନଦୀ କବିଙ୍କର ସ୍ୱ ତବକଜଡ଼ିତ କାବ୍ୟ ଉପାଦାନର ଅନୁପମ ଉତ୍ସ ନଦୀ ଚନ୍ଦ୍ରୋପ୍ନଳା । ଦେହ-ପିଞ୍ଜରାରେ ବସିଥିବା ଚଢ଼େଇଟି (ବୁଢ଼ା ଶିକାରୀ) ନୀଳ ଶୂନ୍ୟତାରେ ଆହୁଲି ପକାଇ ଭାସୁଥିବା ଚଢ଼େଇ (ଚଢ଼େଇ)ଟିକୁ ଝୁରି ବସେ, ଲୋଡ଼ି ବସେ । ଏହା ଉପନିଷଦର ଦ୍ୱାସୁପର୍ଣ୍ଣା ସଂଯୋଜନ ପରକା । ପରମ ସତ୍ତା ରୂପକ ଚଢ଼େଇଟିର ଡାକ ରକ୍ତ ସୁଅରେ, ଚେତନାର ନେଳିଆ ଗୁହା, ଅବଚେତନର ରାଣୀହଂସପୁରକୁ ଅସୀମ ଓ ଅରୂପର ଅନୁଭବ ଦେଇଯାଏ । ଚନ୍ଦ୍ରପ୍ରତମାପ୍ରାପ୍ତ ରକ୍ତ ମାଂସ ହାଡ଼ର ଏଇ ଦେହ କବିଙ୍କ ଦୃଷ୍ଟିରେ ଦୁର୍ବାର ମରୁଭୂମି, ଥୁଣ୍ଟାଗଛ, ତାତଲା ବାଲି, ହାଡ଼ଙ୍କ ପିଞ୍ଜରା । ତାହା ଆକାଶର ବ୍ୟାପ୍ତି ଓ ନୀଳିମା, ସୂର୍ଯ୍ୟଙ୍କ ଆଲୋକ ଓ ଶୁଭ୍ରତା, ବର୍ଷା ବଉଦର ଆଶ୍ୱାଦକୁ ଲୋଡ଼େ । ପଂକ୍ତିଟିଏ ହିଁ ତାର କରିଯାଉ—

ଆସ ବାବୁ ମହାଶୂନ୍ୟ ଏ ଦେହରି
ଅଣଓସାରିଆ ପିଣ୍ଡାକୁ ଥରେ ଉଡ଼ିଆସ । × ×

ତମେ କି ବିଶ୍ୱାସ ଦେବ ପ୍ରିୟ ବନ୍ଧୁ
ଏ ହାଡ଼ଙ୍କ ପଞ୍ଜୁରିରେ କାନ୍ଦେ ବସି
ଶୁକପକ୍ଷୀ ଶାବକଟି
ତମେ କି ଚିହ୍ନିଛ ତା'ର ସୂର୍ଯ୍ୟ-କ୍ଷୁଧା
ତମେ କି ବୁଝିଛ ତା'ର ଆକାଶର ଶୋଷ ? (ବୁଢ଼ା ଶିକାରୀ)

'ଚନ୍ଦନଘର'ର ଅନ୍ୟତମ କବିତାର ନାଁ 'ସୂର୍ଯ୍ୟ ମୋ କୋଠରି' ଏଠି ସାବଲୀଳ 'ପରକୀୟା' ଧର୍ମ କବିତାରେ ମୂର୍ତ୍ତିମନ୍ତ । 'ପରକୀୟା'ର ତେଲଲୁଣ, ଧୂଳିମଳି, ରକ୍ତ ପୂଜରେ ଘାଣ୍ଟି ହେଉଥିବା ସଂସାରୀ ସ୍ତ୍ରୀ ଲୋକଟିହିଁ କାବ୍ୟପୁରୁଷ । କମ୍ ଆକୂତି ଓ ଆକୁଳତା ନେଇ ନିତ୍ୟ ସ୍ୱାତ୍ୟନ୍ତିକ ଜୀବନ ଯନ୍ତ୍ରଣା ଭିତରେ ପରମ ସତ୍ତା ସହ ଅଭିସାର ରଚନା ମାନସିକତା ପୋଷଣ କରେ ନାହିଁ ।

'ଚନ୍ଦନଘର'ରେ ଅନ୍ୟ କେତେକ ଦିଗ ମଧ୍ୟ ରହିଛି । ତେବେ ସୌନ୍ଦର୍ଯ୍ୟବୋଧ ଓ ଜୀବନର ଜୟଗାନ ତା'ର ଉଲ୍ଲେଖନୀୟ ଦିଗ । ଧ୍ୱଂସ, ଅବକ୍ଷୟ ଭିତରେ ଜୀବନର ଜୟଯାତ୍ରା, ନୈରାଶ୍ୟ ମଧ୍ୟରେ ଆଶା ଓ ଆଶ୍ୱାସନାର ପ୍ରତ୍ୟୟ 'ଝଡ଼' କବିତାରେ ଝଂକୃତ । ଝଡ଼କୁ କବି ବଂଶୀସ୍ୱନ ସହିତ ସମୀକୃତ କରିଛନ୍ତି । ପୁଣି ଅନାଦୃତ ଅବହେଳିତ ଘାସଫୁଲ ମଧ୍ୟରେ ସୃଷ୍ଟିର ମହିମ୍ନ ସୌନ୍ଦର୍ଯ୍ୟ (ଘାସ ଫୁଲ) ଏବଂ ପ୍ରଜାପତିର ମୃତ୍ୟୁ (ପ୍ରଜାପତିର ମୃତ୍ୟୁ) ମଧ୍ୟରେ ନିଷ୍ପାପ ଚେତନା ହୃଦୟବତ୍ତା ଓ ସୌନ୍ଦର୍ଯ୍ୟର ଅପମୃତ୍ୟୁ ସୀତାକାନ୍ତଙ୍କ ମୃତ୍ତିକା ଓ ସୌନ୍ଦର୍ଯ୍ୟ-ସଂପ୍ରୀତିର ବାର୍ତ୍ତା ବହନ କରେ । 'ଚନ୍ଦନଘର' ଚେତନାକୁ ମୃତ୍ତିକା ଓ ସୌନ୍ଦର୍ଯ୍ୟମନସ୍କ କରେ । ଲୋଭ କାମନା କବଳିତ ଦେହ ପରିଧି ମଧ୍ୟରେ ଅପାର୍ଥିବ ଆହ୍ୱାନ ଶୁଣାଏ । ହୃଦୟ-ଆତ୍ମା ରୂପକ ନଦୀ ପାଇଁ ସମୁଦ୍ର ମିଳନର ଦୁର୍ବାର ଲାଳସା ଆଣିଦିଏ ।

'ଆରଦୃଶ୍ୟ' (୧୯୮୧) ମୁଖ୍ୟତଃ ଦୃଶ୍ୟମାନ ପରିପାର୍ଶ୍ୱ ଓ ବନ୍ଧ-ଜୀବନ ଅନ୍ତରାଳରେ ଅନ୍ୟ ଦୃଶ୍ୟ ବା ଦୃଶ୍ୟାନ୍ତରର ମୋହ ଓ ଉପଲବ୍ଧିର ଅଭିଜ୍ଞାନ । ଏ ଗ୍ରନ୍ଥଟି ଆମ କାବ୍ୟ ପରମ୍ପରା ଓ ଭାଗବତବୋଧର ଉଜ୍ଜ୍ୱଳ ଉଦ୍‌ଘାଟନ । ପୃଥିବୀ ଏକ ମାୟାବର୍ତ୍ତ ଏବଂ ନିୟନ୍ତାର ଅଦ୍ଭୁତ ମଣିଷକୁ ସହିବାକୁ ପଡ଼େ । ସେ କୁହେ—'ସୁନା ହରିଣ ପଛରେ ଧାଇଁବା ଆମର ଭାଗ୍ୟ' (ଲକ୍ଷ୍ମଣ), 'ଜୁଆ ପରି ଧୂଖୁରି ଘୂମୁରି ଦିବା କାକୁଅରେ ଭାଗ୍ୟ ମୋ'ର (ବିସ୍ମରଣ) । ଏକଦା ମାର୍ବଲ ଚଟାଣରେ ଦୋରଷ ଗୋଟାଇବା ମୋର ଭାଗ୍ୟ ବୋଲି କାବ୍ୟପୁରୁଷ ପ୍ରକାଶ କରିଥିଲେ । ଯା' ସତ୍ତ୍ୱେ ପରମପୁରୁଷର ସାନ୍ନିଧ୍ୟ ତା'ର କାମ୍ୟ । କବି ଦୃଷ୍ଟିରେ ସେ ଅବର୍ତ୍ତିକା ପୁରୁଷ । ସେ ସେଇ ଚଢ଼େଇ ଆକାଶ ପରି ଯା'ର ରଙ୍ଗ, ଟମଟ ପରି ଯାର ଆଖି (ଅବେଳବେଳ) । ସେ ମହାକାଳ ବା ବିଶ୍ୱରୂପ— ଯିଏ କୋଟି ବିଶ୍ୱଙ୍କୁ ଦାନାଟିଏ କରି ପଣତ ଉହାଡ଼ରେ ଧରେ (ଆରଦୃଶ୍ୟ) । ଦେହ ବା

ସଂସାର ଡଙ୍କାରେ ମଙ୍ଗ ଉପରେ ବସିଥିବା ସେ ଚଢ଼େଇଟିଏ (ଚଢ଼େଇ ୨)। ପରମ ପୁରୁଷଟି ଭରା ମେଘ ବା ନୀଳ ଏବଂ କାବ୍ୟପୁରୁଷଟି ଏକ ଗୁଡ଼ି ଏବଂ ଗୁଡ଼ିଉଡ଼ା ଶ୍ରେଷ୍ଠ ପିଲ (ପିଲଙ୍କର ଗୁଡ଼ିଉଡ଼ା)। 'ସାତଜନ୍ମ' ସାତୋଟି ମରଣ, ଭୋଗୁଥିବା ପୃଥିବୀରେ ତାଙ୍କୁ ଖୋଜା ପଡ଼େ। କେବେ 'ସୁଦାମା-ଅନୁଭବ'ରେ ତାଙ୍କୁ ପାଇବା (ଖଣ୍ଡବେଳ), ଗାଢ଼ ନେଳିଆ ପାଦଟିକୁ ମୁଠରେ ଚିପି ଧରିବା (ଶ୍ରୀକୃଷ୍ଣଙ୍କ ମୃତ୍ୟୁ) ତ କେବେ ଘନକୃଷ୍ଣ ଅନୁଭବ ସ୍ତୂପ ତଳେ ଚାପିଧରି ଶ୍ମଶାନକୁ ନିବା (ଆରଦୃଶ୍ୟ) ହିଁ କବିଆତ୍ମାର କାମ୍ୟ।

ଶବ୍ଦ ଖେଳ ସହିତ କବିଆତ୍ମାଟି ଚିରକାଳ ଜଡ଼ିତ। ଶବ୍ଦ ତା ଲାଗି ବାହନ ସ୍ୱବର ଦେବତା। କବି ଶବ୍ଦରେ ନାଦବ୍ରହ୍ମଙ୍କୁ ଭେଟେ, ଭେଟେ ନୀରବତାକୁ ବି। ଏଇ ଶବ୍ଦ ଓ ନୀରବତା ନେଇ କାବ୍ୟିକ ପ୍ରତିକ୍ରିୟା 'ଆରଦୃଶ୍ୟ'ର ଉନୋଟି କବିତାରେ ପ୍ରକଟିତ। 'ମୁଗ୍ଧ ଇନ୍ତଜାରେ', 'ନୀରବତାରେ କବି', 'ନୀରବତା' କବି ସୀତାକାନ୍ତଙ୍କର କାବ୍ୟିକ ସୂତ୍ର, ଇଲାକା ଓ ଦର୍ଶନ ସଂପର୍କରେ ବଳିଷ୍ଠ ଉଚ୍ଚାରଣ। 'ଆରଦୃଶ୍ୟ'ରେ ସୀତାକାନ୍ତଙ୍କର ଉପଲବ୍ଧି ଏକାନ୍ତ ପ୍ରାଞ୍ଜଳ। କାବ୍ୟପୁରୁଷର ରହସ୍ୟମୟତା, ସମର୍ପଣ, ଶବ୍ଦଖେଳ ବିମୁଗ୍ଧତା, କୃଷ୍ଣ ଆକୂତି 'ଆରଦୃଶ୍ୟ' ପର୍ଯ୍ୟାୟରେ ଖୁବ୍ ସାନ୍ଦ୍ର ଓ ଉଚ୍ଚକିତ। 'ଅଷ୍ଟପଦୀ' ପର୍ଯ୍ୟାୟରୁ ସୀତାକାନ୍ତଙ୍କର କାବ୍ୟିକ ଉତ୍ତରଣ ସତତ ଏକ ଆତ୍ମାନ୍ୱେଷଣ ପଥରେ ସଞ୍ଚରଣଶୀଳ। କାବ୍ୟମାନସର ଏ ଉତ୍ତରଣକୁ ପର୍ଯ୍ୟାୟୀକରଣ କରାଯିବା ସମ୍ଭବ ନୁହେଁ। ବକ୍ତବ୍ୟର ପୁନଃ କଥନ ବା ଦୃଶ୍ୟର ପୁନଃ ଉପସ୍ଥାପନ ମଧ୍ୟ ଅସ୍ୱାଭାବିକ ନୁହେଁ। ଆତ୍ମାର ଆକୂତି ଓ ବ୍ୟାକୁଳତାର କୌଣସି ଅନ୍ତିମ ସ୍ଥିର ଭୂମି ନଥାଏ ଯଦିଓ କୌଣସି ଏକ ଭୂମିକୁ ଶେଷ ସ୍ଥଳ ବୋଲି ଧରି ନିଆଯାଏ। ଏହି ଉତ୍ତରଣମୁଖୀ ଚେତନାର ବିବର୍ତ୍ତନ ପଥରେ 'ସମୟର ଶେଷନାମ' (୧୯୮୪) ଆଉ ଏକ ମୁଗ୍ଧ ଉଚ୍ଚାରଣ। ସମୟ ହିଁ ମହାକାଳ ସେ ମୃତ୍ୟୁ ଓ ପରମଙ୍କ ପ୍ରତିରୂପ ନୁହେଁ କି? ସମୟ ହିଁ ପାର୍ଥିବ ଭୋଗାଭୋଗ ଓ ଅପାର୍ଥିବ ଆକୁଳତାର ଆଧାର ଓ ଆଧେୟ ନୁହେଁ କି? ତେବେ ସମୟକୁ ସଂଜ୍ଞାୟିତ କରି ହୁଏ କି? ତା'ର ଶେଷ ନାମକୁ ଯଥାର୍ଥ ନାମିତ କରାଯାଇପାରେ? ତେବେ କବି ହିଁ ଏକମାତ୍ର ସେ ସ୍ପର୍ଦ୍ଧା କରିପାରେ ଯଦିଓ ସେ ବୁଝିଥାଏ ସମୟର ଶେଷ ନାମ ତଥାପି ଧରାଯାଇ ପାରେନା। ଏ ପଥରେ କବିଙ୍କ ସମୟ-ଉପଲବ୍ଧି, ମାଟି ଓ ଆକାଶମନସ୍କତାର ସ୍ୱର ଭିନ୍ନ ଭିନ୍ନ ଅନୁଷଙ୍ଗ ଦେଇ ରୂପାୟିତ। ଘରକରଣା, ସାଂସାରିକତା ଓ ମୃତ୍ତିକା-ମୋହ ଭିତରେ ହିଁ ସେଇ ଅସୀମ ଅରୂପର ରହସ୍ୟକାର ମହାକାଳ ବା ପରମ ସତ୍ତାଙ୍କୁ ହିଁ ଖୋଜାଯାଏ, ପାଆଯାଏ। ବିନ୍ଦୁ ଭିତରେ ହିଁ ସିନ୍ଧୁକୁ, ସସୀମ ପରିଧିରେ ଅସୀମଙ୍କୁ ହିଁ ଆପଣା କରାଯାଏ। 'ଘର' କବିତାର ଘର ହିଁ ଏହି ସସୀମର ରୂପକ-ପାର୍ଥିବତାର ପ୍ରତୀକ। ଘରର କାନ୍ଥ, ଚଟାଣ ଓ ଅଳିଗଳିରେ ସତ୍ୟ, ତ୍ରେତା, ଦ୍ୱାପର ଏବଂ କୋଠରି ମଧ୍ୟରେ ଗ୍ରହ, ତାରା, ନକ୍ଷତ୍ର ଆତଯାତ ହୁଅନ୍ତି ବୋଲି 'କାବ୍ୟପୁରୁଷର' ଉପଲବ୍ଧି। ଏହା ରହସ୍ୟାତ୍ମକ ଦୃଷ୍ଟିକୋଣ। ପୁଣି 'ଆମ ଗାଁ' ଏହି ପୁରୁଣା ପୃଥିବୀ। ଅତଏବ

ଜୀବନର ପରିଗ୍ରହଣ, ଦୁଃଖ ଓ ବେଦନାବୋଧର ଅଙ୍ଗୀକାର ଓ ମାଟିର ମୋହ ଭିତରେ ହିଁ ଅସୀମର ଦ୍ୟୋତନା—

ଅସୀମ ଆଉ କ'ଣ କି ?
ଅସୀମ ଲଙ୍ଗଳକଣ୍ଟି ରେ ହାତ ରଖି
ଏମିତି ସାମ୍‌ନାକୁ ଅନାଇବା ବର୍ଷାଧାରାର ପର୍ଦ୍ଦା ଠେଲି
ଓ କାଦୁଅରେ ଆଉ ପାଦେ ପାଦେ ପକାଇବା । (ଆମ ଗାଁ)

ସୀତାକାନ୍ତଙ୍କ 'ଦାଣ୍ଡିକବାଟ' କବିତାଟିର ଦାଣ୍ଡିକବାଟ ହିଁ ପାର୍ଥିବତା ଓ ଅପାର୍ଥିବତାକୁ ଯୋଡ଼ିବାର ଏକ ସେତୁ । ସେମିତି 'ଏ କୂଳ ସେ କୂଳ' କବିତା ଏ ଧାରାର । 'ଲେଉଟାଣି' ଓ 'ଏ କୂଳ ସେ କୂଳ' କବିତାରେ ସଂସାରକୁ ଓ ପରମକୁ ମାଟିର-ପ୍ରବାସ ଓ ପରମଧାମକୁ ବୃକ୍ଷବୋଧ ଓ ବିଶ୍ରାମ-ଈପ୍‌ସୁ ପୃଥିବୀର ରୂପଚେତନା ଭିତରେ କବି ପ୍ରତ୍ୟକ୍ଷ କରନ୍ତି । ମାଟି ବା ସୀମା ଭିତରେ ଅସୀମର ଦ୍ୟୋତନା ବା ପରମଧାମର ଧାପନା ଏକ ଉଲ୍ଲେଖନୀୟ ପ୍ରତିପାଦ୍ୟ ।

'ମୁନୁ ପାଇଁ ଗୋଟିଏ କବିତା' ଏବଂ 'ଯାତ୍ରା ତୋ'ର ଦୀର୍ଘ ହେଉ', ଏ ପର୍ଯ୍ୟାୟର ଏକ ବିଶେଷ ଉପସ୍ଥାପନ । ଶିଶୁପୁତ୍ରଟିକୁ ସମ୍ବୋଧନ କରି ସଂସାରର ଦୁଃଖ ସୁଖ, ଜୀବନର ଗ୍ରହଣଶୀଳତା ଏବଂ ଯନ୍ତ୍ରଣାରୁ ହିଁ ଆନନ୍ଦ ଓ ସୌନ୍ଦର୍ଯ୍ୟର ପଦ୍ମ ଫୁଟେ—ଏ ସମ୍ପର୍କରେ କହିବା ସୀତାକାନ୍ତଙ୍କ ଜୀବନ ସ୍ନେହ, ମୃତ୍ତିକା ସଂପ୍ରୀତିର ବଳିଷ୍ଠ କାବ୍ୟିକ ଇସ୍ତାହାର । ଜୀବନର ଯାତ୍ରାପଥରେ ସମୟର ଶେଷ ନାମକୁ ସଂଜ୍ଞାୟିତ କରି ଯାତ୍ରାର ଅନ୍ତିମ ଭୂମି ସମ୍ପର୍କରେ କବି ବକ୍ତବ୍ୟ ରାଖନ୍ତି—

"ସବୁ ଶବ୍ଦ ମରିଗଲେ ଯାହା ରହେ ତାହା ହିଁ ପ୍ରେମ
ସବୁ ଶବ୍ଦ ସରିଗଲେ ଯାହା ରହେ ତାହା ହିଁ କବିତା
ନିର୍ଜନତା ଯେ ଆମର ଭାଗ୍ୟ, ଶେଷ ଦଶା
ସମୟର ସହସ୍ର ନାମ ଭିତରୁ ଶେଷ ନାମଟି ହିଁ ନିର୍ଜନତା
ଆମ ସମସ୍ତିଙ୍କି ଶେଷରେ ସେଇଠି ହିଁ ପହଞ୍ଚିବାକୁ ହୁଏ ।
ତା' ସାଙ୍ଗରେ ମିତ ବସିବାକୁ ହୁଏ ।"

ଇତିହାସ, ପରମ୍ପରା, ପିତୃପୁରୁଷଙ୍କ ନଜର ଦେଇ କାବ୍ୟପୁରୁଷର ଏ ଉପଲବ୍ଧି ଜୀବନ ଓ ସଂସାର ସମ୍ପର୍କରେ ଏକ ପ୍ରଜ୍ଞାମୟ ଉଚ୍ଚକିତ ଉଚ୍ଚାରଣ । ଦୁଃଖ, ଭୟ, ବିଡ଼ମ୍ବନା ଅଧ୍ୟୁଷିତ ପୃଥିବୀରେ ଏ ସ୍ୱର ଜୀବନ ପାଇଁ ଆଶା, ଆଶ୍ୱାସନା ଓ ସମ୍ଭାବନାର ଧ୍ରୁପଦୀ ।

'କାହାକୁ ପୁଚ୍ଛିବା କହ' (୧୯୮୭) ସୀତାକାନ୍ତ କାବ୍ୟ ମାନସର ଏକ ଭିନ୍ନ-ଧର୍ମୀ ଉଚ୍ଚାରଣ । ଏଠାରେ ସୀତାକାନ୍ତ ସମସ୍ୟାପିଷ୍ଟ ବାସ୍ତବ ଜୀବନପରିଧିକୁ ଅନ୍ତରଙ୍ଗ

ଭାବେ ଆମଣେଇଛନ୍ତି—ସମାଜର ଦୁଃଖଶୋକ, ଅଭାବକଷ୍ଟକୁ କବିତାର ବିଷୟବସ୍ତୁ କରିଛନ୍ତି । ଭିକାରୀ ପିଲା, କୃଷକ, ଫୁଟପାଥ୍‌ରେ ପତିତ କିଶୋର ସମ୍ପର୍କରେ ଭାବଗର୍ଭକ କବିତା ଲେଖାଯାଇଛି । ଏମାନେ ଯେମିତି ଏକ ଏକ ଧ୍ରୁବ, ନଚିକେତା ଓ ଯୀଶୁଖ୍ରୀଷ୍ଟ ଯୀଶୁ । ଶିଶୁ ହିଁ ନିଷ୍ପାପ ଚେତନା ଓ ନିରପରାଧ ସୌନ୍ଦର୍ଯ୍ୟର ପ୍ରତୀକ । ଧ୍ରୁବର ତପସ୍ୟା ସ୍ନେହ ପାଇଁ, କାହିଁ ପ୍ରଜାପତି ପାଇଁ, ମାଟିକୁ ସ୍ୱର୍ଗ ଭୂମିରେ ପରିଣତ କରିବା ପାଇଁ । ପୁରାଣର ଧ୍ରୁବ ଭିତରେ ସମକାଳର କିଶୋର-ମାନସକୁ କବି ପ୍ରତ୍ୟକ୍ଷ କରନ୍ତି । ଭିକାରୀ ପିଲାର ମୃତ୍ୟୁ ଏମିତି ସେମିତି ମୃତ୍ୟୁ ନୁହେଁ; ତାହା ଅମୃତ ଚେତନା, ସ୍ୱର୍ଗୀୟ ଭାବର ହିଁ ମୃତ୍ୟୁ । ତାର ପାକସ୍ଥଳୀରୁ ଖୋଜିଲେ ମିଳିବ ଅଯୁତ ସୂର୍ଯ୍ୟର ହାହାକାର; ଶିରାପ୍ରଶିରାରୁ ଚଢ଼େଇଙ୍କ ସଙ୍ଗୀତର ସ୍ୱର ହିଁ ଶୁଭିବ । ଭିକାରୀ ପିଲାକୁ ନେଇ ରଚିତ ତିନୋଟି କବିତାର ଉପସ୍ଥାପନ ଆମ ଭିତରେ କାରୁଣ୍ୟ ସୃଷ୍ଟି କରେ । ଈଶ୍ୱରଙ୍କୁ କବି ପ୍ରଶ୍ନର କାଠଗଡ଼ାରେ ବନ୍ଦୀ କରନ୍ତି । ସମକାଳର ଦୁଃସ୍ଥିତି କବିଙ୍କୁ ଏକପ୍ରକାର ନିରୀଶ୍ୱରବାଦୀ କରି ଦେଇଛି । ଏହା ସମକାଳର ପ୍ରାଚ୍ୟ ସ୍ଥିତି ବାଦୀ ଅନୁଭବ । ସୀତାକାନ୍ତ ଈଶ୍ୱର ମୃତ ଓ ଅନୁପସ୍ଥିତ ବୋଲି କହନାହାନ୍ତି କିନ୍ତୁ ଈଶ୍ୱର ତାଙ୍କ ପାଇଁ ହୋଇଯାଇଛନ୍ତି ଏକ ଅସହାୟ, ଉଦାସୀନ ପଙ୍ଗୁ ସତ୍ତ୍ୱବିଶେଷ । ଏ ପର୍ଯ୍ୟାୟରେ କବିଙ୍କ ସମାଜନିଷ୍ଠା ଓ ମାନବିକ ସହୃଦୟତାର ପରିପ୍ରକାଶ ଏକାନ୍ତ ହୃଦ୍ୟ ! ଦୁଃସ୍ଥ ଓ ପତିତ ମଣିଷ ପାଇଁ ଈଶ୍ୱର ଓ ତେତିଶ କୋଟି ଦେବତା ଆଶା, ଆଶ୍ୱାସନା ଓ ବରାଭୟର ମୁଦ୍ରା ତୋଳିବାକୁ ଅକ୍ଷମ । ଈଶ୍ୱର ଆଜି ଧର୍ଷିତା ଅଲ୍‌ଅଲୀ ଟିଅଟିର କାନ୍ଦୁରା ମୁହଁରେ, ଭିକାରୀର ତମା ଦୋପଡ଼ା ତୋଳାରେ ହିଁ ଯେମିତି ମୃତ୍ୟୁବରଣ କରନ୍ତି । କାବ୍ୟପୁରୁଷର ଏ ଅସହାୟତା ଓ ଅଭିମାନ କବି କେଉଁଠି ବ୍ୟକ୍ତ କରିବେ ? ପୃଥିବୀକୁ ଯେମିତି ଦୁଷ୍କାଳ ଘେରିଛି ।

ଶିଶୁର ସ୍ୱର୍ଗ, ସାଧନା ଓ ତପସ୍ୟାର ଭୂମି ଏ ପୃଥିବୀ ଅଖୋଜା, ଅଲୋଡ଼ା ଓ ଭୟସଙ୍କୁଳ ହୋଇ ପଡ଼ିଛି । 'ଧ୍ରୁବ ଚରିତ', 'ପେଭମେଣ୍ଟର ପିତାମହ', 'ସେମାନେ ଗଯ୍ଲନ୍ତି', 'କାହାକୁ ପୁଚ୍ଛିବା କହ' ଆଦି କବିତା କବିଙ୍କ ମାନବିକ ସହୃଦୟତାର ପ୍ରୋଜ୍ଜ୍ୱଳ ଉଦାହରଣ । ସମକାଳୀନ ସମାଜ ବ୍ୟବସ୍ଥା ଓ ରାଜନୀତି ପ୍ରତି ବ୍ୟଙ୍ଗ ଏ ପର୍ଯ୍ୟାୟରେ ପରିଲକ୍ଷିତ ହୁଏ ।

'ଚଢ଼େଇରେ ତୁ କି ଜାଣୁ' (୧୯୯୦), 'ଫେରିଆସିବାର ବେଳ' (୧୯୯୧) ପର୍ଯ୍ୟାୟକୁ—ସୀତାକାନ୍ତଙ୍କ କାବ୍ୟସାଧନା ତିନି ଦଶନ୍ଧିକୁ ଅତିକ୍ରମ କଲାଣି । ଆତ୍ମ-ମୁଖ୍ୟଗତ ଖୁବ୍ ନୂତନ ବକ୍ତବ୍ୟ ଅପେକ୍ଷା ବିଭିନ୍ନ ଭାବ ବିଷୟକ ସୂକ୍ଷ୍ମତମ ସାନ୍ଦ୍ର ଅନୁ-ଭବମାନ ଏ ପର୍ଯ୍ୟାୟରେ ରୂପାୟିତ । ଜୀବନର ଦାର୍ଶନିକ ଉପଲବ୍ଧି ଓ ଆଧ୍ୟାତ୍ମିକ ବ୍ୟାକୁଳତା ନେଇ କବି ଦୃଷ୍ଟି ରହସ୍ୟବାଦୀ ହୋଇ ଉଠିଛି । ଧାର୍ମିକତା ଓ ପାରତ୍ରିକ ଭାବବିଳାସ ବିନ୍ଦୁ ଶବ୍ଦ ଓ ଅନୁଷଙ୍ଗ ଦେଇ ରୂପାୟିତ । ଗ୍ରୀଲ ପରିକା ଅମୂର୍ତ୍ତ ପଥର,

ପ୍ରକୃତି, ପିବନ ପରିକା ଜଡ଼ ଉପାଦାନ ଭିତରେ ଜୀବନ ଆରୋପ କରି ନିଜ ବକ୍ତବ୍ୟ କଳାସଙ୍ଗତ ଭାବେ ବାଢ଼ି ପାରିଛନ୍ତି । ଏ ପର୍ଯ୍ୟାୟରେ 'କବିତାର ଜନ୍ମ' ଏକ ଚରମ କାବ୍ୟିକ ଉଚ୍ଚାରଣ । ତେବେ ଏହି ଧାରାରେ କବିଙ୍କ ଶ୍ରେଷ୍ଠତମ କବିତା ସଙ୍କଳନ 'ବର୍ଷା ସକାଳ' (୧୯୧୬) ପରିଣତ ପ୍ରଜ୍ଞା ଓ ଉପଲବ୍‌ଧିକୁ ନେଇ ବଳସିତ । ଏ ସଙ୍କଳନସ୍ଥ କବିତାମାନେ ଆକାରରେ ସାନ । ସେହି ହେତୁ ବକ୍ତବ୍ୟ ଶାଣିତ ଓ ଅନ୍ତର୍ଭେଦୀ । ଜୀବନ, ମୃତ୍ୟୁ, ପ୍ରକୃତି, ସମୟ ଇତ୍ୟାଦି ନେଇ କାବ୍ୟପୁରୁଷର ସୂକ୍ଷ୍ମ ବିରଳ ଅନୁଭବ ପରିଲକ୍ଷିତ । କବିତାର ଭାଷା ସରଳ, ପ୍ରତ୍ୟକ୍ଷ, ଆବେଦନ ବେଶ୍ ମୌଳିକ । ମାଟି, ଆକାଶ, ସମୁଦ୍ର, ସୂର୍ଯ୍ୟ, ନକ୍ଷତ୍ର, ଜଡ଼-ଜୀବନ୍ତ ପ୍ରକୃତି ସହିତ କାବ୍ୟପୁରୁଷର ଆତ୍ମୀକରଣ ଖୁବ୍ ସାନ୍ଦ୍ର, କହିବା ଭିନ୍ନଧର୍ମୀ । ଏହି ବସ୍ତୁସକଳ ପରମପୁରୁଷ ବା ଈଶ୍ୱରଙ୍କ ରୂପ ଓ ଚେତନାର ଭିନ୍ନ ଭିନ୍ନ ପରିପ୍ରକାଶ ନୁହେଁ କି ? ମୁଖ୍ୟତଃ କାବ୍ୟପୁରୁଷର 'ମୁଁ'ଟି ପରମ-ପୁରୁଷ 'ତୁମେ' ହୋଇଯିବାର ଗଭୀରତମ ଉପଲବ୍‌ଧି 'ବର୍ଷା ସକାଳ'ର ପ୍ରମୁଖ ପ୍ରତିପାଦ୍ୟ ମନେ ହୋଇଥାଏ । କାବ୍ୟପୁରୁଷ ଆକାଶ ହୋଇଯିବାକୁ ଅଭିଳାଷ ରଖେ । ପୁଣି ମାଟି ହିଁ ତା'ପାଇଁ ସ୍ୱର୍ଗ, ଇହକାଳ ଓ ପରକାଳ (କୋଉ ଆଦିମ କାଳରୁ ପୃଥିବୀ) କବି-ଆତ୍ମା ଗଙ୍ଗଶିଉଳିର ସ୍ୱପ୍ନସହ ଏକୀଭୂତ । ଫୁଲଟି ନକ୍ଷତ୍ର କି ନିର୍ବାଣ ଲୋଡ଼େନା—ମାଟି ଶେଯରେ କିଛି ନକହି ଝଡ଼ିଯିବାକୁ ଚାହେଁ (ଗଙ୍ଗଶିଉଳିର ସ୍ୱପ୍ନ) । କାବ୍ୟପୁରୁଷ ନିଜ ଆତ୍ମାର କାନ୍ଦକୁ ସୁଦୂର ନକ୍ଷତ୍ରର କ୍ରନ୍ଦନ ସହ ସମଧର୍ମୀ କରେ ।

ଆକାଶକୁ ଯଶୋମତୀ ମା'ର ସ୍ନେହମୟ ବିଭୂତି ବୋଲି ତର୍କଣା କରି ନିଜେ ଅନ୍ତରୀକ୍ଷ ବା ଆକାଶ ହୋଇଯିବାର ଅଭିଳାଷ ପୋଷଣ (ଆକାଶ), ମୃତ୍ୟୁକୁ ସ୍ନେହ ଓ କରୁଣାମୟ ଉନ୍ମୁଖ ଆକାଶ ବୋଲି ତର୍କଣା ( ମୃତ୍ୟୁ ) ସୀତାକାନ୍ତଙ୍କ ରହସ୍ୟବାଦୀ ସ୍ୱରର ପରିଚାୟକ । 'ପ୍ରାନ୍ତର', 'ଦୁବଘାସ', 'ସୂର୍ଯ୍ୟ', 'ମୁଁ ନଥାଏ' କବିତାରେ ପରମସତ୍ତା ସହ ଏକୀଭୂତ ହୋଇ 'ସେ ପାଲଟି ଯିବାର' ଆକୁଳତା ପରିଲକ୍ଷିତ । ଦୁଇଟି ପଂକ୍ତି ଉଦ୍ଧାର କରାଯାଉ—

> ମୁଁ ଅନାଏ ଶୂନ୍ୟତାକୁ ଓ ପରେରେ
> ଆତ୍ମାତ୍ମମ, ଶୂନ୍ୟମୟ ଅହ୍ରେ ନିରଞ୍ଜନ
> ମୁଁ କି କେବେ ହେବିନି ଆକାଶ ? (ଆକାଶ)

> ସେ ସ୍ୱର କି ନଭଗୃହ ତାରା ନକ୍ଷତ୍ରର ?
> ସେ ସୁର କି ନିରଞ୍ଜନ ଅଗ୍ନିଧୂଆ
> କଣ୍ଟକିତ ଆମୋଦିତ ମୋହିତ ଆତ୍ମାର ? (ମଧ୍ୟରାତ୍ରି)

'ବର୍ଷା ସକାଳ' ଗ୍ରନ୍ଥର 'ଯା' ଦେବା' କବିତାରେ କାବ୍ୟପୁରୁଷ ଦେହ ଓ ପାର୍ଥିବତା ଭିତରେ ଏକ ଉର୍ଦ୍ଧ୍ୱାୟିତ ( Sublimed ) ବିଦେହ-ଅନୁଭବ ବା ତୃଷ୍ଣାକୁ ଲୋଡ଼ିଛି,

ଲୋଡ଼ୁଛୁ ଚେତନା ନୀଳାସ୍ଥ ହେବା । ଏହା ବ୍ୟକ୍ତିକ ନୁହେଁ; ସର୍ବଭୂତରେ ଏହି ବିଦେହି ଅନୁଭବ ଓ ରୂପାନ୍ତର ପାଇଁ କାବ୍ୟପୁରୁଷର ଆକୂତି । ଏକ ସାମାନ୍ୟ ଭିନ୍ନଧର୍ମୀ ପୃଷ୍ଠଭୂମିରେ ସୀତାକାନ୍ତଙ୍କ କାବ୍ୟସ୍ୱରର ଏହା ଏକ ସର୍ବୋତ୍ତମ ଉଚ୍ଚାରଣ ବୋଲି କହିବାକୁ ହେବ—

ଚିର କାଳ ଧୂଳି ପିଇ ପିଇ
ମୁଁ ଏଠି ଜୀବନ-ସ୍ୱପ୍ନ-ପିପାସାରେ ଦଗ୍‌ଧ ମ୍ଳାନ ଅକିଞ୍ଚନ
ତମେ ଆସ, ଆଗୋ ଦେବୀ
ନୀଳ ଆଖି, ନୀଳ ଭ୍ରୂରୁ, ନୀଳ ନାଭି, ନୀଳ ସ୍ତନ
ନୀଳ ଯୋନି, ସୁନୀଳ ଜଘନ
ତମେ ଆସ ଆଗୋ ତୃଷ୍ଣା, ଆଗୋ ଗ୍ରନ୍ଥି
ଆଗୋ ଭ୍ରାନ୍ତି, ଆଗୋ ମୁକ୍ତି
ମୋତେ ମିଳୁ ନୀଳ-ସ୍ୱପ୍ନ, ନୀଳ-ମୃତ୍ୟୁ
ନୀଳ-ନିର୍ବାସନ ॥

ଦୁଇ :

ସୀତାକାନ୍ତଙ୍କ କାବ୍ୟିକ ବିବର୍ତ୍ତନର ଆଲୋଚନା ପ୍ରସଙ୍ଗରେ ତାଙ୍କ ଭାବଜଗତ ସମ୍ପର୍କରେ କେତେକ ପ୍ରମୁଖ କଥା କୁହାଯାଇଛି । ଜଣେ ଉତ୍ତରଣମୁଖୀ ଶିଳ୍ପୀର ଭାବଜଗତକୁ ବିଭାଗୀକରଣ କରିବା ପ୍ରକୃତରେ କଠିନ । ତେବେ ଆଲୋଚନାର ଏ ପର୍ଯ୍ୟାୟରେ ତାଙ୍କ କବିତାର ଆଙ୍ଗିକ ଓ ଆତ୍ମିକ କ୍ଷେତ୍ରରେ କେତୋଟି ବିଶେଷ ଦୃଶ୍ୟମାନ ଦିଗ ବିଷୟରେ ଆଲୋକପାତ କରାଯାଇପାରେ ।

ସୀତାକାନ୍ତଙ୍କ କବିତାରେ ପିଲାଦିନର ସ୍ମୃତି ଓ ପାରିବାରିକ ସମ୍ପ୍ରୀତି ଭିତ୍ତିଆରେ ମାଟି ଓ ସଂସ୍କୃତିପ୍ରବଣତାର ରୂପାୟନ ଘଟିଛି । ଇତିହାସ, ପରମ୍ପରା, କିମ୍ବଦନ୍ତୀ, ପୁରୁଣା ପୃଥିବୀ ସହିତ ଜେଜେବାପା, ଜେଜେମା', ଗାଁ, ଘର ତାଙ୍କ ଚେତନାରେ ଏକ ଓ ଅଭିନ୍ନ ହୋଇଯାଇଛନ୍ତି । ପାର୍ଥିବତା ଭିତରେ, ଘରର ସୀମିତ ସରହଦ ମଧ୍ୟରେ ପୁରୁଣା ସମୟକୁ, ବିଭିନ୍ନ ଯୁଗକୁ ସେ ଉପଲବ୍‌ଧିରେ ଆଣିଛନ୍ତି ।

ଏଇ ପୃଥିବୀ, ପୁରୁଣା, ହଳଦିଆ
ଅବାକ୍, ଆଶ୍ଚର୍ଯ୍ୟ ପୃଥିବୀ
ସେ ଆମ ବୁଢ଼ୀମାଆ (ବୁଢ଼ୀ ମା')

ଏଇଠି କାନ୍ଥରେ, ଚଟାଣରେ ଓ ଅଲଗଣିରେ
ଗୃହିଣୀ ଦେଖ, ସତ୍ୟ, ତ୍ରେତା, ଦ୍ୱାପର ନଧଡ଼କ
ପ୍ରିୟତମା, ଏଇ ଦେଖ, ଗନ୍ଧ ତା'ର ନହାରକା
ଅସଂଖ୍ୟ ନଗର
କ ଶୋଭରେ କୋଠରୀରେ ହୋନ୍ତି ଆତଯୋତ । (ଘର)

ବ୍ୟକ୍ତିସତ୍ତା ସହ ପରମସତ୍ତାକୁ ଯୋଡ଼ିବା ସୀତାକାନ୍ତଙ୍କ ଭାବ ଜଗତର ପ୍ରମୁଖ ସ୍ୱର । ଏହା ଏକ ଯୋଗୀ ବା ସନ୍ନ୍ୟାସୀ ଚେତନା ନୁହେଁ କେବଳ; ତାଙ୍କର ମାଟିମନସ୍କତା, ଯୁଗ ଓ ଜୀବନ ଯନ୍ତ୍ରଣାର ସ୍ୱର ମଧ୍ୟ ଏଥିରେ ରହିଛି । ଏ ପ୍ରସଙ୍ଗରେ ଚଢ଼େଇ ପ୍ରତୀକ ବା ରୂପକ ପ୍ରତି ତାଙ୍କ ମମତ୍ୱବୋଧ ଅପ୍ରତିରୋଧ୍ୟ । ନଜ ସତ୍ତାଟି ଚଢ଼େଇ ଓ ଅଭୀପ୍ସିତ ପରମସତ୍ତାଟି ମଧ୍ୟ ଚଢ଼େଇ ପ୍ରତୀକରେ ରୂପାନ୍ତୃତ । ହେଲେ ସେ ଚଢ଼େଇର ରୂପ ରଙ୍ଗ ଭିନ୍ନ, ଚଢ଼େଇ ସହ ଆତ୍ମୀୟ କଥୋପକଥନ ଏତେବେଶୀ ମାର୍ମିକ ଯେ ଏହା ଆତ୍ମସତ୍ତା ଓ ପରମସତ୍ତା ଏକାତ୍ମ ହେବାର ଅନୁଭବ ଦେଇଯାଏ । ବ୍ୟକ୍ତିସତ୍ତା ଓ ପରମସତ୍ତାର ସଂପର୍କ ଯୋଡ଼ିବା ମଧ୍ୟରେ ମାଟି ଓ ଆକାଶ, ସୀମା ଓ ଅସୀମ ଯୋଡ଼ିବାର ଉପଲବ୍ଧି ମଧ୍ୟ ଦେଖିବାକୁ ମିଳିଥାଏ । ବ୍ୟକ୍ତିସତ୍ତାଟି ଦେହ, ମନ, ଆତ୍ମା ପୁଣି ଲୋଭ, କଷ୍ଟ, ଯାବତୀୟ ଆର୍ତ୍ତି ଓ ଆକୃତିର ପ୍ରତିରୂପ । ଚଢ଼େଇ ବା ପକ୍ଷୀ ପ୍ରକୃତରେ ଆମ କାବ୍ୟ-ପରମ୍ପରା ଓ ଲୋକ-ସାହିତ୍ୟର ସାମଗ୍ରୀ । ବିଶେଷକରି ସେ ସତ୍ତାଟି କେବେ ପୋକ, କୁଆ ବା କର୍କିର ପ୍ରତୀକ-ରୂପ ନେଇ ସୀତାକାନ୍ତଙ୍କ କବିତାରେ ପ୍ରତିଫଳିତ । ସାନ ପିଲାଟିକୁ ମଧ୍ୟ କବି ଚଢ଼େଇ ସମ୍ବୋଧନରେ ସମ୍ବୋଧି ଥାଆନ୍ତି ।

ବାୟା ଚଢ଼େଇରେ ବାୟା ଚଢ଼େଇ
ତୋ' ମା' ଯାଇଛି ଗାଈ ଅଢ଼େଇ
ଡେର ହେଲେ ହୋଇପାରେ
ତୁ କାନ୍ଦୁ ଡର୍‌ନା । (ପେଭମେଣ୍ଟର ପିତାମହ)

'ଆର ଦୃଶ୍ୟ' ଓ 'ଶବଦନଦୀ' ସଙ୍କଳନରେ ଚଢ଼େଇର ଉପସ୍ଥିତି ସବିଶେଷ ଭାବେ ଅନୁଭବ୍ୟ । ସେଇ ଚଢ଼େଇ ପ୍ରତି ମମତ୍ୱବୋଧରୁ ସଙ୍କଳନର ନାମ 'ଚଢ଼େଇରେ ତୁ କ ଜାଣୁ' ଏବଂ 'ଫେରି ଆସିବାର ବେଳ' ସଂକଳନର ଶବ୍ଦ ଓ ଭାଷ୍ୟରେ ସେଇ ଚଢ଼େଇ-ପ୍ରବଣତା । ମୁଖ୍ୟତଃ ଅର୍ଥହୀନ ମଳିନ ସ୍ଥିତିରୁ ଉଜ୍ଜ୍ୱଳ ହେବା ଆକାଂକ୍ଷା ହିଁ ଏଠାରେ ଅଧିକ ମୂର୍ତ୍ତିମନ୍ତ । କେତେ ଭାବରେ, ରୂପରେ ସେ ଚଢ଼େଇର ବର୍ଣ୍ଣନା—

ଦେଖିଲି ସେ ଚଢ଼େଇ କ :
ଆକାଶ ପରି ନା' ରଙ୍ଗ, ମେଘ ଆଖି, ସକାଳର କଅଁଳ ଖରାରେ

ଚ'ଣ ଖୋଜିବ ଫର୍‌କନ ଶିଙ୍ଗୁଣାଙ୍କ ଉଡ଼ିଗଲା
ଆଉ ମୁଁ ତା' ପଛେ ପଛେ ଗ୍ଲଲି ଯେ ଗ୍ଲଲି—
ଚ...ନ୍ଦ୍ର, ସୂର୍ଯ୍ୟ, ନର୍କ, ପାତାଳ, ଜନ୍ମ, ମୃତ୍ୟୁ, ଶୂନ୍ୟ, ମହାଶୂନ୍ୟ···

(ଅବେଳ ବେଳ)

ଶଙ୍ଖ ନେଇ ସୀତାକାନ୍ତଙ୍କର ଅଜସ୍ର କବିତା । ଶଙ୍ଖ ପ୍ରସଙ୍ଗରେ ମଧ୍ୟ ଚଢ଼େଇପ୍ରବଣତାର ସ୍ଫୁରଣ । ଶଙ୍ଖକୁ କୁନି ଚଢ଼େଇ କହିବା ସୂକ୍ଷ୍ମ କୋମଳ ଧାରଣା ଓ ଖିଆଲର ପରିଚ୍ଛାୟକ ।

ଶଙ୍ଖ ଝୁଲି ପଡ଼େ
କୁନି ଚଢ଼େଇଟେ ପରି
ମୁକ୍ତାଙ୍କର ହାତୁ ଓହ୍ଲାଇ ।

ଚଢ଼େଇ ଭିତରେ କବି ନିଷ୍ପାପ, ନିଷ୍ପାପ ଶିଶୁର ଓ ସୌନ୍ଦର୍ଯ୍ୟର ଚିତ୍ର ମଧ୍ୟ ପରିବେଷଣ କରିଛନ୍ତି । 'ଭିକାରି ପିଲାର ମୃତ୍ୟୁରେ 'ଚଢ଼େଇ ପରି ତା' ଦେହ' ଏବଂ 'ଭିକାରି ପିଲାର ପୋଷ୍ଟମର୍ଟମ' କବିତାରେ—'ପେଟ କାଟିଲେ ଅନେକ ନିଃସ୍ୱ ଚଢ଼େଇଙ୍କ ସ୍ୱର/ତା' ଶିରା ଧମନୀରୁ / ହୁଇସି ଚର୍‌ଚରେଇ ବାହାରି ଆସିବେ'—ବୋଲି କବି ଉଚ୍ଚାରଣ କରନ୍ତି । 'ବୁଢ଼ା ଶିକାରୀ' କବିତାରେ ହାଡ଼ଙ୍କ ପିଞ୍ଜରାରେ ବସି ଝୁରୁଥିବା ପକ୍ଷୀଟି ହିଁ ଜୀବାତ୍ମା ଯାହାର ରକ୍ତ, ମାଂସ, ସ୍ନାୟୁରେ ସୂର୍ଯ୍ୟ ଓ ଆଲୋକକୁ ସ୍ପର୍ଶ କରିବାର ଦୃପ୍ତ ଅଭିଳାଷ । ପରମ ସତ୍ତାସହ ଏକାତ୍ମ ହେବା ପାଇଁ ଅନ୍ୱେଷାବୋଧ, ଆକୁଳତା ଏବଂ କେବେକେବେ ତଲ୍ଲୀନତାବୋଧର ପରିପ୍ରକାଶରେ ସୀତାକାନ୍ତ କାବ୍ୟସ୍ୱର ଏକାସଙ୍ଗେ ଆଧ୍ୟାତ୍ମିକତାସମ୍ପନ୍ନ ଓ ରହସ୍ୟବାଦୀ ।

କେବଳ ପକ୍ଷୀ ନୁହେଁ; ଅନେକ ଚିତ୍ରକଳ୍ପ, ଉପମା, ରୂପକ ଦେଇ ତାହା ରୂପାୟିତ । ମହାପ୍ରକୃତିର ବିଭିନ୍ନ ବିଭବ ମଧ୍ୟରେ ପରମସତ୍ତାଙ୍କ ରୂପ ଚିତ୍ରିତ । ସେ ଆକାଶ, ସମୁଦ୍ର ଓ ନଦୀ । ବ୍ୟକ୍ତିସତ୍ତାଟି ଜଙ୍ଗୁର ଜଳଘଟ । ପରମସତ୍ତାଟି ଦିଗନ୍ତ—ବ୍ୟକ୍ତିସତ୍ତାଟି ବିନ୍ଦୁ । ସମୁଦ୍ର, ଆକାଶ, ନଦୀ ନେଇ କବିଙ୍କର ତିନୋଟି କାବ୍ୟଗ୍ରନ୍ଥ । ଏ ନେଇ ଅନେକ ଉଦାହରଣରୁ କେତୋଟି ପଂକ୍ତିର ଉଲ୍ଲେଖ କରାଯାଇପାରେ—

ଜାଣିଚ, ତମେ ହେଇ ଚିର ଲୋଭନୀୟ ଦିଗନ୍ତ
ହତଭାଗା ବିନ୍ଦୁ ମୁଁ ପ୍ରାଣପଣେ
ଧାଇଁଥାଏ ତମକୁ ହିଁ ଛୁଇଁବାକୁ
ଖସିକି ପଡ଼ିବାକୁ, ଆପଣାକୁ ଉଜାଡ଼ି ଦେବାକୁ
ତମରି କୋଳରେ ।

(ଦୂରତ୍ୱ)

କେମିତି ସବୁ ଭଲ କବିତା ଲେଖା ଯେ
ଯେ ପର୍ଯ୍ୟନ୍ତ ଆକାଶ ପଶିଆସିନି
ଅଥଳ ସ୍ନେହର ବନ୍ୟା ମୋ କରୁଣ ରୁଗ୍ଣ ହୃଦୟକୁ
ଯେ ପର୍ଯ୍ୟନ୍ତ ମୁଁ ନିଜେ ହୋଇ ପାରିନି
ଅସୀମ ଶୂନ୍ୟ ଆକାଶ ନୀଳିମ ସୋହାଗ ।

(ଯଦି ଦିନେ କବିତାଟି ଲେଖା ସରିଯାନ୍ତା)

ମହାପ୍ରକୃତିର ଅନ୍ୟରୂପ-ପରପ୍ରକାଶ ମଧ୍ୟରେ କବି ପରମହଂସଙ୍କୁ ଅନୁଭବନ୍ତି । ପବନ, ଝଡ଼, ଅଗ୍ନି ଇତ୍ୟାଦି ସେ ଅନ୍ୟରୂପର ପ୍ରକାଶ । 'ସେ' 'ମୁଁ' ହୋଇଯିବାର ଆତ୍ମିକ ଅନୁଭବ ଏଣୁ ବହୁ କବିତାରେ ପ୍ରତିଫଳିତ । କବି କହନ୍ତି—

ନଭ ରହେ ନାଭି ଦେଶେ
ରବି ଶଶୀ ମୋ ବେନି ନୟନେ
ନଦୀମାନେ ମୋ ନାଡ଼ିରେ ପ୍ରବହନ୍ତି
ମୋ ବାଣୀରେ ଛନ୍ଦଛନ୍ଦ ମିଶେ ।

(ଶରଧାବାଲିର ବୃନ୍ଦାଲୋକ)

ପରମହଂସଙ୍କ ରୂପରଚନା ବେଳେ ଆକାଶ ପ୍ରମୁଖ ଭାବେ ତାଙ୍କ ଅନ୍ୱେଷାର ଭୂମି ହୋଇଛି । ନଦୀ-ରୂପକ ବା ନଦୀ-ସତ୍ତା ମଧ୍ୟରେ ଏଇ ଉପଲବ୍ଧିର ରୂପାୟନ । ନଦୀ ହିଁ ଜୀବନ, ମୃତ୍ୟୁ, ପ୍ରେମ, କାମ, ମୁକ୍ତି, ସମୟ ଓ ପରମଙ୍କ ପ୍ରତୀକ । କବି କହନ୍ତି—

ତୁମେ ନଦୀ / ମୁଁ ତୁମର ଅସହାୟ ତଟଭୂମି ସ୍ନେହର
ବେଦୀରେ / ସକଳ କବିତା ମୋର
ଯନ୍ତ୍ରଣା ଓ ଆସ୍ୱାଦର ଶୁଭ ଅଷ୍ଟପଦୀ ।

(ନଦୀରେ ଅନେକ ଭୟ)

ଜୀବନ ଓ ସଂସାରର ବିବିଧ ଦିଗ ଓ ଅନୁଭବ ସୀତାକାନ୍ତଙ୍କ ଅନ୍ୱେଷଣର ଆଉ ଏକ ପ୍ରମୁଖ ବିନ୍ଦୁ । ଏ ନେଇ କବିଙ୍କ ବକ୍ତବ୍ୟ ଆବେଗଧର୍ମୀ ଓ ଦାର୍ଶନିକତା ସମ୍ପନ୍ନ । ରାମାୟଣ, ମହାଭାରତ ଭିନ୍ନ ଜଗନ୍ନାଥ ଦାସଙ୍କ ଭାଗବତ ଏହି ଦାର୍ଶନିକ ଅନୁଭବ ପାଇଁ ଭୂମି ହୋଇଛି, କବିଙ୍କ ଭାବବୃତ୍ତିକୁ ସମୃଦ୍ଧ କରିଛି । ଭାଗବତୀ ଅବବୋଧ ସହ ଆତ୍ମିକ ସହ-ଭାଗିତା ପୋଷଣ ପରମ୍ପରାମାନ୍ୟତାର କଥା; ଚେତନାର ବିସ୍ତାର ଓ ଉତ୍ତୀର୍ଣ୍ଣତା ପାଇଁ ଏହା ସ୍ୱପ୍ନ, ସହାୟତା ଓ ପ୍ରେରଣା ଦେଇଥାଏ । ଭାଗବତର ଘଟ ଓ ଆକାଶ କେନ୍ଦ୍ରିତ ଭଙ୍ଗୁର ଓ ଶାଶ୍ୱତ ଭାବ, ବୃକ୍ଷ ଓ ପଥିକୀ ଚେତନା, ଅବଧୂତଙ୍କର ଚବିଶଗୁରୁ ପ୍ରସଙ୍ଗର ଦାର୍ଶନିକ ଅଭିବ୍ୟକ୍ତି ଆଦି ସୀତାକାନ୍ତଙ୍କ କବିତାରେ ବଡ଼ ଚମତ୍କାର ଭାବେ ସଂଯୋଜିତ ହୋଇ କବିଙ୍କ ବକ୍ତବ୍ୟ ଓ ଭାବଭୂମିକୁ ପରିପୁଷ୍ଟ କରିଛି ।

ମୁଁ / ମୁଁ ଏକଦା / ଏକଦା ଆକାଶି
ଆକାଶ ନ ଛୁଅଇ ଭିନ୍ନ
ନାଶ ହୁଅନ୍ତି ଘଟମାନ
ମୁଁ ଏକ ଘଟ ।   (ମରୁ ପଥରର ସ୍ୱରଲିପି)

ସେଇ ଗଛତଳେ ଆସି ପଥିକେ ଯେ ବିଶ୍ରାମିଲେ
ଅତି ଆପଣାର ଯେତେ ପ୍ରାଣରୁ ଅଧିକ
ସ୍ନେହ ବନ୍ଧନ ଫେଇ ପୁଣି କେବେ ଯେଝାବାଟେ ଗଲେ ଚାଲି
ପଥଶ୍ରମ ସାରି । ବୁଝିଲି ମୁଁ, ବୁଝିଲି ମୁଁ
ସେ ବୃକ୍ଷ ଯେ ନୁହଁଇ କାହାର ।   (ତେଲଉଟାଣି)

ଜମ୍ବା ଅନ୍ୟତ୍ର,
ସେ ଗଛଟି ସେମିତି ଏବେ ବି ଛିଡ଼ା
ଛାୟା ତା'ର ନୁହଁଇ କାହାର
ସେ ଗଛରେ କେତେ ପକ୍ଷୀ ଉପୁଜିଲେ, ଝଡ଼ିଗଲେ
କିଏ ତା'ର କରିବ ସୁମାର
ପଥିକ ଆସ୍ତା ନିଅନ୍ତି ଛାଇତଳେ
ପୁଣି ଯାନ୍ତି ଯେଝାବାଟେ କର୍ମକୁ ଆଦରି ।   (ଏକୂଳ ସେକୂଳ)

ସ୍ୱକୀୟ ବକ୍ତବ୍ୟ, ଦର୍ଶନକୁ ରୂପ ଦେବାପାଇଁ ସିଲ୍ୱିଦାନର ସ୍ୱତନ୍ତ୍ରୀକରଣ ସହ ଶିଶୁ-ସଂଗୀତ ଏବଂ ଷେଶବିଶେଷରେ ଶିଶୁପୁତ୍ରକୁ ସମ୍ବୋଧନ କରିବା ସୀତାକାନ୍ତଙ୍କ କବିତାରେ ପ୍ରମୁଖ ଘଟିବ ପ୍ରତିଫଳିତ । ତେବେ ସଂସାର ଓ ଜୀବନ ସଂପର୍କରେ ଗମ୍ଭୀରତମ ଉପଲବ୍ଧି, ଅନ୍ୱେଷଣ, ମାନବିକ ସହୃଦୟତା ପୋଷଣ ତଥା ଜୀବନ ପ୍ରତି ଅନ୍ତରଙ୍ଗ ଶ୍ରଦ୍ଧା ନିବେଦନ ହିଁ ଏ ଧାରାର କବିତାରେ କବିଙ୍କ ବିଶେଷ ଲକ୍ଷ୍ୟ ବୋଲି ମନେହୋଇଥାଏ । ସଂସାର ଓ ଜୀବନ ସଂପର୍କୀୟ ଦାର୍ଶନିକ ଉପଲବ୍ଧି ଏ ପର୍ଯ୍ୟାୟରେ ଖୁବ ସ୍ପଷ୍ଟ ଓ ପ୍ରତ୍ୟକ୍ଷ, ସୂକ୍ଷ୍ମ ଓ ଶକ୍ତ । ସଂସାରର ଚଲାପଥରେ ମାୟାମୃଗ ସତ୍ୟ, ବୁଢ଼ୀଅସୁରୁଣୀ ସତ୍ୟ, ମଣିଷର ଧାଇଁବା ସତ୍ୟ । ଲୁହବିନ୍ଦୁ, ସ୍ୱେଦକଣା, ବିଷାଦ, ଆହ୍ଲାଦ, ଶିହରଣ, ଆଶାନିରାଶା—ସବୁକୁ ନେଇ ଜୀବନ । ସ୍ନେହରେ କବି କହିଛନ୍ତି—

ଜୀବନଟା ଅଶୁମାରି ପଣ୍ଡାଗୁଂଫ ଛଡ଼ା ଆଉ କ'ଣ ଯେ ?
(ଯାହା ତୋ'ର ଶୀର୍ଷହେଉ)

'ମନୁ ପାଇଁ ଗୋଟିଏ କବିତା'ରେ କବି ପୁଣି କହନ୍ତି—ନିଜ ବାଟ ନିଜକୁ ଖୋଜିବାକୁ ପଡ଼େ । ବାଧା ସହିତ ଯୁଝିବାକୁ ହୁଏ । ବାଧା ହେଉଛି ପରମପୁରୁଷ ଓ

ମହାକାଳ । ଚଉକଡ଼ି ଗହଗହ, ମହମହ ଜୀବନ । ତାକୁ ଜାଣିବାକୁ ହବ । ଜୀବନ ପ୍ରତି ଏକ ଗଭୀର ଆସ୍ଥା, ବିଶ୍ୱାସ ଓ ସମର୍ପଣର ସ୍ୱର ଏ ଧାରାର କବିତାରେ ଅନୁରଣିତ । ଶିଶୁର ନିଷ୍ପାପ ସତ୍ତା ଦେଇ କାବ୍ୟପୁରୁଷର ଉତ୍ତୀର୍ଣ୍ଣ ହେବାର ବ୍ୟାକୁଳତା ଧ୍ରୁବ ଓ ନଚିକେତାର ତପସ୍ୟା ମଧ୍ୟରେ ଅଭିବ୍ୟଞ୍ଜିତ ହୋଇଛି ।

ସୀତାକାନ୍ତଙ୍କ ବିଭୁବୋଧ ବା ଈଶ୍ୱର-ଉପଲବ୍ଧି ତାଙ୍କ କବିତାରେ ଦୁଇଟି ଧାରାରେ ରୂପାୟିତ ହୋଇଥିବାର ଲକ୍ଷ୍ୟ କରାଯାଏ । ଈଶ୍ୱରଙ୍କ ସହିତ ଏକ ଭାବମୁଗ୍ଧ ସଂପର୍କ ଯୋଡ଼ିବାରେ ଅନେକ କବିତା କୃଷ୍ଣମୟତାର ନିବିଡ଼ ସମର୍ପିତ ଅନୁଭବ ଦେଇ-ଯାଆନ୍ତି । ଅନ୍ୟ ପର୍ଯ୍ୟାୟରେ ସଂସାରର ଦୁଃଖ, ଯାତନା ଓ ଅନ୍ତର୍ଦ୍ଦାହ ମ୍ରିୟମାଣ କାବ୍ୟ-ନାୟକ ଈଶ୍ୱରଙ୍କୁ ଗାଳି ଓ ଅଭିସଂପାତ ବର୍ଷଣ କରି ସେ ମରିଗଲେ ବୋଲି ଘୋଷଣା କରିଛି । ପ୍ରଥମ ଅନୁଭବଟିରେ ପରମାତ୍ମାର ସ୍ପର୍ଶ, ସ୍ପନ୍ଦନ ଓ ଏକ ତଲ୍ଲୀନ ଐଶ୍ୱରୀୟ ଭାବବିଳାସ । ଅନ୍ୟ ମାନସିକତାଟିରେ ସମକାଳୀନ ଜୀବନଯନ୍ତ୍ରଣା, ମଣିଷର ଅସହାୟତା ତାଙ୍କୁ ବିମର୍ଷ ଓ ବିବ୍ରତ କରିଛି । ଏହା ଯେମିତି ପ୍ରାଚ୍ୟର ଆସ୍ଥା, ବିଶ୍ୱାସ ଓ ଆଶ୍ୱାସନାମୟ ଜୀବନ ଦୃଷ୍ଟି ଏବଂ ପାଶ୍ଚାତ୍ୟ ଅସ୍ତିତ୍ୱବାଦୀ ଦୃଷ୍ଟିଭଙ୍ଗୀର ସମନ୍ୱୟ । ସୀତାକାନ୍ତଙ୍କ କୃଷ୍ଣମୟତାର ଉପଲବ୍ଧି ମୁଖ୍ୟତଃ ଯଶୋମତୀ-ବ୍ୟାକୁଳତା, କୁବୁଜା-ବିଭୋରତା, ଲକ୍ଷ୍ମୀପାଦ-ମୁଗ୍ଧତାରେ ସମାହିତ । ଅନ୍ୟ ଅର୍ଥରେ କହିଲେ ସେ ଏଇ ଚରିତ୍ରମାନଙ୍କ ସହ ଆତ୍ମିକ ସହଭାଗୀ ହୋଇ କୃଷ୍ଣମୟତାର ଉପଲବ୍ଧିକୁ ଗ୍ରହଣ କରିଛନ୍ତି । ଏଇ ଚରିତ୍ରମାନେ ସତେକି ଏକ ସେତୁ ବା ଆଧାର । ଏ ପ୍ରସଙ୍ଗରେ ଦୁଇଟି ଉଦ୍ଧୃତି ଉଲ୍ଲେଖ କରାଯାଇପାରେ—

ସଭିଙ୍କୁ ଅଜଣା ଏକ ଘନକୃଷ୍ଣ ଅନୁଭବ
ଚୁପ୍‌ଚାପ୍ ନିରୋଳାରେ ଗୁଡ଼ି ତଳେ ଛପି ରହି
ତମ ସାଙ୍ଗେ ଶ୍ମଶାନକୁ ଯିବ । (ଆର ଦୃଶ୍ୟ)

ପାଗଳୀନୀ ଯଶୋଦା ମୁଁ ଚାହିଁରହେ ଲେଉଟାଣି ବାଟ
ସେ କି ଚତୁର୍ଦ୍ଧାମୂରତି ମୋ ହୃଦୟ ସିଂହାସନେ ନରହରି
ବିଦାରଇ ହିରଣ୍ୟକଶିପୁ ମୋର ସ୍ୱୈରଯୌବନ ସମାହିତ ସ୍ଥୂଳତନୁ
ସେ କି ଗୁମ୍ଫାନଟ ଗ୍ରାଇ ପଡ଼ିଥାଏ ଚିରକାଳ ମୋ ଆତ୍ମା ନଦୀରେ
ଓ ଯା'ର କରୁଣା ବାଣ ରଖଇ ଚିରହରିତ
ସ୍ୱପ୍ନ ଆଉ କଳ୍ପନାର ଦିରମଲ ମୋର କଳ୍ପବଟ । (ବିଷାଦର ରୂପ ଖୋଜି)

ଅନ୍ୟ ପର୍ଯ୍ୟାୟର ସାମାଜିକ ଚେତନାଭିତ୍ତିକ ଅନୁଭବରେ କବିଙ୍କ ବିଭୁବୋଧ 'କାହାକୁ ପୁଚ୍ଛିବା କୁହ' ସଂକଳନରେ ଅଧିକ ଭାବରେ ପ୍ରତିଫଳିତ । ମଣିଷର କାରୁଣ୍ୟ ଓ ଅସହାୟତା ନେଇ ସେ ଈଶ୍ୱରର ମୃତ୍ୟୁ ବା ଅନୁପସ୍ଥିତି ଘୋଷଣା କରିଛନ୍ତି ।

ଧର୍ଷିତା ଅଲ୍‌ଅଲ ଝିଅଟିର କାନ୍ଦୁରା ମୁହଁରେ
ଭଗବାନ ଆଉ ଥରେ ମରିଗଲେ × ×
ମୁଣ୍ଡଗଣ୍ଡି ଅଲଗା ହରିଜନ ଶିଶୁ—
ଭକାଷିର ଡମା ନେସେଡ଼ା ଡୋଳାରେ ।

ଏହି ପର୍ଯ୍ୟାୟରେ ସେ ଈଶ୍ୱରଙ୍କୁ ସାଧାରଣ ମାନବୀୟ ସ୍ତରକୁ ଆଣି ତାଙ୍କ ଅସହାୟତା ଓ କାରୁଣ୍ୟ ସହ ଆତ୍ମିକ ସହଭାଗୀ ହୋଇଛନ୍ତି ଏବଂ ସଂସାରର ଦୁଃଖ-ଯାତନା ସହ ତାଙ୍କୁ ଏକାତ୍ମ କରିଦେଇଛନ୍ତି । ମଣିଷର ଅସହାୟତା ସହ ଈଶ୍ୱରଙ୍କ ଅସହାୟତାର ସହାବସ୍ଥାନ—ଏ ଉପଲବ୍‌ଧି ସୀତାକାନ୍ତଙ୍କ ବିଭୂତିବୋଧରେ ଏକ ନୂଆଁ ଦୃଷ୍ଟି ।

ଆମକୁ ସଂସାରର ହାରୁପଥରେ ଘୃଷିଧରି
ମାୟା ଜାଲରେ ଘୁରେଇ ଭୁରେଇ ଧନ୍ଦଧନ୍ଦ
ତୁମେ ଯେଉଁଠି ଥାଅନା କାହିଁକି
ତୁମେ ବି କ'ଣ ଏମିତି ବେଳେବେଳେ ବିବ୍ରତ ହୋଇପଡ଼ ?
ତୁମେ ବି କ'ଣ ଲୁଚେଇ ଲୁଚେଇ ଲୁହ ଝାର
ନିଜର ଅନିଚ୍ଛାକୃତ ନିଷ୍ଠୁରତାରେ ? (ନିଷ୍ଠୁର)

ଜନ୍ମ

ନିଜ ତିଆରି ଜାଲରୁ ସହଜେ
ମୁକୁଳି ଯାଇ ପାରିବ ନାହିଁ
ତାର ସମ୍ଭବ ନାହିଁ ଏଣେ ଫେରିବାକୁ
ଭାଇ, ବନ୍ଧୁ, କୁଟୁମ୍ବ, ପୁତ୍ର, ପୌତ୍ର ସମସ୍ତଙ୍କୁ ମାରି, ମରେଇ
ଶେଷକୁ ନିଃଶାଖା, ଏକାଏକା, ଲେଉଟାଣି
ନିଷ୍ଠୁର ଶବରର ଦ୍ୱାରା ଶରାହତ ହୋଇ । (ତୁମର ମହିମା)

ସାମାଜିକ ସଚେତନତା ପରିପ୍ରେକ୍ଷୀରେ ସୀତାକାନ୍ତଙ୍କ ପରିଣତ ସମୟର କବିତାରେ ମାନବିକ ସମ୍ବେଦନଶୀଳତାର ପରିପ୍ରକାଶ ଘଟିଛି ଯାହା 'ଅଷ୍ଟପଦୀ' ପର୍ଯ୍ୟାୟର ଅନୁଭବ ଅପେକ୍ଷା ଅଧିକ ପ୍ରତ୍ୟକ୍ଷ । ତାଙ୍କର ଭିକାରି ପିଲାକୁ ନେଇ ତିନୋଟି କବିତା, 'କୃଷକ', 'ଧ୍ରୁବ ଚରିତ', 'ପେଭ୍‌ମେଣ୍ଟର ପିତାମହ' ଆଦି କବିତା ଏହି ଧାରାର । ପେଭ୍‌ମେଣ୍ଟର ପିତାମହ ବୋଲି ସମ୍ବୋଧିଥିବା ଶିଶୁଟିକୁ ସେ ଶୂନ୍ୟତାର ଶରଶଯ୍ୟାରେ ଅକାଳ ବାର୍ଦ୍ଧକ୍ୟଗ୍ରସ୍ତ ପିତାମହ ଭୀଷ୍ମ ବୋଲି କହନ୍ତି । ଧ୍ରୁବର ତପସ୍ୟା ମଧ୍ୟରେ କବିଙ୍କର ଏକ ଆଶାବାଦୀ ମାଟିମନସ୍କ ଦୃଷ୍ଟିକୋଣ ପ୍ରତିଫଳିତ । ଏଣୁ ଧ୍ରୁବର ତପସ୍ୟା—

ଇନ୍ଦ୍ର ପଦ, ଅଣିମା, ଅଷ୍ଟନିଧି, ଅପ୍ସରାଙ୍କ ପାଇଁ ନୁହେଁ,
ତୋ' ତପସ୍ୟା ବାପାଙ୍କର କୋଳପାଇଁ, ସଢ଼େଇର ଖେଳ ପାଇଁ,
ପେଟପୂରା ଭାତ ପାଇଁ, କର୍ଣ୍ଣି, ପ୍ରଜାପତି ପାଇଁ  ×  ×  ×
ପ୍ରଥମ ବରଷା ଗୀତ, ପବନର ସ୍ୱର, ଠୋ ଠୋ ଜହ୍ନି ଫୁଲ ପାଇଁ । (ଧ୍ରୁବ ଚରିତ)

ପରମ ସତ୍ତାଙ୍କ ସହ ଏକାତ୍ମହେବା ଅଭିଳାଷ ଭିନ୍ନ ଗଭୀର ମାଟି ବା ପୃଥିବୀମନସ୍କତା ସୀତାକାନ୍ତଙ୍କର ଅନ୍ୟତମ ବୈଶିଷ୍ଟ୍ୟ ଯାହା ବହୁ କବିତାରେ ରୂପାୟିତ ହୋଇଛି । ଗଙ୍ଗଶିଉଳିର ସ୍ୱପ୍ନ ଭିତରେ ସେ 'ନକ୍ଷତ୍ର', 'ନିର୍ବାଣ', 'କାଳିଆ ଭଅଁର କଳାଜହ୍ନ' ଅପେକ୍ଷା ମଳିନ ଧୂସର ମୃତ୍ତିକାର ମୋହ କଥା ସ୍ମୃତଥାନ୍ତି । ପୃଥିବୀର ସୌନ୍ଦର୍ଯ୍ୟ, ହସକାନ୍ଦ, ସ୍ନେହବାତ୍ସଲ୍ୟ ଭିତରେ ପରମ ଆହ୍ଲାଦ, ଅମୃତ ଓ ସ୍ୱର୍ଗ ରହିଛି ବୋଲି କାବ୍ୟପୁରୁଷର ଏକ ଦରଦୀ ଉଦ୍‌ଘୋଷଣା । ବହୁ କବିତାରେ ଏ ସ୍ୱର ପ୍ରମୂର୍ତ୍ତ—

ସ୍ୱପ୍ନ ତା'ର ସବୁ ପ୍ରେମ, ସକଳ ହସ ଓ ଦୃଷ୍ଟି ପଛକୁ ପକାଇ
ତାଳରୁ ବିଦାୟ ମାଗି ଧୂଳିଶେଯେ ଝଡ଼ିଯିବା ପାଇଁ
ପଦଟିଏ କଥା ବି ନ କହି । (ଗଙ୍ଗଶିଉଳିରସ୍ୱପ୍ନ)

କୁହତ ତୁମକୁ ଛାଡ଼ି ଆଉ କେଉଁ ସ୍ୱର୍ଗ
ତୁମ ବିନା କେଉଁ ଅଣିମାଦି, ଅଷ୍ଟବର୍ଗ ?  ×  ×
ତୁମେତ କାଳେ କାଳେ, ସବୁକାଳେ ଏଇଠି
ଇହକାଳ, ପରକାଳ ମୋର, ପୃଥିବୀ । (କୋଉ ଆଦିମ କାଳରୁ ପୃଥିବୀ)

ଗାଁ ଓ ପ୍ରକୃତି ସଂପ୍ରୀତି ସହିତ ସହରୀ ସଭ୍ୟତାର ପ୍ରାଣହୀନତା, ଯାନ୍ତ୍ରିକତା, ଛଳନା ଓ କୃତ୍ରିମତା, ହିଂସା ଓ ସଂତ୍ରାସ ଅଧ୍ୟୁଷିତ ସାଂପ୍ରତିକ ସମୟର ଚିତ୍ର ସୀତାକାନ୍ତଙ୍କ 'ଭୁବନେଶ୍ୱର', 'ଦିଲ୍ଲୀ', 'କଟକ', 'ନାଦିରଶାହ, ଆଉଥରେ' ଆଦି ସ୍ଥାନ ଓ ଚରିତ୍ର-ଭିତ୍ତିକ କବିତାରେ ପରିବେଷିତ । ପୁଣି ସାଂସ୍କୃତିକ ସହଭାଗିତା ସହ ସାଂସ୍କୃତିକ ଅବକ୍ଷୟଜନିତ କାରୁଣ୍ୟ ଓ ବିମର୍ଷତାବୋଧ ତାଙ୍କର 'ଓଡ଼ିଶା', 'ମହାନଦୀ ପୋଲ', 'ଦେବଗଣ', 'ଭଙ୍ଗା ମନ୍ଦିର' ଆଦି କବିତାରେ ପ୍ରମୂର୍ତ୍ତ ।

ସୀତାକାନ୍ତଙ୍କ କବିତାରେ ମାନବିକ କାରୁଣ୍ୟର ଚିତ୍ର ସହ ମାନବିକ କରୁଣାର ପ୍ରତିଫଳନ ବା ମାଟି ଓ ମଣିଷ ପାଇଁ ଗଭୀର ଦରଦ ଏକ ବିଶେଷ ଦିଗ । ଏହାକୁ ଗଭୀର ଜୀବନ ସୋହାଗ ବୋଲି ଆଖ୍ୟାୟିତ କରାଯାଇପାରେ । ପୁଣି ଜୀବନ ଯେ ହାରିଯାଏ ନାହିଁ କି ସରିଯାଏ ନାହିଁ—ସବୁ ଝଡ଼ ଅଟିଗଲା ପରେ ପୁଣି ପୃଥିବୀ ଓ ଜୀବନର ଜୟଯାତ୍ରା ଅବ୍ୟାହତ ରହେ—ଏ ସ୍ୱର ସୀତାକାନ୍ତଙ୍କର ବହୁ କବିତା ଅନ୍ତରାଳରେ ପ୍ରଚ୍ଛନ୍ନ । ମଣିଷ ଓ ପ୍ରାଣୀ ଜଗତର ଯନ୍ତ୍ରଣା, କାରୁଣ୍ୟ, ଜୀବନଯାତ୍ରା ଓ ଜୀବନଜିଇଁବା ସହ ଗଭୀର

ଅନ୍ତରଙ୍ଗତା, ସହଭାଗିତା, ହୃଦୟ ଓ ଆତ୍ମାର ବିସ୍ତାର ଓ ବିଗଳନ ଅଭୀପ୍ସା ସୀତାକାନ୍ତଙ୍କ କବିତାରେ ଏକାନ୍ତ ହୃଦ୍ୟ । ମଣିଷର ଦୁଃଖ, ଆର୍ତ୍ତି ଓ ଅସହାୟତା ପାଇଁ କବି ହୃଦୟର ଆଶ୍ୱାସନା ଅପରିସୀମ । ଏଠାରେ ପ୍ରଦତ୍ତ ଉଦ୍ଧୃତିଟି କବିଙ୍କ ଜୀବନ ଦର୍ଶନର ଏକ ଊର୍ଜସ୍ୱଳ ଉଦାହରଣ—

ମୁଁ ଯେ ଜନ୍ମନିଏ ଅନୁକ୍ଷଣେ
ମୁଁ ଯେ ଥାଏ ହର୍ଷ ଶୋକ ବିମୋହିତ ସକଳ ଭୁବନେ
ମୁଁ ଯେ ଧାତ୍ରୀ ପିମ୍ପୁଡ଼ିର ଏନ୍ତୁଡ଼ିଶାଳରେ
ମୁଁ ଯେ ମନମାରି ବସେ ଗେଣ୍ଡୁ ଫୁଲ ରୋଗଶଯ୍ୟା ଆଡ଼େ × ×
ମୁଁ ଯେ ନିତି ମୃତ୍ୟୁ ମରେ
ରୂପବତୀ ଗଣିକାର ପଶ୍ଚାତ୍ତାପ ଆଉ କ୍ଳାନ୍ତି
ଘୁଷୁର ଘୁଷୁର ଯିବା ଜିଆଟିର ଲକ୍ଷ୍ୟହୀନତାରେ
ରଣିଫୁଲ ଜହ୍ନଧୂଆ କୁଷ୍ଟୀର
ମାଦଳ ଦେହ କାନ୍ଦୁରି ମୁହଁରେ ।                (କବିତାର ଜନ୍ମ : ୨)

ସୀତାକାନ୍ତଙ୍କର ପରିଣତ ସମୟର 'ସାରାଜୀବନ ଲୋକଟା' ଶିରୋନାମାର କବିତା ଏବଂ ଅନ୍ୟ ବହୁକବିତାରେ ଜୀବନ, ସଂସାର ଓ ପରମସତ୍ତାଙ୍କ ସମ୍ପର୍କୀୟ ଗଭୀରତମ ଉପଲବ୍ଧିର ଚଜ ଅଙ୍କୁର ସୂକ୍ଷ୍ମ, କୋମଳ ଭାବେ ପ୍ରକାଶ ପାଉଥିବାର ଲକ୍ଷ୍ୟ କରାଯାଏ ।

ପ୍ରୟୋଗବାଦୀ ଧାରାର ଅନ୍ୟ କାବ୍ୟଶିଳ୍ପୀଙ୍କ ପରି ସୀତାକାନ୍ତ ମଧ୍ୟ ଚିତ୍ରକଳ୍ପ, ପ୍ରତୀକ, ମିଥ୍ ଗଦ୍ୟଛନ୍ଦ ଦେଇ ତାଙ୍କର ବକ୍ତବ୍ୟ ବାଢ଼ିଥାନ୍ତି । ପୁରାଣ, ଇତିହାସ, କିମ୍ବଦନ୍ତୀ ଭଳି ଆମ କାବ୍ୟପରମ୍ପରାର ଉପାଦାନ ତାଙ୍କ କାବ୍ୟିକ ପରିମଣ୍ଡଳକୁ ସମୃଦ୍ଧ କରିଛି । ଆଙ୍ଗିକ କ୍ଷେତ୍ରରେ ପରୀକ୍ଷା ପ୍ରବଣତା ପ୍ରତି ଖୁବ୍ ମୋହ ନଥିଲେ ବି ସୀତାକାନ୍ତ ଗଦ୍ୟଛନ୍ଦ, ଲୋକଛନ୍ଦ, କଥ୍ୟ ଭାଷାରେ ବେଶ୍ କିଛି ଚମତ୍କାରିତା ପ୍ରଦର୍ଶନ କରିଛନ୍ତି । ବୃହତ୍ତର କାନ୍‌ଭାସ ଉପରେ ନିଜର ସ୍ୱତନ୍ତ୍ର ବକ୍ତବ୍ୟ ପାଇଁ ଦୀର୍ଘ କବିତା ଲେଖିଛନ୍ତି । 'ଅଷ୍ଟପଦୀ' ଓ 'ସମୁଦ୍ର'ର ସଂଯୋଜନା ସୀତାକାନ୍ତୀୟ କାବ୍ୟ ବୈଶିଷ୍ଟ୍ୟର ବିଶେଷ ଉଦାହରଣ । ଶବ୍ଦ ପ୍ରୟୋଗ, ଚିତ୍ର ସଂଯୋଜନା ସର୍ବୋପରି ଆଙ୍ଗିକ ପାଟବର ବସ୍ତୁ ବିଶେଷତ୍ୱ ଓ ଚମତ୍କାରିତା ସୀତାକାନ୍ତଙ୍କ କାବ୍ୟକଳାର ଅନେକ ବୈଶିଷ୍ଟ୍ୟ ଉଦ୍‌ଘାଟନ କରେ । ଏହା ସ୍ୱତନ୍ତ୍ର ସୁଦୀର୍ଘ ଆଲୋଚନାର ଅପେକ୍ଷା ରଖେ ।

# ଐମଶିବର୍ତ୍ତନର ସ୍ୱର ଓ କବି ସୌଭାଗ୍ୟ ମିଶ୍ର

ଏକ :

ଆଧୁନିକ ଓଡ଼ିଆ କବିତା ପରମ୍ପରାରେ ସୌଭାଗ୍ୟକୁମାର ମିଶ୍ର ଏକ ପ୍ରଭାବଶାଳୀ ବ୍ୟକ୍ତିତ୍ୱ । ୧୯୬୦ ରୁ (ଦୀର୍ଘ ୧୭ ବର୍ଷ) ଏକନିଷ୍ଠ ଭାବରେ କବିତା ରଚନାରେ ନିମଗ୍ନ ଶ୍ରୀ ମିଶ୍ରଙ୍କ କାବ୍ୟଚେତନାର ଅନୁଶୀଳନ କେଉଁଠି ବିଧିବଦ୍ଧ ଭାବେ କରାଯାଇନାହିଁ । ନିଜ କାବ୍ୟ ପ୍ରକ୍ରିୟା ଓ ସ୍ୱର ସମ୍ପର୍କରେ କବି ନିଜେ ମୁଖବନ୍ଧ ଲେଖି ନାହାନ୍ତି କିମ୍ବା ଆଲୋଚନା ପ୍ରସଙ୍ଗରେ କେଉଁଠି କହି ନାହାନ୍ତି । ବୟସ ଓ ଅଭିଜ୍ଞତା ବୃଦ୍ଧି ସଙ୍ଗେ ସଙ୍ଗେ ତାଙ୍କ କାବ୍ୟ ପରିଧିରେ ଯେଉଁ ଦ୍ରୁତ ପରିବର୍ତ୍ତନ ସଂଘଟିତ ହୋଇ ଚାଲିଛି, ତାହା ଶ୍ରୀ ମିଶ୍ରଙ୍କୁ ତାଙ୍କ ସମସାମୟିକ ସ୍ରଷ୍ଟାଙ୍କଠାରୁ ଅଲଗା କରି କେବଳ ଚିହ୍ନାଏ ନାହିଁ; ଅଧିକନ୍ତୁ ସ୍ୱାଧୀନତାପ୍ରାପ୍ତିଙ୍କ ପରମ୍ପରାରେ କବିତାର ଆଙ୍ଗିକ ସମୃଦ୍ଧିରେ ବେଶ୍ କିଛି ନୂଆ ମୋଡ଼ ଆଣିବାରେ ତାଙ୍କ କୃତିତ୍ୱକୁ ପ୍ରକଟିତ କରେ । ତାଙ୍କ କବିତାର ଏ ଗଠନ କୌଶଳ ପରିବର୍ତ୍ତିତ ହୋଇଚାଲିଛି; ନିର୍ଦ୍ଦିଷ୍ଟତା ଏଯାଏ ନିରୂପିତ ହୋଇନାହିଁ । ଅଦ୍ୟାବଧି ପ୍ରକାଶିତ ଚାରିକୋଟି କାବ୍ୟଗ୍ରନ୍ଥରେ କବିଙ୍କ ଭାବଚେତନାର ଉତ୍ତରଣ ସହଜରେ ଲକ୍ଷ୍ୟ କରାଯାଇପାରେ ।

ଆତ୍ମନେପଦୀରୁ (୧୯୬୫) ସୌଭାଗ୍ୟ ମିଶ୍ର ଓଡ଼ିଆ କବିତାରେ ପ୍ରଚୁର ସମ୍ଭାବନା ଦେଇଥିଲେ ମଧ୍ୟ ଉକ୍ତ କାବ୍ୟଗ୍ରନ୍ଥରୁ ତାଙ୍କ ସ୍ୱରର ନିର୍ଦ୍ଦିଷ୍ଟତା ଓ ଭବିଷ୍ୟତ କଳନା କରିବା ଅସମ୍ଭବ ହୋଇପଡ଼େ । ଏଠାରେ ରୋମାଣ୍ଟିକ୍ ଭାବଚେତନା ପ୍ରଖର ଆବେଗ ପରିଶୀଳିତ ଭାଷା ମଧ୍ୟରେ ସହଜ ସାବଲୀଳ ଭାବରେ ଆତ୍ମ ପ୍ରକାଶ କରିଛି । ତରୁଣ କବି, ମାନସିଂହ ଓ ଗୁରୁପ୍ରସାଦ ମହାନ୍ତିଙ୍କ କବିତାର ଆକର୍ଷଣ ସହଜରେ ଏଡ଼ିପାରି ନାହାନ୍ତି । ପ୍ରଣୟ ଓ ବିଚ୍ଛେଦର ସ୍ୱର ବହନ କରୁଥିବା ଏଇ କବିତାଗୁଡ଼ିକରେ ଗୀତିମୁଖର ଛନ୍ଦ ପ୍ରତି ବେଶୀ ଧ୍ୟାନନିଷ୍ଠ ଥିଲେ ହେଁ ବାକ୍‌ସ୍ୱାଦର ଆକର୍ଷଣ 'ଆତ୍ମନେପଦୀ'ରେ ଲକ୍ଷଣୀୟ ଯାହାର ପରବର୍ତ୍ତୀ ଅବସ୍ଥାରେ ଯଥେଷ୍ଟ ବିକାଶ ସାଧିତ ହୋଇଛି । 'ମଧ୍ୟପଦଲୋପୀ' (୧୯୭୧) ଗ୍ରନ୍ଥ ବିଚାରରେ ହରପ୍ରସାଦ ଦାସଙ୍କ ବକ୍ତବ୍ୟ ସହିତ ସଚେତନ ପାଠକ ଏକମତ ହୋଇ ପାରିବେ ଯେ ଗୁରୁପ୍ରସାଦଙ୍କର ଚତୁର୍ଦ୍ଦଶପଦୀ ଫର୍ମ 'ଆତ୍ମନେପଦୀ'ର ବହୁ କବିତାରେ କଞ୍ଚା ହାତରେ ପରୀକ୍ଷିତ ଓ ଶେଷରେ କ୍ଳାନ୍ତିକର ବୋଲି ପ୍ରମାଣିତ । ପୁଣି ଗୁରୁପ୍ରସାଦଙ୍କ ବାକ୍‌ଭଙ୍ଗୀ, ସମସ୍ତ ପ୍ରୟୋଗ ମୂଲ୍ୟ ହରାଇ କେବଳ ଏକ ରୋମାଣ୍ଟିକ୍ ଠାଣିରେ ପର୍ଯ୍ୟବସିତ 'ଆତ୍ମନେପଦୀ'ରେ । ଏହା ସ୍ପଷ୍ଟ ଯେ ଗୁରୁପ୍ରସାଦଙ୍କର କାବ୍ୟଧାରା

ପ୍ରତି ଗଭୀର ସମ୍ମାନବୋଧ ସତ୍ତ୍ୱେ କବି ଯେମିତି ଏକ ବୃହତ୍ତର ଅନୁରକ୍ତିର ଅପେକ୍ଷା ରଖୁଥିଲେ । ତାହା ସ୍ପଷ୍ଟ ହେଲା ପୁଣି 'ଆତ୍ମନେପଦୀ' ଗ୍ରନ୍ଥର 'ସାମାନ୍ୟ କଥନ' କବିତାରେ । ଏଇଠାରୁ ଆରମ୍ଭ ହେଲା କାବ୍ୟ ଜୀବନର ଦ୍ୱିତୀୟ ପର୍ଯ୍ୟାୟ ଓ ରମାକାନ୍ତ ରଥଙ୍କ ସୃଷ୍ଟି ପଡ଼ିଲା କବିଙ୍କ ବର୍ଦ୍ଧିଷ୍ଣୁ ଚେତନା ଉପରେ । (୧) 'ମଧ୍ୟପଦଲୋପୀ'ରେ ଶ୍ରୀ ମିଶ୍ରଙ୍କ ସ୍ୱରର ନିର୍ଦ୍ଦିଷ୍ଟତା ନିରୂପଣ କରିବା ଆୟାସସାଧ୍ୟ । ବିଶ୍ୱ ବିରୋଧାଭାସ ଓ ପରୀକ୍ଷାନିରୀକ୍ଷା ଭିତରେ କବିଙ୍କୁ ଗତି କରିବାକୁ ପଡ଼ୁଛି । 'ଆତ୍ମନେପଦୀ'ର ରୋମାଣ୍ଟିକ ମୋହ କଠୋର ବାସ୍ତବତାର ସମ୍ମୁଖୀନ ହୋଇ ଶିଥିଳ ହୋଇଆସିଛି । ଆବେଗ ନିବୁଜ ହୋଇ କବିତାକୁ ଗାମ୍ଭୀର୍ଯ୍ୟ ଯୋଗାଇଛି । ତଥାପି ଫେସନ୍‌-ପ୍ରବଣତା, ବକ୍ତବ୍ୟର ଅସ୍ପଷ୍ଟତା, ବୁଦ୍ଧିଦୀପ୍ତତା ଏବଂ ଅପରଣତ ପ୍ରୟୋଗବାଦିତା ଆତ୍ମନେପଦୀୟ ପାଠକକୁ ଏକ ସଚେତନ ଦୂରତ୍ୱରେ ଠିଆ କରାଏ । ମଧ୍ୟପଦଲୋପୀର ଗ୍ରନ୍ଥ ବିଚାରରେ ଶ୍ରୀ ଦାସ ଏହାକୁ ଏକ ସନ୍ଧିକ୍ଷଣ ବୋଲି କହିଛନ୍ତି । "ମୁଁ ପ୍ରଥମରୁ କହିଛି ଯେ କାବ୍ୟମାନସ ଯେଉଁ ସନ୍ଧିକ୍ଷଣ ଦେଇ ଗତି କରୁଛି ତାହା ଚେତନାର ପୂର୍ଣ୍ଣରୂପ ପାଇଁ ସମ୍ପୂର୍ଣ୍ଣ ଅନୁସନ୍ଧି । ତେଣୁ ପାଠକର ଅନ୍ୱେଷଣ ଏ କ୍ଷେତ୍ରରେ ଦିଗ ପରିବର୍ତ୍ତନ କରିବା ଉଚିତ । ପରିପ୍ରକାଶ ଅପେକ୍ଷା ଉପସ୍ଥାପନା, ବିଶ୍ଲେଷଣ ଅପେକ୍ଷା ସୂଚନା, ସମାଧାନ ଅପେକ୍ଷା ସନ୍ଦେହ ଏ କ୍ଷେତ୍ରରେ ଅଧିକ ଗୁରୁତ୍ୱପୂର୍ଣ୍ଣ । (୨) ଭାଷା ବ୍ୟବହାରରେ ତୀକ୍ଷ୍ଣତା, ପରିମିତତା, ଶୈଳୀର ନିଜସ୍ୱ ଚେଷ୍ଟା, ବାକ୍ୟାଂଶର ପ୍ରୟୋଗ 'ମଧ୍ୟପଦଲୋପୀ'କୁ ପୁଷ୍ଟ କରିଛି । ଶ୍ରୀ ମିଶ୍ରଙ୍କ ଶବ୍ଦ ପ୍ରତି ମୋହ ବଢ଼ିଛି ଏବଂ ପରୀକ୍ଷାନିରୀକ୍ଷାର ଇଚ୍ଛା ବଳବତ୍ତର ହୋଇଛି । ସ୍ୱରରେ ଏକ ବିଷଣ୍ଣ ବ୍ୟାକୁଳତା ଓ ମୁକ୍ତିଲାଭ ପାଇଁ ବ୍ୟଗ୍ରତା କାବ୍ୟପୁରୁଷକୁ ବ୍ୟସ୍ତ ଓ ସଂଶୟଗ୍ରସ୍ତ କରିଛି । ଶୂନ୍ୟବାଦୀ ଓ ଆତ୍ମସମର୍ପଣର ଭାବ କାବ୍ୟଚେତନାକୁ କାବୁ କରିଛି । (କଙ୍କଡ଼ା, ପୂଜାଛୁଟି, ଅପରାହ୍ଣ, ବିଦାୟ, ମାଛର ପ୍ରାର୍ଥନା, ଶୁକଦେବ ଜେନା ଆଦି କବିତା) । ଭାଷା ବ୍ୟବହାରରେ ପଟୁତା ଓ ତୀକ୍ଷ୍ଣତା 'ଶବସ୍ତି', 'ଧ୍ରୁବତ ଉକ୍ତି', 'ମିଛ ସକାଳ', 'ଶୁକଦେବ ଜେନା', 'ଜନାର୍ଦ୍ଦନ ଦାସ'ରେ ସହଜଲକ୍ଷ୍ୟ । 'ତୃତୀୟ ଥର', 'ଅନଧିକାର', 'ନଈବଢ଼ିର ଦୃଶ୍ୟ' ଆଦି କବିତାର ପରୀକ୍ଷାବାଦୀ ଧାରା ପୁଷ୍ଟ ହେଲେ ତାହା ଯେ କବିଙ୍କୁ ଏକ ନୂଆ ମାଧ୍ୟମ ଯୋଗାଇବ (୩)—ଶ୍ରୀ ଦାସଙ୍କ ଏ ସମ୍ଭାବନା ଫଳବତୀ ହୋଇଛି ଓ ମୌଳିକ ମୋଡ଼ ନେଇଛି 'ନଈପହଁରା' (୧୯୭୩) ଏବଂ 'ଅନ୍ଧ ମହୁମାଛି' (୧୯୭୭) ରେ ।

'ମଧ୍ୟପଦଲୋପୀ'ର ବାସ୍ତବ ଅନୁଭୂତିବୋଧ 'ନଈପହଁରା'ରେ ଏକ ଦାର୍ଶନିକ ଜିଜ୍ଞାସା ନିକଟରେ ଲୀନ ହୋଇଯାଇଛି । ଏଠି ଶ୍ରୀ ମିଶ୍ରଙ୍କୁ ସମ୍ପୂର୍ଣ୍ଣ ଅଲଗା ଭାବରେ ଦେଖିବାକୁ ହୁଏ । ବିଭିନ୍ନ ଦର୍ଶନ ପ୍ରତି କାବ୍ୟନାୟକର ଉନ୍ମୁଖତା ପ୍ରକାଶ ପାଇଛି ଏବଂ

(୧), (୨), (୩)— 'ମଧ୍ୟପଦଲୋପୀ' ଗ୍ରନ୍ଥ ବିଚାର : ହରପ୍ରସାଦ ଦାସ, ଝଙ୍କାର, ୨୩ଶ ବର୍ଷ, ୧୧ଶ ସଂଖ୍ୟା ।

ଏହାକୁ ପରୀକ୍ଷା କରିବାର ଚେଷ୍ଟା ସବୁଠି ଲକ୍ଷଣୀୟ । ମନସ୍ତାତ୍ତ୍ୱିକ ଅଭିନିବେଶର ପରୀକ୍ଷା 'ମଧ୍ୟପଦଲୋପୀ'ର 'ହାତ' କବିତାରୁ 'ଜୁନର ବିବାହ ଉତ୍ସବ' ପର୍ଯ୍ୟନ୍ତ ପ୍ରକାଶ ପାଇଁ ବାଟ ଖୋଜିଛି । 'ନିଃପଦଙ୍କର'ରେ କାବ୍ୟଚେତନା ସମସ୍ୟାର ପ୍ରେକ୍ଷାପଟ ତଥା ଜୀବନାନୁଭବର ବିପୁଳ ଆହରଣରୁ ଅଧିକ ଦାର୍ଶନିକ ମନୋଭାବସମ୍ପନ୍ନ । ଏ ପର୍ଯ୍ୟାୟରେ ଶ୍ରୀ ମିଶ୍ର ବୁଦ୍ଧିର କସରତ କରିଛନ୍ତି । ଏଣୁ ତାଙ୍କୁ ବୁଝିବା କଷ୍ଟକର ହୋଇପଡ଼େ । ଈଶ୍ୱରଙ୍କ ସ୍ଥିତିର ଉଦ୍‌ଭଟତ୍ୱ ପ୍ରମାଣ କରିବା ପାଇଁ କାବ୍ୟାନାତ୍ମକ ଉଦଗ୍ରୀବ ହୋଇଛି । ସଂଶୟ, ସଂଘାତ, ଜୀବନର ବିପର୍ଯ୍ୟୟବୋଧ ଓ ଅସାରତାକୁ ନେଇ କାବ୍ୟନାତ୍ମକ ଗମ୍ଭୀର ବେଦନାବୋଧ ଓ ବିବିଧ ଅନୁଭୂତିରେ ଜଡ଼ସଡ଼ । ଜୀବନର ନିସ୍ପୃହତା ପ୍ରତି ଶ୍ରୀ ମିଶ୍ରଙ୍କ ସ୍ୱରରେ ଯେତିକି ଉଦାରତା ପ୍ରକାଶ ପାଇଛି ସମ୍ଭାବନାର ବଡ଼ିମୁନା ପ୍ରତି ତଦ୍ରୂପ ଶ୍ଳେଷ ପ୍ରକଟିତ ହୋଇଛି । 'ମଧ୍ୟପଦଲୋପୀ'ର ମୃତ୍ୟୁଚେତନା ଏକ ପ୍ରତ୍ୟକ୍ଷ ରୂପ ପାଇଛି 'ନିଃପଦଙ୍କର' ଗ୍ରନ୍ଥରେ । କିନ୍ତୁ 'ମଧ୍ୟପଦଲୋପୀ'ର ଅଧିକାଂଶ କବିତାରେ କବିଙ୍କ ଆବେଗ ନିବୁଜ ହୋଇ ଯେଉଁ ଗାମ୍ଭୀର୍ଯ୍ୟମୟ ରୂପ ପରିଗ୍ରହଣ କରିଆସୁଥିଲା ଏବଂ ଶବ୍ଦ ଓ ଧ୍ୱନି ପ୍ରବାହରେ ଯେଉଁ ନିରିକ୍ ଅନୁଭୂତିକୁ ଆଚ୍ଛନ୍ନ କରିପାରୁଥିଲା, ତାହା 'ନିଃପଦଙ୍କର'ର ଅନେକ କବିତାରେ ଦୁର୍ଲ୍ଲଭ ହୋଇପଡ଼ିଛି । ଖୁବ୍ ବେଶୀ ପରୀକ୍ଷାନିରୀକ୍ଷା କରିବାର ଇଚ୍ଛା ଏହାର କାରଣ ହୋଇପାରେ । ସମାଲୋଚକ ଅଧ୍ୟାପକ ନିତ୍ୟାନନ୍ଦ ଶତପଥୀଙ୍କ ମତ ଏ ପ୍ରସଙ୍ଗରେ ଉଦ୍ଧାର କରାଯାଇପାରେ । "ମନ ଓ ହୃଦୟ ଗ୍ରହଣ କରୁନଥିବା ଏକାନ୍ତ ଗଦ୍ୟଧର୍ମୀ ପ୍ରକାଶକୁ ମୁଁ ଅନ୍ତତଃ କବିତା ବୋଲି ଗ୍ରହଣ କରିପାରିବି ନାହିଁ । ହୋଇପାରେ ତାହା ଉଚ୍ଚ ଦର୍ଶନ ବା ଆସନ୍ତା ଶତାବ୍ଦୀ ପାଇଁ ଏକ ବିରାଟ ତଥ୍ୟ-ରହସ୍ୟ । ଶ୍ରୀ ମିଶ୍ରଙ୍କ 'ନିଃପଦଙ୍କର'ର ଅଧିକାଂଶ କବିତା ଏହିପରି ଶୃଙ୍ଖଳ ଗଦ୍ୟଶୈଳୀରେ ରଚିତ । ଏହି ଶୈଳୀ ପାଠକକୁ ଉଲ୍ଲସିତ କରିବା ପରିବର୍ତ୍ତେ ଉତ୍ପୀଡ଼ିତ ହିଁ କରିଥାଏ । ତେଣୁ ତାଙ୍କ କାବ୍ୟ-ଚେତନାର ଗାମ୍ଭୀର୍ଯ୍ୟ ଓ ଦାର୍ଶନିକ ପୃଷ୍ଠଭୂମି ତଥା ଚିନ୍ତକଲ୍ପ ଓ ପ୍ରତୀକର ଆଶ୍ଳେଷ କାବ୍ୟିକ ଆବେଗ ହରାଇ ଅତ୍ୟନ୍ତ ରୁକ୍ଷ ହୋଇପଡ଼ିଥିବା ମନେହୁଏ ।" (୪) 'ନିଃ-ପଦଙ୍କର' ରେ ବାକ୍‌ଚାତୁରୀ ଓ ନାଟକୀୟ ଉପସ୍ଥାପନା ହିଁ ପ୍ରାଧାନ୍ୟ ଲାଭ କରିଛି । କାବ୍ୟସ୍ୱର ଏକ ବୌଦ୍ଧିକ ଆବେଦନରେ ଲୀନ ହୋଇଯାଇଛି । ଜୀବନର ନିସଙ୍ଗ ଅସହାୟତା ଓ ବିନୟ ଗମ୍ଭୀର ଭାବ କବିତାଗୁଡ଼ିକରେ ଉତ୍କୀର୍ଣ୍ଣ । ଏଠାରେ କହି ରଖାଯାଇପାରେ ଯେ ସୌଭାଗ୍ୟ ମିଶ୍ରଙ୍କ କାବ୍ୟଚେତନାରେ ଏମିତି ଦ୍ରୁତ ପରିବର୍ତ୍ତନ ସଂଘଟିତ ହୋଇଛି ଯେ ଅନ୍ୟ କବିମାନଙ୍କ ପରି ପ୍ରାଥମିକ ସଙ୍କଳନମାନଙ୍କରେ ଉଙ୍କିମାରୁଥିବା କୌଣସି ସ୍ୱର ନିର୍ଦ୍ଦିଷ୍ଟ ଭାବରେ ପରିଣତ ଅବସ୍ଥାରେ ଉଭରି ପାରିନାହିଁ । ଅନ୍ୟକଥାରେ କହିଲେ ସମସ୍ୟାର ପ୍ରେକ୍ଷାପଟ ଓ ଅଭିଜ୍ଞତାର ତୀବ୍ରତା ପ୍ରତ୍ୟେକ ସଂକଳନରେ ଶ୍ରୀ ମିଶ୍ରଙ୍କୁ ଅଲଗା କରିଛି ଏବଂ ଏକ ଏକ ବ୍ୟତିକ୍ରମ ଭାବରେ ଠିଆ କରାଇଛି । ପୁନଶ୍ଚ ଶ୍ରୀ ମିଶ୍ରଙ୍କ ସ୍ୱର ଆଉ

୪ । ଉତ୍ତର ସତୁରିର ଓଡ଼ିଆ କବିତା : ଏକ ସ୍ମାରକ ଚିନ୍ତା, ଇସ୍ତାହାର—୧୯୭୪

କିଛି କହିବା ପାଇଁ ଏକ ବିଶେଷ ପରିବର୍ତ୍ତନକୁ ଅପେକ୍ଷାକରି ବସିଥିବା ମନେହୁଏ । ପରୀକ୍ଷାନିରୀକ୍ଷାର ଚେଷ୍ଟା ଭିତରେ ପ୍ରତ୍ୟେକ ସଙ୍କଳନରେ ନିର୍ଦ୍ଦିଷ୍ଟ କେତେଗୋଟି କବିତା ଖୁବ୍ ସଫଳ ଓ ପ୍ରତିନିଧିମୂଳକ ହୋଇଥିବା ବାରିହୋଇପଡ଼େ ଏବଂ ଅନ୍ୟାନ୍ୟ ସମସ୍ତ ସୃଷ୍ଟି ତାକୁ କେନ୍ଦ୍ରକରି ଘୂରୁଥିବା ପରି ଜଣାଯାଏ । 'ନଈପହଁରି' ଏବଂ ତତ୍ପରବର୍ତ୍ତୀ କବିତାରେ ଶ୍ରୀ ମିଶ୍ର ଇଙ୍ଗିତ ଓ ସୂଚନାଧର୍ମୀ ହୋଇଛନ୍ତି । ୧୯୭୭ରେ ପ୍ରକାଶିତ କାବ୍ୟ-ଗ୍ରନ୍ଥ 'ଅନ୍ଧ ମହୁମାଛି' ଶ୍ରୀ ମିଶ୍ରଙ୍କ କାବ୍ୟଜୀବନର ଏକ ବଳିଷ୍ଠ ସିଂହଦ୍ୱାର । ଏଠି କାବ୍ୟ-ମାନସ ଏକ ପରିଚ୍ଛନ୍ନ ଓ ପରିଣତ ରୂପ ଗ୍ରହଣ କରିଛି । ଗଦ୍ୟର ଗୈରିକତା ହ୍ରାସ ପାଇଛି । ଶବ୍ଦ ନିର୍ବାଚନରେ ପରିପକ୍ୱତା, ଭାଷା ବ୍ୟବହାରରେ ଅସମ୍ଭବ ମିତତା, ଚିତ୍ରକଳ୍ପ ପ୍ରୟୋଗରେ ତୀକ୍ଷ୍ଣତା, ଆବେଗର ଗାମ୍ଭୀର୍ଯ୍ୟ ଏ ସଙ୍କଳନର ପ୍ରାୟ ପ୍ରତ୍ୟେକ କବିତାକୁ ଆନ୍ତରିକତାରେ ସମୃଦ୍ଧ କରିଛି, ପ୍ରଖର ଜୀବନୀଶକ୍ତି ଓ ପ୍ରାଣପ୍ରାଚୁର୍ଯ୍ୟ ଦେଇଛି । ଏଠି ପାଠକ ସହିତ ପ୍ରତ୍ୟକ୍ଷ ଯୋଗାଯୋଗର ବାଟ ଭଲ ଭାବରେ ଫିଟିଛି ବୋଲି କୁହାଯାଇ ପାରେ । 'ନଈପହଁରି' (୧୯୭୩) ରୁ 'ଅନ୍ଧ ମହୁମାଛି' (୧୯୭୭) ଯାଏଁ ଏଇ ୪।୫ ବର୍ଷର ସମୟସୀମା ଭିତରେ ଶ୍ରୀ ମିଶ୍ରଙ୍କ କବିତାର ଅଙ୍ଗ ଓ ଆତ୍ମାରେ ସବୁଠୁଁ ଉଲ୍ଲେଖଯୋଗ୍ୟ ବିକାଶ ଓ ପରିବର୍ତ୍ତନ ସଂଘଟିତ ହୋଇଛି ବୋଲି କହିବାକୁ ହେବ । ଏଇ ପର୍ଯ୍ୟାୟରେ ଶ୍ରୀ ମିଶ୍ର ବେଶ୍ କିଛି ହଇଚଇ ସୃଷ୍ଟି କରିଛନ୍ତି ଓ ଅଭୂତ ସିଦ୍ଧି ହାସଲ କରିଛନ୍ତି । ତାଙ୍କ ଭାଷା ମାର୍ଜିତ, ବିଭବବନ୍ତ ହୋଇଛି, ଆବେଗ ସୁନିୟନ୍ତ୍ରିତ ହୋଇଛି । ପଙ୍କ୍ତି ପଦ୍ୟବଦ୍ଧ, ଧ୍ୱନି ସଙ୍ଗୀତାନୁସାରୀ, ଶବ୍ଦ ବେଶ୍ ବିଚ୍ଛୁରଣକ୍ଷମ ତଥା ଆବେଦନ ଜୀବନଭିତ୍ତିକ ଓ ହୃଦ୍ୟ ହୋଇଅଛି । 'ନଈପହଁରି'ର ଜଟିଳ ବିଷଣ୍ଣତାବୋଧ କଟିଯାଇଛି । ଜୀବନ, ପୃଥିବୀ, ଈଶ୍ୱରଙ୍କ ପ୍ରତି ତୀକ୍ଷ୍ଣ ବ୍ୟଙ୍ଗ ଓ ଶ୍ଳେଷ ପ୍ରକଟିତ ହୋଇଛି । କାବ୍ୟପୁରୁଷ ଅଧିକ ସମ୍ବେଦନଶୀଳ ହୋଇଛି । ସ୍ୱରର ବଳିଷ୍ଠତା ଦୃଷ୍ଟିରୁ 'ଅନ୍ଧ ମହୁମାଛି' ଶୀର୍ଷକ କବିତାଟି ଏ ଦିଗରେ ଏକ ଦୃଢ଼ ଉଦ୍‌ଘୋଷଣା । କହିବାର ଭଙ୍ଗୀରେ ନିବିଡ଼ ଆତ୍ମୀୟତା, ଶବ୍ଦର ଧ୍ୱନିବୈଭବରେ ପ୍ରଚୁର ଶକ୍ତିମତ୍ତା ଏବଂ ନାଟକୀୟ ଉପସ୍ଥାପନା 'ଅନ୍ଧମହୁମାଛି' କାବ୍ୟ-ଗ୍ରନ୍ଥକୁ ବେଶ୍ ଆତ୍ମିକ କରିପାରିଛି । କବିମନ ଏ ପର୍ଯ୍ୟାୟରେ ସମାଜମୁଖୀ; ଏବଂ ଲଘୁ ପରିହାସର ସ୍ୱର ସବୁଠି ଉତ୍କଣ୍ଠି । 'ଅନ୍ଧ ମହୁମାଛି' ଗ୍ରନ୍ଥର ପରବର୍ତ୍ତୀ କବିତାଗୁଡ଼ିକରେ ମଧ୍ୟ ଏହି ସହିନେବା ଓ ଆତ୍ମସ୍ଥ ହେବାର ଭାବ ବେଶ୍ ଲକ୍ଷ୍ୟ କରାଯାଏ । ଶ୍ରୀ ମିଶ୍ର ଏକ ନିର୍ଦ୍ଦିଷ୍ଟ ଉଚ୍ଚତାକୁ ଉଠିଛନ୍ତି ଏବଂ ସମାଲୋଚନା ପ୍ରତି ଅଧିକ ସଚେତନ ମଧ୍ୟ ହୋଇଛନ୍ତି । ତାଙ୍କ ଭାଷା ବ୍ୟବହାରରେ ଅଭୂତ ବଳିଷ୍ଠତା ଓ ବିଶ୍ୱାସ ପ୍ରକାଶ ପାଇଛି । ଏ ପ୍ରସଙ୍ଗରେ ଶ୍ରୀ ପ୍ରଫୁଲ୍ଲ କୁମାର ମହାନ୍ତିଙ୍କ ମତ ଉଲ୍ଲେଖଯୋଗ୍ୟ । "ସୌଭାଗ୍ୟ ମିଶ୍ରଙ୍କର ପରବର୍ତ୍ତୀ କବିତାଗୁଡ଼ିକୁ ଲକ୍ଷ୍ୟ କରିବାକୁ ହେବ । ତାଙ୍କ ଭାଷାରେ ଯେଉଁ ସମ୍ଭାବନା ରହିଛି ଭବିଷ୍ୟତରେ ସେ କିଛି ମାର୍ଗ ଦେଇପାରିବେ ବୋଲି ଆଶା କରାଯାଇ ପାରେ । ତରୁଣ କବିଗୋଷ୍ଠୀ ମଧ୍ୟରେ ସେ ବୋଧହୁଏ ଏକମାତ୍ର କବି ଯେ ଭାଷାକୁ ସ୍ୱଚ୍ଛନ୍ଦ ଗତି ଦେଇଛନ୍ତି ଏବଂ

ବୌଦ୍ଧିକତା ଓ କୃତ୍ରିମତାଠାରୁ ପ୍ରାୟ ଦୂରେଇ ରଖିଛନ୍ତି ।" (୫) ସଂକ୍ଷିପ୍ତରେ ସୌଭାଗ୍ୟ କୁମାର ମିଶ୍ରଙ୍କ କାବ୍ୟଚେତନାର ବିକାଶକୁ ଏହିପରି ଭାବରେ ଦର୍ଶାଯାଇପାରେ ।

**ଦୁଇ :**

କବି ସୌଭାଗ୍ୟ କୁମାର ମିଶ୍ର ତାଙ୍କ ବିଭିନ୍ନ ସଂକଳନରେ ଏକ ଏକ ପୃଥକ୍ ବ୍ୟକ୍ତିତ୍ୱ ରୂପେ ଆତ୍ମପ୍ରକାଶ କରିଛନ୍ତି । ଏହାର କାରଣ ବୟଃବୃଦ୍ଧି, ଅନୁଭବ ଓ ଅଭିଜ୍ଞତାର ପରିପକ୍ୱତା ଏବଂ କାବ୍ୟଚେତନାର ଏକ ସ୍ୱାଭାବିକ ଓ ଉଲ୍ଲେଖଯୋଗ୍ୟ ବିବର୍ତ୍ତନ । ସେ ପ୍ରୟୋଗବାଦୀ ଓଡ଼ିଆ କାବ୍ୟଧାରାର ଅନ୍ୟତମ ପ୍ରବର୍ତ୍ତକ । କାବ୍ୟ-ଚେତନାର ସ୍ୱର ମୁଖ୍ୟତଃ ବେଦନାବୋଧ, ଜିଜ୍ଞାସା, ପରିବର୍ତ୍ତନକୁ ନେଇ ଆଧାରିତ । ଓଡ଼ିଆ କାବ୍ୟପରମ୍ପରାରୁ ସେ ଭିନ୍ନ ନହେଲେ ମଧ୍ୟ ସ୍ୱତନ୍ତ୍ର । ଭାରତୀୟ ସଂସ୍କୃତି ଓ ପରମ୍ପରା ତାଙ୍କୁ ବିଶେଷ ଭାବରେ ଆକର୍ଷଣ କରି ପାରିନାହିଁ । ଯୁଗ ଓ ଜୀବନକୁ ଅନୁଭବ କରିଛନ୍ତି ସମକାଳୀନ ପ୍ରେକ୍ଷାପଟରେ । ମୁଖ୍ୟତଃ ଏଲିଅଟୀୟ ବେଦନାବୋଧ ତାଙ୍କ ରଚନାରେ ବିଚ୍ଛୁରିତ । କୌଣସି ବିଶିଷ୍ଟ ଦର୍ଶନ ପ୍ରତି ତାଙ୍କର ବଳିଷ୍ଠ ସମର୍ଥନ ଲକ୍ଷ୍ୟ କରାଯାଇ ନାହିଁ ।

ଆଧୁନିକ ମଣିଷର ସମସ୍ୟା କୈନ୍ଦ୍ରିକ ଜୀବନର ଅସହାୟତା, ସ୍ୱପ୍ନଭଙ୍ଗ, ଅନିଶ୍ଚିତତା ଦ୍ୱାରା କବି ବ୍ୟସ୍ତ ଓ ବିବ୍ରତ । ଜୀବନ ଠିଆ ହୋଇଛି ସବଂସ କବିଙ୍କ ସାମ୍ନାରେ; ବଡ଼ ନିରାଶ୍ରୟ, ଅନିଶ୍ଚିତ ଜୀବନ । ସମୟର ଦଗାବାଜି ପ୍ରତ୍ୟେକ ସ୍ୱପ୍ନକୁ, ସମ୍ଭାବନାକୁ ଧୂଳିସାତ୍ କରୁଛି । ମନୁଷ୍ୟକୁ ତା'ର ପ୍ରବୃତ୍ତି ପତନର ପଥଆଡ଼କୁ ଟାଣି ନେଇଯାଉଛି । ତା'ପାଇଁ ପାପପୁଣ୍ୟର ଅର୍ଥ ଭିନ୍ନ, ଜୀବନର ସଂଜ୍ଞା ବି ଭିନ୍ନ । 'ଶୁକଦେବ ଜେନା'ରେ ପାପଗ୍ରସ୍ତ ନାୟକର ସଂସାରକାମୀ ମନ ତାକୁ ପଳପଳ ଦଗ୍ଧ କରୁଛି । ନା ସେ ଦେହ ସମ୍ଭୋଗକୁ ବରି ନେଉଛି ନା ତହିଁରୁ ଉତ୍ତୀର୍ଣ୍ଣ ହୋଇ ଅନ୍ୟ ଏକ ସ୍ତରକୁ ଯାଇ ପାରୁଛି । ପ୍ରତି ମୁହୂର୍ତ୍ତରେ ଜୀବନ୍ତ ମରଣକୁ ସାମ୍ନା କରୁଥିବା ମଣିଷ ପାଇଁ ଏକ ପ୍ରତିଷ୍ଠିତ ମୂଲ୍ୟବୋଧ ପ୍ରତି, ବିଶ୍ୱାସପୂର୍ଣ୍ଣ ଆଦର୍ଶପ୍ରତି ଆସ୍ଥା ନାହିଁ । ମୃତ୍ୟୁର ଭୂମିକା ବି ଏଠାରେ ଗୌଣ । କାବ୍ୟନାୟକର ଦ୍ୱନ୍ଦ୍ୱ ଓ ଶଙ୍କିତ ସ୍ୱର ଏବଂ ସ୍ୱୀକାରୋକ୍ତିର ଭାଷା ଏଇପରି—

"ଆଉ ପୁଣି କେଉଁ ସ୍ୱୀକୃତିରେ
ପୁଣି ଥରେ ବିସର୍ଜନ ? ଆଉ ଥରେ ସେ କେଉଁ ଡାକ୍ତରଖାନା
ଆଉ ପୁଣି କେଉଁ ମୁକ୍ତି ? ଆଉ କେଉଁ ଶୁକଦେବ ଜେନା ?"

---

(୫) ଆଧୁନିକ ଓଡ଼ିଆ କବିତାର ଭାଷା : ପ୍ରଫୁଲ୍ଲ କୁମାର ମହାନ୍ତି,
ଝଙ୍କାର, ୨୬ଶ ବର୍ଷ, ୬ଷ୍ଠ ସଂଖ୍ୟା ।

ଏଇ ବେଦନାବୋଧ ଓ ଅକପଟ ସ୍ୱୀକାରୋକ୍ତିର ଝଲକ, 'ନୀଳମାଳ ୧୯୭୧'ରେ ଲକ୍ଷ୍ୟ କରାଯାଇପାରେ । ଆଦିମ ଜନ୍ତୁର ସୌନ୍ଦର୍ଯ୍ୟ ମର୍ତ୍ତ୍ୟ ମଣିଷର ପ୍ରବୃତ୍ତିକୁ ପ୍ରଲୋଭିତ କରେ । ସୌନ୍ଦର୍ଯ୍ୟ ଓ ପବିତ୍ରତାକୁ ସେ ଧର୍ଷଣ କରେ । ଶୁଭ ବିଶ୍ୱାସ ଓ କଲ୍ୟାଣ ଚେତନା ପ୍ରତିଷ୍ଠା ପାଇଁ ଏ ଭୂଇଁରେ ମହାପୁରୁଷ ଅବତରଣ କରି ଏଥିଲାଗି ଲଜ୍ଜିତ ହୁଅନ୍ତି । ନୈତିକ ଅଧଃପତନ ଓ ପାପଗ୍ରସ୍ତ ନାୟକ "କ୍ଷୁଧା ଆମର/ପରମ୍ପରାସିଦ୍ଧ ସଂପତ୍ତି/ ଲୋଭ ଆମର/ଜନ୍ମଗତ ଅଧିକାର/ହିଂସା ରକ୍ତର କଣିକା"ର ଦୋହାଇ ଦେଇ ତାର କୃତ ଅପକର୍ମ ପାଇଁ ବିଶ୍ୱାସ ଠୁଳକରି ପାରେନା । ମୁକ୍ତି ପାଗଳ କାବ୍ୟନାୟକ ଉତ୍ତରଣ ଖୋଜିଛି ଏଇପରି—

"ଯଦି ପାରୁ ତ ନିଜକୁ ନିଜେ କ୍ଷମା କରିଯା'
ତୋ'ର କରୁଣ ଚପଳ ଆଲିଙ୍ଗନର ସୀମା ଚିହ୍ନିତ କରିଦେ ।"

ତା'ର ମୂଲ୍ୟବାନ ଚର୍ମ ଚକ୍ଷୁଦ୍ୱୟର ବିଲୟ ପାଇଁ ସେ ଆଦିମ ଜନ୍ତୁମାନଙ୍କୁ ପ୍ରାର୍ଥନା କରେ । ପ୍ରାଗୈତିହାସିକ ଶେଷ ପର୍ବରେ ନେଇ ଆଲୋକର ସ୍ପର୍ଶ ଅନୁଭବ କରିବାକୁ ଆଗ୍ରହୀ । ଅନ୍ୟପକ୍ଷରେ ଏ "ଚେତନାର ସ୍ତର"କୁ ଛାଡ଼ି "ଜୀବନ"କୁ ଆଲୋଚନାଭୁକ୍ତ କରାଯାଉ । ଆଧୁନିକ ମଣିଷର ଜୀବନ-ବିଡ଼ମ୍ବନାର କରୁଣ ସ୍ୱର ଆମେ 'ନଷ୍ଟପଦ୍ମିନୀ'ରେ ଲକ୍ଷ୍ୟ କରିପାରିବା । ବଡ଼ ଅନାକର୍ଷଣୀୟ ଜୀବନ । ପାରିବାରିକ ଓ ସାମାଜିକ ଜୀବନରେ ସ୍ନେହ ପ୍ରେମର ଚିହ୍ନ ନାହିଁ । କୂଳ ପାଉନଥିବା ନାୟକ ବାରମ୍ବାର ଡେଉଁଛି ଅସ୍ଥିରତା ଓ ଅନିଶ୍ଚିତତାର ସ୍ରୋତ ଭିତରକୁ । ତା'ର ଆଧ୍ୟାତ୍ମିକଶୋଷର ଉପଶମ ନାହିଁ ! "କୂଳରେ ଆଉ ଅଛି କ'ଣ ? ଆ' ଡେଇଁ ପଡ଼ିବା ପାଣିକି"ର ଅସମାଧିତ ଉତ୍ତର "ଏତିକିରେ ମନ ଯେବେ ଶାନ୍ତ ହେଉ ନାହିଁରେ ପାଷଣ୍ଡ/କୂଳକୁ ଆ' ପୁଣି ବାଟି ଫିଙ୍ଗି ଦେ' ଦେ', ସ୍କୁଲ ଘଣ୍ଟା ଡାକ ନେଇଥିବା ଦଳେ ପିଲା/ଗୁଡ଼ି ଯାଇଥିବା ବିମର୍ଷ ଗାତକୁ ।"—ପୁଣି ସେଇ ମାୟାର ପୃଥିବୀ, ଅସ୍ଥିରତା ଓ ଚିରଚଳିତ ସମ୍ଭୋଗର ବୃତ୍ତ । 'ସକାଳ' କବିତାରେ ପୁଣି ସେଇ ବ୍ୟାକୁଳତାର ସ୍ୱର । ଚିନ୍ତାନୁଚିନ୍ତନ କୋଳାହଳରେ ପୃଥିବୀ ଭର୍ତ୍ତି । ଏଠି ଭ୍ରମରେ ଅନ୍ୱେଷା କେନ୍ଦ୍ର ଛୁଏଁନାହିଁ, ସତ୍ୟର ହାତ ଛୁଇଁ ହୁଏ ନାହିଁ, ଶିଶିରବିନ୍ଦୁ ଶିରବିନ୍ଦୁରେ ରୂପାନ୍ତରିତ ହୋଇପାରେ ନାହିଁ । କାବ୍ୟନାୟକର ଶ୍ଳେଷାତ୍ମକ ସ୍ୱର ଏଇପରି—

"ଅଯୋଗ୍ୟ ଏ ମାଟି ଓ ଝାଉଁଗଛ, ଘର ଓ ସମୁଦ୍ର
ଅଯୋଗ୍ୟ ଏ ଲାଲସା, ଏ ଦେହର, ହାତର, ପଲଙ୍କର
ଅଯୋଗ୍ୟ ସହର, ଜାତି, ଇତିହାସ, ଅଯୋଗ୍ୟ ଏ ଗ୍ରହ ।"

କିମ୍ବା

"ଦେହହୀନ ଆଲୋକ/ହସ୍ତପଦ ହୀନ ଇଚ୍ଛା/ମୃତ୍ୟୁହୀନ ବିରକ୍ତି/ଉଦ୍ଦେଶ୍ୟହୀନ ଯାତ୍ରା" (ଯାତ୍ରା ସଙ୍ଗୀତ) ।

'ଅନ୍ଧ ମହୁମାଛି' କବିତାରୁ ଏଇ କ୍ଳାନ୍ତ, ନୈରାଶ୍ୟବୋଧ ଓ ପ୍ରବୃତ୍ତିଜନିତ ନିଂସ୍ବାର ଶ୍ଳେଷାତ୍ମକ ଚିତ୍ରପାଇଁ ନିମ୍ନ ପଂକ୍ତିକୁ ଉଦ୍ଧାର କରିବା । "ଶୃଙ୍ଖଳ ସାଇକେଲର କେଁ କଟର ଶବ୍ଦରେ/ବୁଝିହୁଏ ନାହିଁ କି ବୁଢ଼ା ପିଅନକୁ ଭଣଜାର ଆତ୍ମହତ୍ୟାର ନିଶ୍ଚିତ କାରଣ" କିମ୍ବା 'ବୋକା ଇନ୍ଦ୍ରିୟମାନଙ୍କୁ ପରେଡ୍‌ରେ ଠିଆ କରି କମାଣ୍ଡ ଦିଅ ।' 'ଦୁଃଖ କ'ଣ ?' 'ଦୃଶ୍ୟାନ୍ତର' ଓ 'ଜୀବନ ଚିନ୍ତା' ଆଦି କବିତା ଲୋଭ, ମୋହ, ସ୍ବାର୍ଥପରତାର ପୃଥିବୀ ସପକ୍ଷରେ ସାକ୍ଷ୍ୟ ଦିଅନ୍ତି । 'ମୁଁ ହିଁ ଦୁଃଖ' କିମ୍ବା "ରୋଗ କ'ଣ ? ଭୀଷଣ ଓ ଭୟଙ୍କର ଜୀବନ, ଜୀବନ" କିମ୍ବା "ନିସ୍ପୃମନାନୁନ ମୋତେ ଜଣା ନାହିଁ ପ୍ରଭୁ/ଯାହା ମୋର ଲୋଭ ମୋର ଯାହା ପଣତତ/ଗୋଟାଇ ଆଣିଚ ନୂଆ ବୟସ ସୀମାକୁ/ଜଗୁଆଳ ଅନ୍ୟଆଡ଼େ ଗୃହିଁଥିଲ ବେଳେ ।" କିମ୍ବା "ଭୁଲ୍ ଆଉ ପାପର ତାରବାଡ଼ ଘେରା/ଏ ଦେହ ଡାକବଙ୍ଗଳା" ଆଦି ପଂକ୍ତିରେ ପ୍ରବୃତ୍ତି ଓ ସ୍ୱାର୍ଥପୀଡ଼ିତ ମଣିଷର ସ୍ୱରୂପ ସ୍ପଷ୍ଟ ହୋଇଛି ।

ଆମର ପାପପୁଣ୍ୟ, ସୁଖଦୁଃଖ ସମ୍ପର୍କରେ ସବୁ ଗତାନୁଗତିକ ଫର୍ମୁଲା ଯେମିତି ଅକାମୀ ହୋଇପଡ଼ିଛି । 'ଆଠଜଣ ଯୁବକ' କବିତାରେ କମ୍‌ମୋପଲିଟାନ ସଭ୍ୟତାର ଚିତ୍ର ପ୍ରାଞ୍ଜଳ ରୂପ ଘେନିଛି । ଦୁର୍ଗନ୍ଧ, ଅବିଶ୍ୱାସ ଓ ଅତ୍ୟାଗ୍ରହପିଷ୍ଟ ସମୟ ଓ ପୃଥିବୀ ସେମାନଙ୍କୁ ଆକର୍ଷଣ କରିପାରୁ ନାହିଁ । ସତ୍ୟ କେଉଁଠି ଲୁଚିଯାଇଛି । ମଣିଷର ମସ୍ତିଷ୍କରେ, ହୃଦୟରେ କେଉଁଠି କଳଙ୍କ୍ ଲାଗିଯାଇଛି । ଆନ୍ତରିକତା ବଦଳରେ ଘୃଣା, ଈର୍ଷା, ବୈରାଗ୍ୟବୋଧ ଗାଦିମାଡ଼ି ବସିଛି । ଏସବୁ ସତ୍ତ୍ୱେ ଶ୍ରୀ ମିଶ୍ର ଶୁଭ ବିଶ୍ୱାସୀ । ସେ ଅମୃତର ପ୍ରତ୍ୟାଶା ରଖିଛନ୍ତି । ଫେରି ପାଇବାର ସମ୍ଭାବନା ବଞ୍ଚି ରହିଛି । 'ଅନ୍ଧ ମହୁମାଛି'ରେ କାବ୍ୟନାୟକ ଆହ୍ୱାନ ଜଣାଇଛି ପ୍ରତି ମଣିଷକୁ—ତା'ର ସତ୍ତାକୁ, ବିଶ୍ୱାସ-ବୋଧକୁ । ଏକ ଉପାୟହୀନ ସାଲିସ୍ । ସୃଷ୍ଟିକୁ ନିଜ ଭିତରେ ଧରି ରଖିବା, ଭଲ ପାଇବା ଏବଂ ଆପଣାର କରିନେବା ହିଁ ଏକମାତ୍ର ସମାଧାନ । ମାଟି, ପଥର, ପାଣି, ପବନ, ଗଛଲତା, ଦେହ, ଆଲୋକ-ଅନ୍ଧକାର, ସୁଖ-ଦୁଃଖ, ପାପ-ପୁଣ୍ୟ, ହସ-କାନ୍ଦ, ଭଲ-ମନ୍ଦ ସବୁଠି, ସବୁର ଊର୍ଦ୍ଧ୍ୱରେ ମହନୀୟ ସୃଷ୍ଟିର ସୌନ୍ଦର୍ଯ୍ୟକୁ ଅନୁଭବ କରିବାକୁ ପଡ଼ିବ । ତୁଚ୍ଛାତିତୁଚ୍ଛ ପଦାର୍ଥକୁ, ଗନ୍ଧକୁ ନିଶ୍ୱାସରେ ଉଠାଇ ନେବାକୁ ହେବ ବିନା ଯୁକ୍ତିରେ ଓ ଦ୍ୱିଧାବିରେ । 'ଏ ସୃଷ୍ଟି ଅମୃତମୟ ହେଉ'ର ଆଧୁନିକ ଓ ପରିବର୍ତ୍ତିତ ସଂସ୍କରଣ 'ଅନ୍ଧ ମହୁମାଛି' । ଶ୍ରୀ ମିଶ୍ରଙ୍କ ଭାଷାରେ କଟକରୁ, କଦମ୍ବରୁ, ଖଟରୁ, ଖେଳାରୁ, ଗୁମାନରୁ, ଗରୁଡ଼ସ୍ତମ୍ଭରୁ ଆରମ୍ଭ କରି 'ସବୁଠି ମହୁ/ଫୁଲରେ ଓ କୁଷ୍ଠରୋଗୀର ଘା'ରେ ।' ଆତ୍ମସମାହିତ ଆତ୍ମ ସମୀକ୍ଷାର ବ୍ୟାକୁଳ ଭିତର ହୃଦ୍ୟତା, ଆଧାତ୍ମିକ ଆତ୍ମହା ପ୍ରତି ଆସ୍ପଷ୍ଟ ସ୍ୱର ଅମୃତ ଓ ଆଲୋକର ଅପେକ୍ଷା ରଖେ । ଉଲ୍ଲେଖଯୋଗ୍ୟ ପଂକ୍ତିଟି ଏହିପରି—

'ଅନ୍ଧ ମହୁମାଛି/ଝିଙ୍ଗୁଆ', ଗୁଲୁଆ', ଗୁଲୁଆ'
କିଛି ଦେଖ୍‌ନା, ଦେଖ୍‌ନା, ଦେଖ୍‌ନା,
ଯାହା ପାରୁଛୁ ଶୁଣୁ ପୂରାଇ ଘେଷ୍ଟିପିନେ', ଘେଷ୍ଟିପିନେ ।
ହିସାବ ହେବ ପରେ ।"

ଛଅ :

ସୌଭାଗ୍ୟ ମିଶ୍ରଙ୍କ କବିତାର ଭାବଚେତନାର ନିର୍ଦ୍ଦିଷ୍ଟତା ଓ ବିକାଶ କଳନା କରିବା ଆୟାସସାଧ୍ୟ । କିନ୍ତୁ ଆପାତତଃ ବିରୋଧୀ ଓ ସଂଶୟାଚ୍ଛନ୍ନ ଚିନ୍ତାଧାରା ଉପରେ ତାଙ୍କର କାବ୍ୟସୌଧ ନିର୍ମିତ । ପ୍ରତ୍ୟେକ ସଙ୍କଳନରେ ସେ ଭିନ୍ନଭାବରେ ଉପସ୍ଥିତ ହୋଇଛନ୍ତି । ତେବେ ତାଙ୍କ କବିତାର ମୁଖ୍ୟ ସ୍ୱର ପ୍ରେମ, ସମୟ ଓ ମୃତ୍ୟୁସଂପର୍କିତ ଦାର୍ଶନିକ ଅବବୋଧ ଏବଂ ଈଶ୍ୱରଚେତନା । ଏସବୁର ଅନ୍ତରାଳରେ ଯୁଗମାନସର ଅସହାୟ ସ୍ୱର ଉତ୍‌କୀର୍ଣ୍ଣ । ପ୍ରଖର ଜୀବନବୋଧ, ଶାଣିତ ଶ୍ଳେଷ, ମୁକ୍ତିପାଇଁ ବ୍ୟାକୁଳତା, ସମ୍ବେଦନାର ପ୍ରଚଣ୍ଡ ଆକୂତି ଏବଂ ମନସ୍ତାତ୍ତ୍ୱିକ ଅଭିନିବେଶରେ ତାଙ୍କର ଭାବଚେତନା ସମୃଦ୍ଧ । ସର୍ବୋପରି ଜୀବନର ଏକ ଦାର୍ଶନିକ ଉପଲବ୍ଧି ତାଙ୍କ ଭାବଚେତନାର ମୁଖ୍ୟ ପ୍ରତିପାଦ୍ୟ ସ୍ୱର ।

[କ] ପ୍ରଥମେ ପ୍ରେମାବେଗର ବିଚାର କରାଯାଉ । 'ଆତ୍ମନେପଦୀ' ( ୧୯୬୫) ଏବଂ 'ଅନ୍ଧ ମହୁମାଛି' (୧୯୭୭) କାବ୍ୟଗ୍ରନ୍ଥରୁ ଏ ଅଧ୍ୟୟନ କରାଯାଇପାରିବ । ଯଦିଓ 'ମଧ୍ୟପଦଲୋପୀ'ରେ ରୋମାଣ୍ଟିକ ଭାବଚେତନାର ଅବଶେଷ ଅବଶ୍ୟ ଲକ୍ଷିତ । ପ୍ରେମାନୁ-ଭବରେ ଦେହର ଭୂମିକା ଗୌଣ ନୁହେଁ, ବରଂ ପ୍ରଥମ । ପରେ ମନ ଓ ହୃଦୟର କଥା ବିଚାର୍ଯ୍ୟ । ଆତ୍ମନେପଦୀରୁ ପ୍ରାଥମିକ ଅପରିଣତ ପ୍ରେମଚେତନାର ଭାବପ୍ରବଣତା ବା ଆବେଗର ପ୍ରାବଲ୍ୟ ପରେ ଏକ ଗମ୍ଭୀର ପରିଣତ ରୂପ ନେଇଛି, ନେବାଇ ସ୍ୱାଭାବିକ । ପ୍ରାଥମିକ ଚେତନା ନାୟିକାର ରୂପବିଭବ ପ୍ରତି ଆକର୍ଷଣ, ବିଚ୍ଛେଦଜନିତ ଝୁରିହେବା ଭାବ, କଳ୍ପନା ଓ ଆବେଗର ସମ୍ମିଶ୍ରଣରେ ଋଦ୍ଧିମନ୍ତ । କିନ୍ତୁ ଆଲୋଚିତ 'କୃଷ୍ଣଚୂଡ଼ା' କବିତାରେ ଏକ ପୂର୍ଣ୍ଣଯୌବନା ନାରୀର ମନପ୍ରାଣ ଲଭିବାକୁ ବ୍ୟାକୁଳ କାବ୍ୟପୁରୁଷ ଏଠି 'ଯୌବନ' ଝିଙ୍ଗିଡ଼ିଦିବାକୁ ଚାହିଁ ନାହିଁ । 'ତୁମ ନାଁ' କବିତାରେ ଅହରହ ଜ୍ୱଳନକୁ ସେ ଅଙ୍ଗେ ଲଭିଛନ୍ତି । ପୁଣି 'ହାତ' କବିତାରେ ଆତ୍ମସମର୍ପଣର ତୀବ୍ରତା ପ୍ରେମିକାକୁ ନିବିଡ଼ ଭାବରେ ଅନୁଭବ କରିବାକୁ ଦେଇଛି "ତୁମ ହାତ ଶରୀରର ନଦୀ/ସ୍ୱଚ୍ଛ ଓ ସହଜ ଯେଉଁଠି ମିଶେ ମୋର ତୃଷ୍ଣାର ସଙ୍ଗତ" । 'ମେଘ', 'ବର୍ଷା', 'କିରଣ', 'ଶ୍ରାବଣ' ଆଦି କବିତାରେ ବିଚ୍ଛେଦାନୁଭୂତିର ପଂକ୍ତିଗୁଡ଼ିକ ଆବେଗସିକ୍ତ । ଅନୁଭବର ପ୍ରାକୃତିକତା ଓ ଋତୁକାଳୀନ ଦେହ ତଥା ବିଦେହାନୁଭବର ରୋମାଣ୍ଟିକ୍ ସ୍ୱର ଏ କବିତାମାନଙ୍କରେ ଉତ୍‌କୀର୍ଣ୍ଣ । ବାଂଛିତଭାବେ ସମୃଦ୍ଧ 'ଆଖି' କବିତାକୁ ନିଆଯାଉ । ରୋମାଣ୍ଟିକ ପରିବେଶର ଚିତ୍ର

ଏହିପରି "ଷ୍ଟ୍ରେଟ ଷ୍ଟ୍ରେଟ କଣ୍ଟା ପଥର ପାପୁଲିରେ ଜନ୍ମର ହରିଗଉଥିବ ଛବି ।" ପ୍ରେମିକାର ସମର୍ପଣର ଭାଷା ଏଇମିତ ହୁଅନ୍ତାନ୍ତ (!): "ଦୁଇଟି ଷ୍ଟ୍ରେଟ ତଙ୍ଗା ପରି/ସେ ଆଖି ଯଦି ଭସିଆସନ୍ତା/ସମୁଦ୍ରର ଭିତରେ/ଆଉ ନୁଅନ୍ତା ମୋ ତୃଷ୍ଣିତ ହାତଗନ୍ତ"— ଚିତ୍ରକଳ୍ପଟି ବେଶ୍ ଉପଭୋଗ୍ୟ । ଅନ୍ୟ ଏକ ଚିତ୍ରକଳ୍ପରେ ବର୍ଷା ଚେତନା ଏଇପରି "ମୋ ନଦୀର ଓଠ ବେଳ ବର୍ଷା ଆଜି ମୋଡ଼ି ଦେଲା/ବର୍ଷା ଆଜି ତେଜିଦେଲା ଏ ମନରେ ସ୍ମୃତିର ହଳନ୍ତା ।" 'ମଧ୍ୟପଦଲୋପୀ'ରେ ପ୍ରେମାନୁଭବ ଦେହାନୁଭୂତିରେ ସୀମାସ୍ଥିତ । 'ସ୍ୱଦାସ୍ଥ-୧', 'ସ୍ୱଦାସ୍ଥ-୨' ରେ ଏକ ବ୍ୟାକୁଳ ସ୍ୱତନ୍ତ୍ରତା ପ୍ରେମାବେଗକୁ କାବୁ କରିଛି । ଅଭିଯୋଗ ନାହିଁ, ଅଭିମାନ ନାହିଁ, ନାହିଁ ବାଧ୍ୟବାଧକତାର ଭାଷା । 'ଆତ୍ମନେପଦୀ'ର 'ବସନ୍ତ' କବିତାରେ ପ୍ରବୃତ୍ତିର ସ୍ୱାଭାବିକତା ଓ ତୀବ୍ରତା ଋତୁର ଚିତ୍ର-ଚେତନାରେ ପ୍ରକାଶିତ । ରୋମାଣ୍ଟିକ ବେଦନାବୋଧ ନାୟକଙ୍କୁ ଆକ୍ରାନ୍ତ କରିଛି । ପୁଣି 'ଅନ୍ୟ ଏକ ବସନ୍ତ' କବିତାରେ ଦେହାନୁଭବର ଚିତ୍ର ଏଇମିତି, "ବସନ୍ତମାନେ କୌଣସି ନଈ ପାରହେବା/ସେ ପାଖରୁ ଏ ପାଖକୁ ଆସିବା/ଦେହର ମଶାଣି ଦାଢ଼େ ନିଜ ନିଜ ଆଖିକୁ ଖୁମ୍ପିବା/ନିଜରକ୍ତ ଚାଖିବାର ଏ ପ୍ରଶସ୍ତ କାଳ/ଉତ୍ସାନନ୍ଦ ଋତୁ/ଆଉ କେହି ନାହିଁ/ଷଡ଼ଋତୁ ମଧ୍ୟେ ସାର/ବସନ୍ତର ଗୌରବ ଅପାର ।" 'ସମୁଦ୍ର ଓ ମୁଁ' କବିତାରେ ସେଇକଥା 'ସମସ୍ତ ପୌରୁଷ ମୋର ସମର୍ପିତ ତୋ' ନୀଳଠା ମୁହଁରେ ।' ଏଇଠି ମନେରଖିବା ଆବଶ୍ୟକ ଯେ ଏ ପ୍ରେମାବେଗର ନିର୍ଦ୍ଦିଷ୍ଟତା ନାହିଁ ଏବଂ କବିଙ୍କ ନଷ୍ଟସତ୍ତ୍ୱ ବିଭକ୍ତ ହୋଇ ଭିନ୍ନଭିନ୍ନ ଅନୁଭବକୁ ଆମନ୍ତ୍ରଣ କରିଛି । କେଉଁଠି ସ୍ୱରଭଙ୍ଗ/ସ୍ୱଚ୍ଛେଦ ପ୍ରତି ଆକୁଳତା ଅଛି ତ କେଉଁଠି ବୈରାଗ୍ୟର ଭାବ ଅଛି । କେଉଁଠି ଜଳି ପୋଡ଼ିବାର ବେଦନାବୋଧକୁ ସାଇତି ରଖାଯାଇଛି ତ କେଉଁଠି ବୁଡ଼ିଯାଇ ବ୍ୟାକୁଳତାରେ ଆଉଟି ହେଉଛି । ବନ୍ଧୁ ସ୍ୱବିରୋଧାଭାସ ଓ ବିଭକ୍ତ-ଚେତନାର ଅନୁଭବକୁ କେତୋଟି ପଂକ୍ତି ନିଆଯାଉ : "ମୁଁ ଜଳିଛି ନିରୁପାୟ ରକ୍ତମାଂସ ହାଡ଼ର ନିଆଁରେ" 'ଛଅମାସ ପରେ' ।

'ତମେ ସେ ପାଖରେ ନୀଳ କାଦମ୍ବିନୀ, ମୁଁ ଏପାଖରେ ଉଦ୍ଧତ ସହର (ନଈ)', 'ଏ ଦେହକୁ ପରଖିଛି ଉତ୍ତପ୍ତ ନିଆଁର ଜିଭରେ/ଆଉ କିଛି ଆଶା ନାହିଁ ଖାଲି ପାଣ୍ଡି ହେବା ଛଡ଼ା ଆଶାର ପଙ୍କରେ (ପୂଜାକୁଟି) ।' 'ଏଇ ନିଅ, ତମ ନାଆଁ/ତମକୁ ଫେରାଇ ଦେଲି ଅରୁନ୍ଧତି, ତମର ଆକାଶ/ପ୍ଲାଟଫର୍ମ ସହ ଆଉ ଦିନ ମାସ ଯିବା ଆସିବାରେ' (ସ୍ୱଦାମ୍ପ-୨) ।

ମଧ୍ୟପଦଲୋପୀରୁ ଏ ଅନୁଭବ ପରେ 'ନଈପହଁରି'ରେ ପ୍ରେମାବେଗର ଉତ୍କର୍ଷ ନାହିଁ । ଏ ପର୍ଯ୍ୟାୟରେ କବିଜୀବନର ଦାର୍ଶନିକ ଅବବୋଧ ଓ ଅସହାୟତାକୁ ନେଇ ପରୀକ୍ଷାନିରୀକ୍ଷାରେ ରତ । କିନ୍ତୁ 'ଅନ୍ଧ ମହୁମାଛି' (୧୯୭୭) ରେ ପ୍ରେମଚେତନା ଘନିଷ୍ଠମୂର୍ତ୍ତି ଓ ଯାନ୍ତ୍ରାନୁଭବର ସ୍ୱରରେ ନିମଜ୍ଜିତ । ଏଠି ଦେହ ଅଛି, ଉତ୍ତପ୍ତ 'ଜଳିବାର

ଉତ୍ତାପ ଉଚ୍ଛ୍ୱାସ ନାହିଁ; ବରଂ ନିଃଶବ୍ଦ ପରଖି ନେବା ଅଛି । କଳ୍ପନାର ପ୍ରାବଲ୍ୟ ବା ଶବ୍ଦଚିତ୍ରରେ ଆବେଗସିକ୍ତ ତୀବ୍ରତା ନାହିଁ । ଗଭୀର ଜୀବନବୋଧ ଓ ଦାର୍ଶନିକ ଅବବୋଧର ତରାଜୁରେ ଦେହ ଓ ବିଦେହାନୁଭବର ସୀମାକୁ ମପା ଯାଇଛି । ଅନୁଭବର ଆନ୍ତରିକତା ଓ ପରିପକ୍ୱତା, ବିକଶିତ ପ୍ରଜ୍ଞା ଓ ବସ୍ତୁଗତବୋଧ ଏ ପ୍ରେମାନୁଭବକୁ ସାର୍ବଜନୀନ ଓ ସର୍ବକାଳୀନ ରୂପ ଦେବାରେ ତ୍ରୁଟି କରିନାହିଁ । କେଉଁଠି ଦେହୋତ୍ତର ଚେତନାରେ କାବ୍ୟପୁରୁଷ ନିମଗ୍ନ, ପୁଣି କେଉଁଠି ପ୍ରେମକୁ ପୃଷ୍ଠଭୂମି କରି ଜୀବନ, ସମାଜ, ସମୟ ଓ ବିଭିନ୍ନ ଅନୁଭବକୁ ବିଚାର କରିଛନ୍ତି କାବ୍ୟପୁରୁଷ । 'ତମ ସାଙ୍ଗରେ ଦିନଟେ' ଏ ପରିପ୍ରେକ୍ଷୀରେ ଏକ ସବଳ ଉଦାହରଣ । ଦେହାନୁଭବର ବିତତ ପୃଷ୍ଠଭୂମିରେ ଜୀବନ, ସମୟ ଓ ପୃଥିବୀପ୍ରତି ଶ୍ଳେଷ ପ୍ରକଟିତ । ଜୈବିକ ସମ୍ଭୋଗର ଊର୍ଦ୍ଧ୍ୱକୁ ଯାଇ ସନ୍ନ୍ୟାସୀ-ଚେତନାରେ ନିଜକୁ ପରଖିବାର ଚେଷ୍ଟା 'ବୃଦ୍ଧ' କବିତାରେ ସ୍ପଷ୍ଟ । 'ସକାଳ' କବିତାରେ ଦାମ୍ପତ୍ୟାନୁଭବ ଭିତରେ ପ୍ରେମର ମୂଲ୍ୟାୟନ ହୋଇଛି । ବାକ୍‌ଖଣ୍ଡରେ ସମ୍ପୃକ୍ତ 'ମାୟା ଦର୍ପଣ' ଅନ୍ୟତମ ପ୍ରେମ କବିତା । ଏ କବିତା ପ୍ରେମକୈନ୍ଦ୍ରିକ ସମସ୍ତପ୍ରକାର ଅନୁଭବକୁ ନେଇ ରଚିତ । ଆତ୍ମନେପଦୀୟ ଓ ମଧ୍ୟପଦଲୋପୀୟ ଅନୁଭବ ଏବଂ ପରିଣତ ଅନୁଭବ ଭିତରେ ଯୋଗସୂତ୍ର ସ୍ଥାପନ କରି ଏକ ଚିରନ୍ତନ ସତ୍ୟକୁ ଧରିରଖିଛି ମାୟା ଦର୍ପଣ । ଏ ମାୟାର ପୃଥିବୀ, ସବୁ ଘଟଣା ଏକ ଏକ ଖେଳ । ମୃତ୍ୟୁ ଏକ ଗତାନୁଗତିକ ଦୁର୍ଘଟଣା । ପ୍ରେମିକ ପ୍ରେମିକା ଏକଦା କଥା ରଖିପାରନ୍ତି ନାହିଁ । ଉଭୟେ ବାଧ୍ୟ ହୋଇ ଦୂରକୁ ଚାଲିଯାନ୍ତି ଆପଣା ବାଟରେ ! ଅନୁଭୂତି ସ୍ମୃତି ହୋଇଯାଏ । ଜୀବନ ତା' ବାଟେ ବାଟେ ଚାଲେ । ଘଟଣା ଓ ଦୁର୍ଘଟଣା ସବୁ ଘଟିଯାଏ । ମାୟାର କୁହୁକରେ ସବୁ ଚିରାଚରିତ ଭାବରେ ଘଟେ । ପ୍ରଶ୍ନ ଆସେ, ଉତ୍ତର ମିଳେ, କେଉଁଠି ମିଳେ ନାହିଁ । ପୁଣି ପ୍ରଶ୍ନର ଉତ୍ତର ଯୁକ୍ତିତର୍କର ଊର୍ଦ୍ଧ୍ୱକୁ ଚାଲିଯାଏ । ଦେହ/ଦୃଶ୍ୟ ଥିବା ଯାଏଁ ମାୟାର ପୃଥିବୀରେ ମିଳନ, ବିଚ୍ଛେଦ, ସ୍ନେହ, ସମ୍ଭୋଗ ଲାଗି ରହିଥାଏ । ଶ୍ରୀ ମିଶ୍ରଙ୍କ ଭାଷାରୂପରେ 'ଦୂର ମେଘରେ ବିଜୁଳି ଚମକୁ ଥିଲା ଯାଏଁ ।'

'ଅପେକ୍ଷା ମାନେ ଦୁଇଥର' କବିତାରେ ସମୟର ହାତସଙ୍କେତରେ ପ୍ରେମାନୁଭବର ବ୍ୟାକୁଳ ସ୍ୱର ଉତ୍‌କୀର୍ଣ୍ଣ । ଶ୍ରୀ ମିଶ୍ରଙ୍କ ଏଗାରଟି ପରିଚ୍ଛେଦ ବିଶିଷ୍ଟ 'ହୃଦୟେଶ୍ୱରୀ' ପ୍ରେମାନୁଭବର ଏକ ଦୀର୍ଘ କବିତା । କବିଙ୍କ ପ୍ରେମ ସଂପର୍କିତ କାବ୍ୟଚେତନାର ପୂର୍ଣ୍ଣରୂପ ଏଠି ପ୍ରକାଶିତ । ଦେହ ଓ ବିଦେହାନୁଭବର ତୀବ୍ରତା ସହିତ ସମୟ, ପୃଥିବୀ ଓ ଜୀବନକୁ ନେଇ ବିଭିନ୍ନ ଅନୁଭବ ଏଥିରେ ସନ୍ନିବିଷ୍ଟ । ସୁଖଦୁଃଖ, ହସଅଶ୍ରୁ, ମିଳନବିଚ୍ଛେଦ, ସମୟ-ଅସମୟ ଜନ୍ମମୃତ୍ୟୁ ପ୍ରଭୃତି ଭିନ୍ନ ଭିନ୍ନ ପରିବେଶ ବିଷୟ ଓ ଅନୁଭବ ଭିତରେ ଚିରନ୍ତନ ପ୍ରକୃତି ଓ ପୁରୁଷର ରୂପ ଏଠି ପ୍ରକାଶିତ ହୋଇଛି । ଜୀବନ ଓ ପୃଥିବୀ ପ୍ରତି ଅନେକ ଶ୍ଳେଷ ସମ୍ପୃକ୍ତ, ଦୁର୍ଘଟଣା ଓ ବିଡ଼ମ୍ବନା ପ୍ରତି କାବ୍ୟ ନାୟକ ସମ୍ବେଦନଶୀଳ । ପାପ ପୁଣ୍ୟର ବିହାବନକାଶ ବେଳେ ଅକପଟ ସ୍ୱୀକାରୋକ୍ତି ରହିଛି । ଏଠି ପ୍ରେମର ଏକ

ଦାର୍ଶନିକ ମୂଲ୍ୟାୟନ ହୋଇଛି । ପୃଥିବୀ ଓ ଈଶ୍ୱରଙ୍କୁ ମଧ୍ୟ ପୃଷ୍ଠଭୂମିକୁ ଅଣାଯାଇଛି । 'ହୃଦୟେଶ୍ୱରୀ' କବିତାଟି ଏ ଦଶକର ଏକ ଶ୍ରେଷ୍ଠ ସୁଦୀର୍ଘ ପ୍ରେମ କବିତା ଯାହା ଗୁରୁପ୍ରସାଦଙ୍କ 'ସନେଟ୍-୧୦ଟି' ସହିତ ପାଠକଙ୍କୁ ପରିଚିତ କରାଇବ । ଏହାର କାନ୍‌ଭାସ ବେଶ୍ ବ୍ୟାପକ, ଅନୁଭବ ଖୁବ୍ ପରିଣତ । ବାକ୍‌ସ୍ୱାତନ୍ତ୍ର ଅନନ୍ୟସାଧାରଣ ପ୍ରୟୋଗ, ଭାଷାର ସୂଚନାଧର୍ମିତା, ବକ୍ତବ୍ୟର ସ୍ପଷ୍ଟତା, ସର୍ବୋପରି ସମକାଳୀନ ଯୁଗ ଓ ଜୀବନର ସ୍ୱରଲିପି ବିନ୍ୟାସରେ ଏ କବିତାଟି ଓଡ଼ିଆ କାବ୍ୟ ଜଗତରେ ଅନନ୍ୟ ଗୌରବର ଅଧିକାରୀ । ବହୁ ବିଚ୍ଛିନ୍ନ ଶ୍ରେଷ୍ଠଶ୍ରେଷ୍ଠ ଅନୁଭବ ବଡ଼ ଚମତ୍କାର ଭାବରେ ଗୁମ୍ଫିତ ହୋଇ ମଧ୍ୟ ଏହାର ମୁଖ୍ୟସ୍ୱରକୁ ଅନାହତ ରଖିଛି । ଦେହାନୁଭବ ଓ ପ୍ରବୃତ୍ତିର ସ୍ୱାଭାବିକତା—"ଭୁଲ୍ ଅଚ୍ଛି ପାପର ଡାଉଦାଣ୍ଡି ଘେରା/ଏ ଦେହ ଡାକବଙ୍ଗଳା", ଅନୁଭବର ବିପନ୍ନତା ଓ ଅଭିଯୋଗର ଭାଷା—"ଏ ପୃଥିବୀ କ'ଣ ଆମର/ଯାହାର ଆହାର ନାହିଁ, ନିଦ୍ରା ନାହିଁ/କ୍ଷମାରେ ପ୍ରଶାନ୍ତ ସମୁଦ୍ର ନାହିଁ ?" ସମକାଳୀନ ଯୁଦ୍ଧର ରଙ୍ଗଯନ୍ତ୍ରଣା ଓ ପ୍ରେମର ମୂଲ୍ୟାୟନ ପ୍ରତି ବ୍ୟଙ୍ଗ—"ଆଜି କୋଳି ମହାଯୁଦ୍ଧରେ ଶ୍ୱପର୍ଣ୍ଣୀସ୍ତ/ବିପନ୍ନ ଏରୋଡ୍ରମର ଜଙ୍କ୍ ଲଗା କକ୍‌ପିଟ ସନ୍ଧିରେ ଗୋଟେ ଡେଙ୍ଗା ଫୁଲଗଛ/କୁଆଡ଼େ ମୋର ପ୍ରେମ", ଦେହର ଅବକ୍ଷୟ ଓ ଅପରାଧର ଅକପଟ ସ୍ୱୀକାରୋକ୍ତି—"ସୂର୍ଯ୍ୟର ଗନ୍ଧ ସାଙ୍ଗରେ ତୋ'ର ଅମୂଲ୍ୟ ରତ୍ନ ଦେହର କ୍ଷୟ ହୁଏ, ସୁନ୍ଦରୀ । /ମନ୍ଦିରଗାତ୍ରରୁ ଚୂନ ଖସିଲାପରି ତୋ'ର କାନ୍ଧର କେଶରରୁ ଖସିଯାଏ ପରାଗ/ଏହା ଯଦି ପାପରେ ହୃଦୟେଶ୍ୱରୀ ! ମୋର କ୍ଷଣିକ ଉଲ୍ଲାସର ମର୍କତପାତ୍ରରେ/ସଞ୍ଚିତ ହେଉ ତୋ'ର ମୁକ୍ତି, ଅନିର୍ଦ୍ଦିଷ୍ଟ ପାରଦପରି ତୋ'ର ନିଶ୍ଚିନ୍ତ ଯୌବନ ।" ଏଠି ଅଛି ଦେହାନୁଭବର ଘନୀଭୂତ ଏକ ସ୍ୱର । ସୌଭାଗ୍ୟ ମିଶ୍ରଙ୍କ ପ୍ରେମାନୁଭବରେ ଈଶ୍ୱର ପ୍ରାୟ ଅନୁପସ୍ଥିତ । ବରଂ ଜୀବନ, ପୃଥିବୀ ଓ ସମୟ ସହିତ ପ୍ରେମାବେଗର ଯୋଗସୂତ୍ର ସ୍ଥାପିତ ହୋଇଛି । ତାଙ୍କର ପ୍ରେମପାଇଁ କୌଣସି ନିର୍ଦ୍ଦିଷ୍ଟ ବକ୍ତବ୍ୟର ଉଦ୍‌ଘାଟନ ନାହିଁ, ଭିନ୍ନ ଭିନ୍ନ ଅନୁଭବରେ ଭିନ୍ନ ଭିନ୍ନ ଭାଷା ରହିଛି ।

[ଖ] ସମୟ ଓ ମୃତ୍ୟୁ ସମ୍ପର୍କିତ ଦାର୍ଶନିକ ଅବବୋଧ ଶ୍ରୀ ମିଶ୍ରଙ୍କ କାବ୍ୟ-ଚେତନାର ଅନ୍ୟତମ ମୁଖ୍ୟସ୍ୱର । ଏହି ପର୍ଯ୍ୟାୟର ବହୁ କବିତାରେ ତାଙ୍କ କାବ୍ୟଚେତନା ବଡ଼ ଦୁର୍ବୋଧ୍ୟ ଓ ଜଟିଳ । ଏହି ଦାର୍ଶନିକ ଅବବୋଧଟି କ'ଣ ତା' ଠିକ୍ ଭାବରେ ସ୍ଥିର କରିବା କଷ୍ଟକର । ଏହା କେତେକାଂଶରେ ଇନ୍ଦ୍ରିୟୋତ୍ତର ଏବଂ କେତେକାଂଶରେ ରହସ୍ୟ ବ୍ୟଞ୍ଜକ । ସମୟ ଓ ମୃତ୍ୟୁ ଅନୁଭବ ଏ ଅବବୋଧର ଭାଷାକୁ ବୌଦ୍ଧିକ ଜଟିଳତା ଦେଇଛି । ଅବଶ୍ୟ ଶ୍ରୀ ମିଶ୍ରଙ୍କ କବିତାରେ ମୃତ୍ୟୁଚେତନାର କାନ୍‌ଭାସ ରମାକାନ୍ତ ରଥ କିମ୍ବା ଦୀପକ ମିଶ୍ରଙ୍କ ପରି ସେତେ ବ୍ୟାପକ ଓ ପ୍ରହାରକ୍ଷମ ନୁହେଁ ।

ଦେହ ଭିତରେ ମୃତ୍ୟୁ ଅନୁଭବ—"ମୁଁ ତୁମ ନାଭିରେ ଗନ୍ଧପାଏ ମୋ ମୃତ୍ୟୁର" (ଆତ୍ମହତ୍ୟା), ପ୍ରବୃତ୍ତିର ମୋହ ଏଡ଼ିବା ସହଜ ନୁହେଁ—ମୃତ୍ୟୁ ପଛେ ଆସୁ—"ମୁଁ

ମୁଣ୍ଡିତ ବ୍ରାହ୍ମଣ ପୂଜକ/ମନ୍ଦିରର ଟିପାସଙ୍ଗେ ରୋମାଞ୍ଚିତ ହୋଇ ହର୍ଷଭରେ/ମନ୍ଦିର ପଛଆଡ଼େ ଲେଞ୍ଚିପଡ଼େ ନାଗର ଦେହରେ", ମୃତ୍ୟୁ ବଡ଼ ଅସ୍ୱନକ ଓ ଅପ୍ରତ୍ୟାଶିତ ଭାବେ ପହଞ୍ଚିଯାଏ । ଆମର ଜୀବନ ଏକ ଆକସ୍ମିକତା—"ଜନ୍ମପଥ ସକାଳୁ ସକାଳୁ ସନ୍ଧ୍ୟା ହୋଇଯିବ" (ଘର), ଆମର ଦୃଶ୍ୟମାନ ପୃଥିବୀରେ ଦୁଇଟି ଜନ୍ମର ସହଜ ଦୃଶ୍ୟ । ଗୋଟିଏ ଜୀବନର ଜୟଯାତ୍ରା ନରୁବା ମୃତ୍ୟୁ—"ଶିଂଶପା ବୃକ୍ଷର ଡାଳେ/ହନୁ ମନେ ମନେ ଭାବେ/ଯାହାକୁ ମୁଁ ଦେଖିଲଣି ବେଳ ତୋଳେ/ସେ ନଷ୍ଟେ ସୀତା ଅଥବା/ଅଥବା ମୃତ୍ୟୁର ଦାସ୍ୟାଦ" (ଆଉ କେତେକାଳ) ! ମୃତ୍ୟୁର ଏକ ଚିତ୍ରରୂପ—"ମୃତ୍ୟୁ ସବୁଜ ଦୂର୍ବାଦଳ ଆହତ ପ୍ରଜାପତିଙ୍କ ଡେଣାରେ" (ନିଭଙ୍ଗ) । ଶ୍ରୀ ମିଶ୍ରଙ୍କ 'ଏତେବଡ଼ ଘରଟା', 'ପ୍ରଳୟ', 'ବିଦ୍ରୋହୀ', 'ବସ୍ତ୍ରକାଣ୍ଡ' ଆଦି କବିତାରେ ମୃତ୍ୟୁର ହିଂସ୍ରତା, ଆକସ୍ମିକତା ଓ କମନୀୟତା ପ୍ରଭୃତି ବିଭିନ୍ନ ବିମ୍ବର ଚିତ୍ର ଲକ୍ଷ୍ୟକର ହେବ । 'ନଈପହଁରା' ସଙ୍କଳନର ମୃତ୍ୟୁଚେତନା ସମ୍ପର୍କିତ କବିତାର ଉପଧାରା 'ଅନ୍ଧ ମହୁମାଛି'ର 'ନଈ ସେପାରି' ଓ 'ଦୃଶ୍ୟାନ୍ତର' କବିତାରେ ବେଶ୍ ପରିଷ୍କାର । ଜୀବନ ତାର ବାଟେ ବାଟେ ଚାଲୁଥାଏ, ମୃତ୍ୟୁ କେତେବେଳେ ଆସିଯାଇଥାଏ । ଗୋଟିଏ ଦିଗରେ ଜନ୍ମ ଅନ୍ୟ ଦିଗରେ ମୃତ୍ୟୁ ଓ ମଝିରେ ଜୀବନ । "ନଦୀ ଭିତରେ ମାଟି ଧସିପଡ଼େ/ଖଡ଼ଗଦାର ତେଲୁଲ ମଞ୍ଜି ଫୁଲୁଥାଏ" (ନଈ ସେପାରି) । 'ଦୃଶ୍ୟାନ୍ତର' କବିତାରେ ଶ୍ରୀ ମିଶ୍ର ମୃତ୍ୟୁକୁ ମାନି ନେଇଛନ୍ତି । ବଡ଼ କମନୀୟ ସେ ମୃତ୍ୟୁ । ମୃତ୍ୟୁପରେ ଆମେ କେବଳ ଜୀବନକୁ ଅପେକ୍ଷା କରୁ । ମୃତ୍ୟୁ ଉପରେ କାବ୍ୟପୁରୁଷର ସଂଶୟ ନାହିଁ, ଅଭିଯୋଗ ନାହିଁ, ପ୍ରଶ୍ନ ନାହିଁ । ବାତ୍ୟାର ପୃଷ୍ଠଭୂମିରେ ସେ ମୃତ୍ୟୁର ଦୃଶ୍ୟ ଦେଖୁଛନ୍ତି । କିନ୍ତୁ ଅନ୍ୟପାଖରେ ଏକ ଶିଶୁ ଭୂମିଷ୍ଠ ହେଉଛି । ଚିତ୍ରଟି ଏହିପରି—"ମୃତ୍ୟୁ/(ମୃତ୍ୟୁଯାହା ଅଦୃଶ୍ୟର ସବୁ ସେ।ହ୍ଲ ଭାଙ୍ଗିଦିଏ) ମୁଣ୍ଡଟେକ ଉହୁଙ୍କି ଦେଖିଲି ମୃତ୍ୟୁ/ଛୁଣ୍ଡା ଖଜୁରୀପଟିରେ ଚିତ୍ହୋଇ ଉପରକୁ ଚାହିଁ/ଗୋଡ଼ହାତ ଛାଟି/ଖେଳୁଚି କୁନିପୁଅଟି ବର୍ଷକର/ସହସ୍ର ବର୍ଷର । କେଡ଼େ ଭୁଲ୍ କରିଥାନ୍ତି/ପଚାରେ ଯେ ପୁଅଟି କାହାର ।" 'ଏପ୍ରିଲ' କବିତାରେ ସମୟକୁ ସମନ୍ୱିତ କରାଯାଇଛି ମୃତ୍ୟୁ ସାଥିରେ । "ସେ ଆସି ପହଞ୍ଚିଯିବ । ତେଣୁ ଆମର ମୃତ୍ୟୁ ସାଙ୍ଗେ ସମାନ ।" 'ଆଳାପ' କବିତାରେ ସେ ମୃତ୍ୟୁକୁ ଲାଲ ଉର୍ଦ୍ଧିପିନ୍ଧା ଘୋଡ଼ସବାର ଚିତ୍ରକଳ୍ପରେ ପ୍ରତୀକିତ କରିଛନ୍ତି । ସମସ୍ତ ସମ୍ଭୋଗ-ସୁଖଦୁଃଖର ଭିତରେ ତା'ର ଅପେକ୍ଷା 'ମୁଁ ପରି ତାଙ୍କର ଅପେକ୍ଷାରେ ଏତେଦିନ/ସେମାନେ ଆସିବେ । ମତେ କାଟିନେଇ ଯିବେ ବନ୍ଧୁଙ୍କର ରକ୍ତାକ୍ତ ନାଡ଼ିରୁ ।" ଜୀବନର ବେଉସା ସରିନଥିବ, ଅସଂଖ୍ୟ ଅବଶୋଷ ରହିଥିବ ଅଥଚ ମୃତ୍ୟୁ ଆସିବ । କାହାର ସ୍ୱପ୍ନ ସମ୍ଭାବନା ପ୍ରତି ତା'ର ନଜର ନଥିବ । "ବଡ଼ ଭୋରରୁ ସେ ଆସି ପହଞ୍ଚିଯିବ – ବାମନ ଭିକ୍ଷୁକ" "ସେ ଭିକ୍ଷୁକର ଯାହାର ମୁହଁ ଝାଉଁବେଳର ପୋଖରୀ ପରି/ମୌନ, ନିର୍ବିକାର" (ଯାହା ସାଉଁଟିପାରିଲି) । ନିର୍ବିକାର ମୌନ ଏକ ବାମନ ଭିକ୍ଷୁକ ହିସାବରେ ମୃତ୍ୟୁପ୍ରତି ଏକ ଶ୍ଳେଷ ପ୍ରକଟିତ ହୋଇଛି ଠିକ୍

'ଈଶ୍ୱରଙ୍କ ପ୍ରତି' କବିତା ପରି । ଆଗରୁ କୁହାଯାଇଛି ଯେ ଶ୍ରୀ ମିଶ୍ରଙ୍କ ମୃତ୍ୟୁଚେତନାର କାନ୍‌ଭାସ ଏତେ ବ୍ୟାପକ ଓ ନିର୍ଦ୍ଦିଷ୍ଟ ନୁହେଁ । ମୃତ୍ୟୁର ଅପ୍ରତ୍ୟାଶିତତା ଓ ସମୟର ହାତସଫେଇରେ ବିଡ଼ମ୍ବିତ ଜୀବନର ଚିତ୍ର ଅନେକାଂଶ ଲକ୍ଷିତ । ମୃତ୍ୟୁପ୍ରତି ଶ୍ରୀ ମିଶ୍ରଙ୍କ ଦୃଷ୍ଟିଭଙ୍ଗୀ ଶ୍ଳେଷାତ୍ମକ ଓ ପ୍ରଶ୍ନାତ୍ମକ ।

[ଗ] ସମୟଚେତନା ଶ୍ରୀ ମିଶ୍ରଙ୍କ କବିତାର ଅନ୍ୟତମ ବିଭାଗ । ଏଇ ପର୍ଯ୍ୟାୟର କବିତାଗୁଡ଼ିକ ବୁଝିବା କଷ୍ଟକର । ଅତ୍ୟଧିକ ସୂଚନାଧର୍ମିତା ଏହାର କାରଣ ହୋଇପାରେ । ସମୟର ଅନିବାର୍ଯ୍ୟତା : "କାଳବୃକ୍ଷର ୧ଵୁଗିଳ ପକାଏ" (ହୃଦସ୍ୱେଶ୍ୱରୀ) । ସମସ୍ତେ ସମୟର କ୍ରୀତଦାସ : "ସେ ଏପରି ମୋହଗ୍ରସ୍ତ/ମୋହଗ୍ରସ୍ତ ସମୟ ଯେଉଁଠାରେ (ସେପରି ମୋହଗ୍ରସ୍ତ) । କାବ୍ୟପୁରୁଷ ଅପେକ୍ଷାକରେ ସୁଦିନର : "କେଉଁ ଅଚିହ୍ନା ଲୋକର ନିଦ୍‌ଘୋର ସ୍ୱପ୍ନ ସେ ସକାଳ/ଆଉ କେତେ କାଳ" (କେଉଁ ଅଚିହ୍ନା କବିର) । ସମୟର ହାତସଫେଇରେ ସ୍ୱପ୍ନ-ପ୍ରତ୍ୟାଶୀ ପୁରୁଷର ପ୍ରଶ୍ନବାଚୀ 'ଅପେକ୍ଷାମାନ ଦୁଇଥର' କବିତାରେ ପ୍ରତିଫଳିତ ହୋଇଛି । 'ସକାଳ', 'ସକାଳ ବୋଧେ ସାତେ ସାତଟା' କବିତାରେ କୋଳାହଳମୟ ପୃଥିବୀରେ ସମୟର ଗତାନୁଗତିକ କ୍ଷୟଶୀଳତାର ଚିତ୍ର ସହଜଲକ୍ଷ୍ୟ । 'ଘର' କବିତାରେ ଜନ୍ମ, ମୃତ୍ୟୁ ଓ ଜୀବନ ସମ୍ପର୍କିତ ଆତ୍ମାନୁଭବ ଏକ ଦାର୍ଶନିକ ସ୍ତରକୁ ଯାଇଛି । ଦାର୍ଶନିକ ଅବବୋଧର ଚିତ୍ର 'ଯାତ୍ରାସଙ୍ଗୀତ'ରେ ସ୍ପଷ୍ଟ । ଜୀବନର ଅସାରତା ଓ ବିଡ଼ମ୍ବନା ପ୍ରତି କାବ୍ୟନାୟକ ଅତିମାତ୍ରାରେ ସମ୍ବେଦନଶୀଳ । 'ନଈପହଁରି' ରେ ଅନିଶ୍ଚିତତାଗ୍ରସ୍ତ ଜୀବନର କାତରତା ପ୍ରତି ଅଙ୍ଗୁଳି ନିର୍ଦ୍ଦେଶ କରୁଥିଲେ ହେଁ 'ଅନ୍ଧ ମହୁମାଛି'ରେ ସବୁକୁ ଆତ୍ମସ୍ଥ କରିବାକୁ ନିର୍ଦ୍ଦେଶ ଦେଇଛନ୍ତି ।

[ଘ] ସୌଭାଗ୍ୟ ମିଶ୍ରଙ୍କ ଭାବଚେତନାର ଅନ୍ୟଦିଗଟି ହେଉଛି 'ଈଶ୍ୱର ଚେତନା' । ଶ୍ରୀ ମିଶ୍ର ନିରୀଶ୍ୱରବାଦୀ ନୁହଁନ୍ତି; କିନ୍ତୁ ତାଙ୍କ କବିତାରେ ଈଶ୍ୱର ଉପସ୍ଥିତ ଅଛନ୍ତି । ବିଧିବଦ୍ଧ ଭାବେ ସେ ଈଶ୍ୱରଙ୍କୁ କେମିତି ଲକ୍ଷ୍ୟ କରିଛନ୍ତି, ତାହା ଜାଣିବା କଠିନ । 'ତିନିମାସ ପରେ' କବିତାରେ 'ପୋଲ ପରି ଭାଙ୍ଗିଯାଏ ଅଛନ୍ତି ଈଶ୍ୱର' ପଙ୍‌କ୍ତିରେ ତାଙ୍କର ଦାୟିତ୍ୱଜ୍ଞାନହୀନତା ଧରାପଡ଼ିଛି । 'ନଈପହଁରି' କାବ୍ୟଗ୍ରନ୍ଥରେ ଈଶ୍ୱରାନୁଭବର ଚିତ୍ର ବିଶେଷ ଦୃଷ୍ଟିଗୋଚର ହୁଏ । 'ଭାଗବତ' କବିତାରେ ମନୁଷ୍ୟର ବିଡ଼ମ୍ବନା ପ୍ରତି ସମ୍ବେଦନଶୀଳ କାବ୍ୟପୁରୁଷ ଈଶ୍ୱରଙ୍କ ଅନୁପସ୍ଥିତିର ଶୂନ୍ୟତାକୁ ସୁଚାଉଛି । ଈଶ୍ୱରଙ୍କ ପ୍ରତି କବିତାରେ କାବ୍ୟନାୟକ ତା'ର ସମସ୍ତ ପ୍ରକାର ଚେଷ୍ଟା ସତ୍ତ୍ୱେ ଜୀବନ ସଂଗ୍ରାମରେ ଅସହାୟ, ନିରାଶ୍ରୟ । ଅସଂଖ୍ୟ ପ୍ରଶ୍ନ ଉଙ୍କିମାରୁଛି ତା' ମନରେ । ସେ ତା'ର ବ୍ୟାକୁଳଭାବ ଓ ଚେଷ୍ଟାର ବିବରଣୀ ଦେଇଛି ଈଶ୍ୱରଙ୍କୁ—ତା'ର ଯନ୍ତ୍ରଣା ଓ କ୍ରନ୍ଦନ ସତ୍ତ୍ୱେ କିଛି ପାଇନାହିଁ ସେ । 'ମହାରାଜା' ଶବ୍ଦର ପ୍ରୟୋଗ ଚମତ୍କାର ଶ୍ଳେଷ ସୃଷ୍ଟି କରୁଛି ।

"ମହାରାଜା, ଶ୍ୟାମଳ ପବନ ବହେ, ବହେ ସେ କାହିଁକି ? × × × ମହାରାଜା, ଭୁଲ କିଏ ନକରେ ? × × × ଅଶ୍ରୁର ରକ୍ତ ମୁଁ ବୋଳି ହୋଇଛି ମୁହଁରେ, ମହାରାଜ, ଦେଖନ୍ତୁ ମୁଁ ଶ୍ୟାମଳ/ମୋ ଦୁର୍ବିନୀତ କରତଳ/ଅପ୍ରତିଦ୍ୱନ୍ଦ୍ୱୀ ଗ୍ଳାନିରେ ସମୁଜ୍ଜ୍ୱଳ ବିନ୍ଦୁ ବିନ୍ଦୁ ଜଳ ?" ଅନ୍ୟତ୍ର କାବ୍ୟପୁରୁଷର ସ୍ୱୀକାରୋକ୍ତିକୁ ଲକ୍ଷ୍ୟ କରନ୍ତୁ । "ନିୟମ କାନୁନ ମୋତେ ଜଣା ନାହିଁ, ପ୍ରଭୁ/ଯାହା ମୋର ଲୋଭ, ଯାହା ମୋର ପରିଚିତ/ଗୋଟାଇ ଆଣିଛି ନିଜ ବୟସ ସୀମାରୁ / ଜଗୁଆଳି ଅନ୍ୟଆଡ଼େ ଚାହିଁଥିଲେ ବେଳେ" (ଜୀବନଚର୍ଯ୍ୟା) । କିନ୍ତୁ 'ହୃଦୟେଶ୍ୱରୀ' କବିତାରେ ଈଶ୍ୱରଙ୍କ ସ୍ଥିତିକୁ ବ୍ୟଙ୍ଗ କରାଯାଇଛି । "ଈଶ୍ୱରଙ୍କୁ ଦେଖିନା ? ପୂରାପୂରି ସ୍କୁଟିଲ/ସ୍କାଡ଼ ସ୍ୟାଡ଼ କେଉଁଠା ବଙ୍କାରଙ୍ଗ/କ'ଣନା ଇନ୍ଦ୍ରଧନୁ !" ଶ୍ରୀ ମିଶ୍ରଙ୍କ ଈଶ୍ୱରାନୁଭବର କୌଣସି ନିର୍ଦ୍ଦିଷ୍ଟ ସ୍ୱରୂପ ନାହିଁ । ଏହାର କାରଣ କବି ବାସ୍ତବବାଦୀ ଏବଂ ତାଙ୍କ ସ୍ୱର ସମକାଳୀନତା ଦ୍ୱାରା ନିୟନ୍ତ୍ରିତ । କବିଙ୍କ ନିଜସ୍ୱ ବିଭିନ୍ନ ଦୃଷ୍ଟିକୋଣରୁ ଦେଖିଛି ଈଶ୍ୱରଙ୍କୁ ।

ଶ୍ରୀ ମିଶ୍ରଙ୍କ କବିତାର ଅନ୍ୟାନ୍ୟ ବିଷୟ ହେଉଛି ନଷ୍ଟ ମୂଲ୍ୟବୋଧ ଓ ସମାଜ ଚେତନା । ଯୁଗ ଓ ଯନ୍ତ୍ରଣାରେ କାବ୍ୟନାୟକ ଅତିମାତ୍ରାରେ ପିଷ୍ଟ । ଏ ଦିଗରେ ଶ୍ରୀ ମିଶ୍ରଙ୍କର 'ଆତ୍ମନେପଦୀ' ପରବର୍ତ୍ତୀ କବିତାଗୁଡ଼ିକୁ ନିଆଯାଇପାରେ । ଜୀବନ ଓ ଜୀବନକୁ କେନ୍ଦ୍ରକରି ସମସ୍ତପ୍ରକାର ଅସହାୟତା ଓ ବିଡ଼ମ୍ବନାବୋଧ କାବ୍ୟନାୟକର ସ୍ୱରକୁ ବିକଳ ଓ ବିପନ୍ନ କରିଛି । ଏ ପର୍ଯ୍ୟାୟର କବିତାରେ ଶ୍ଳେଷ ଓ ବିଦ୍ରୂପର ସ୍ୱର ସମୁଦ୍ୟତ । ଏଠି ବି କୌଣସି ନିର୍ଦ୍ଦିଷ୍ଟ ଦର୍ଶନ ନାହିଁ । ନାୟକ ଅନେକାନ୍ତ ସ୍ଥିତିବାଦୀ । ଚଳନ୍ତି ସମୟର ତୀବ୍ର ବେଦନାବୋଧ, ପାପଚେତନା, ବିଚ୍ଛିନ୍ନତାବୋଧ କାବ୍ୟନାୟକକୁ ଗ୍ରାସ କରିଛି । ସ୍ୱକୀୟ ସ୍ଥିତିର ପ୍ରମାଣ ଏବଂ ଅସହାୟତାର ପରିଧିରୁ ମୁକ୍ତିପାଇବା ପାଇଁ ସେ ବ୍ୟାକୁଳ ହୋଇଛି । ସମକାଳୀନ ସମାଜର ଦୁଃସ୍ଥିତି ଓ ଅନାଚାରର ପ୍ରତି ଶ୍ରୀ ମିଶ୍ର ତୀକ୍ଷ୍ଣ ବ୍ୟଙ୍ଗ ହାଣିଛନ୍ତି । ସମାଜଚେତନା ସମ୍ପର୍କିତ କବିତାରେ ପ୍ରଚାରଧର୍ମିତା ନାହିଁ । କାବ୍ୟ-ନାୟକ ଅନେକାନ୍ତ ବେଦନାଗ୍ରସ୍ତ । ପ୍ରାଥମିକ ସୃଷ୍ଟି 'ରବିନ୍‌ଶନ୍ କ୍ରୁଶୋ' କବିତାରେ ଏ ଚିତ୍ର ଲକ୍ଷ୍ୟ କରାଯିବ । 'ଜନାର୍ଦ୍ଦନ ଦାସ' କବିତାରେ ପ୍ରଚଳିତ ପରମ୍ପରା ଓ ଆଦର୍ଶର ସ୍ଖଳନ, 'ଶୁକଦେବ ଜେନା'ରେ ପାପ ସଚେତନ ନାୟକର ଉପାୟହୀନ ଜୀବନଯାପନ, 'ନଈପହଁରା'ରେ ଅସ୍ଥିରତା ଓ ଅନିଶ୍ଚିତତାର ପରିଧି ଭିତରେ ଆତଯାତ ଜୀବନର କାରୁଣ୍ୟର ଚିତ୍ର ସହଜଲକ୍ଷ୍ୟ । 'ସମାଜବାଲା କ'ଣ ଜାଣେ'ରେ ମଣିଷର ସ୍ଥିତିକୁ ବିଦ୍ରୂପ କରାଯାଇଛି । ବାସ୍ତବତାର ପୀଡ଼ନରେ ତା'ର ଆଦର୍ଶ ବଳି ପଡ଼ୁଛି । ସମାଜ ରୁଗ୍ଣ ଓ ରୋଗଗ୍ରସ୍ତ । ଦୁର୍ନୀତି ଓ ହାତସଫେଇରେ ସାମାଜିକ ପ୍ରତିଷ୍ଠା ନେଇ ଅନେକ ବ୍ୟସ୍ତ ।

"ଗଜକଣ ଓ ଚେନାଚୁର, ସନ୍ଧି ଟ୍ରେନ୍‌ଂରେ ଅବଲୁପ୍ତ ପତ୍ନୀର ଯୌବନ/ ଖୋସାମତି—ହେ ଭଦଭଦଳିଆ ମୋର—ବିଲବାଡ଼ି, କଣ୍ଟ୍ରୋଲ ଦୋକାନରେ/

ସାମାନ୍ୟ ପରଷିଏ ଝାଡ଼ଦେଇ/ଗୁଡ଼ଦେଇ ଚାଲିଯାଅ । × × × ମୁଁ ପିତା ସମ୍ଭ୍ରାନ୍ତ, ସଙ୍କୁଚିତ/କ'ଣ ଜାଣେ ? କ'ଣ ଜାଣେ ?''

ଶ୍ରୀ ମିଶ୍ରଙ୍କ ଶ୍ଳେଷ ଓ ସମ୍ବେଦନା ବେଶ୍ ଭାବପ୍ରବୋଧକ ଭାଷାରେ ପ୍ରତିଫଳିତ ହୋଇଛି । 'ଅନ୍ଧ ମହୁମାଛି'ରେ କାବ୍ୟନାତ୍ମକ ଶୁଭବିଶ୍ୱାସର ପ୍ରତ୍ୟାଶା ରଖିଛି ।

**ଶୈଳୀ :**

ପୂର୍ବରୁ କୁହାଯାଇଛି ଯେ ଶ୍ରୀ ସଚ୍ଚିଦାନନ୍ଦ ରାଉତରାୟଙ୍କ ଉତ୍ତରଦାୟାଦ ଆତ୍ମନେପଦୀୟ ସୌଭାଗ୍ୟମିଶ୍ର ଗୁରୁପ୍ରସାଦ ଓ ରମାକାନ୍ତଙ୍କ ପ୍ରତିଷ୍ଠିତ ଶିଳ୍ପ ପ୍ରକରଣରୁ ମୁକ୍ତ ହେଲାବେଳେ 'ମଧ୍ୟପଦଲୋପୀ' ଓ 'ନଈପହଁରା'ରେ ପରୀକ୍ଷାନିରୀକ୍ଷାରେ ଧ୍ୟାନନିଷ୍ଠ ହୁଅନ୍ତି । ଏହି ପର୍ଯ୍ୟାୟରୁ ଅନେକ କବିତା ଗୀତିଧର୍ମିତା ହରାଇ ରୁକ୍ଷଗଦ୍ୟ ପରି ପ୍ରତୀତ ହୁଏ । ପୁନଶ୍ଚ ଏହି ପର୍ଯ୍ୟାୟରେ ଶ୍ରୀ ମିଶ୍ରଙ୍କ କାବ୍ୟଚେତନାର ବିସ୍ତର ବଡ଼ ଦୁରୂହ ମନେହୁଏ । 'ଅନ୍ଧ ମହୁମାଛି' କାବ୍ୟଗ୍ରନ୍ଥରେ ଶ୍ରୀ ମିଶ୍ର ବେଶ୍ ପରିଣତମୁଖୀ । ଦୃଷ୍ଟିକୋଣ ବେଶ୍ ସ୍ପଷ୍ଟ ଓ ପରିଚ୍ଛନ୍ନ । ପାଠକ ସହିତ ପ୍ରତ୍ୟକ୍ଷ ଯୋଗସୂତ୍ର ରକ୍ଷା କରିବାରେ ଏହା ଅଧିକ କ୍ଷମ ।

ଯେ ଯାହାହେଉ, ଏହା ସର୍ବବାଦୀସ କଥା ଯେ ସ୍ରଷ୍ଟା ସବୁକାଳରେ ସ୍ୱପରି-ବେଷଣୋଚିତ ମୌଳିକତା ଦାବିକରେ । ଶ୍ରୀ ମିଶ୍ର ଭାଷା ବ୍ୟବହାରରେ ପ୍ରଚଳିତ ପଦ୍ଧତିଠାରୁ ଅନେକ ବ୍ୟତିକ୍ରମ ସୃଷ୍ଟି କରିଛନ୍ତି । ଶବ୍ଦ ନିର୍ବାଚନର ଅସାଧାରଣ କୌଶଳ ତାଙ୍କ ଭାଷାକୁ ଖୁବ୍ ଓଜନଦାର ଓ ଭାବବାହୀ କରିଛି; ତାଙ୍କ ବକ୍ତବ୍ୟକୁ ତୀକ୍ଷ୍ଣ, ସୂଚନାଧର୍ମୀ ଓ ପ୍ରଭାବଶାଳୀ କରିଅଛି । ଶବ୍ଦବିନ୍ୟାସ ବା ଶବ୍ଦସଂଯୋଜନାକୁ ଦର୍ଶାଇବା ପାଇଁ ନିମ୍ନଲିଖିତ କେତୋଟି ପଂକ୍ତିରୁ ଉଦାହରଣ ଦିଆଯାଇପାରେ । ଯଥା : ଶୀର୍ଣ୍ଣ ନଦୀ ନିଷ୍ଫଳ ପାଣିରେ, ପବନର ଅକୁଣ୍ଠିତ ଚୁମା, ମୁଗଧାର ସଘନ ଖାଫଲା, ଅମାବାସ୍ୟାର ଓଜସ୍ୱୀ ଆକାଶ, ଶୈଳୀ ସମୃଦ୍ଧ ଜଙ୍ଗଲ, ସୂର୍ଯ୍ୟକରର ବାବଦୂକ ଅପରାହ୍ଣ, ଅପହୃତ କ୍ଷମାର ଶେଷ ଝଲକ, କଲ୍‌ବଲ୍ ଉଚ୍ଛ୍ୱାସରେ ହାବୁକାଏ ପବନ, ଶୁଖିଲା ପତ୍ରର ଆକୁଳ ଆକାଶ, ମୋକ୍ଷଲୋଭୀ ସଡ଼କର ଆତୁରତା, ଗଦ୍ ଗଦ୍ ଗେଟ୍‌ର ବାହୁପାଶ, ଶ୍ରମୁକ : ଚକ୍‌ମିକ୍ କାକରରେ ଇତ୍ୟାଦି ଇତ୍ୟାଦି । ବାକ୍ୟଗଠନର ସାର୍ଥକ ପ୍ରୟୋଗକାରୀ ଶ୍ରୀ ମିଶ୍ର । ଏଥିରେ ତାଙ୍କର ଅଧିକ ଶକ୍ତିମତ୍ତା ଓ ଉତ୍ତାପ ସଂରକ୍ଷିତ । ଶବ୍ଦର ଧ୍ୱନିବୈଭବ ଉପରେ ସେ ଖୁବ୍ ଗୁରୁତ୍ୱ ଦେଇଛନ୍ତି । ପ୍ରଶ୍ନବାଚୀ ଓ ବିସ୍ମୟସୂଚକ ଚିହ୍ନର ପ୍ରୟୋଗରେ କବିତାର ଭାବପ୍ରବୋଧକ ଶକ୍ତି ବଢ଼ିଛି । କଥାରେ କଥାରେ ସେ କବିତା ସୃଷ୍ଟି କରିଛନ୍ତି । 'ନଈପହଁରା' ଓ ବିଶେଷକରି 'ଅନ୍ଧ ମହୁମାଛି' ଗ୍ରନ୍ଥରେ ଏହାର ପ୍ରମାଣ ସୁଲଭ ।

''କି ପ୍ରକାଣ୍ଡ ସୂର୍ଯ୍ୟ ହେବନି/କି ଉଜ୍ଜ୍ୱଳ ଶରନ୍ୟାସ ଆକାଶରେ !/ସେ କି ମୃତ୍ୟୁ ? ନା ମୃତ୍ୟୁର ସରଳାର୍ଥ ଖାଲି ?'' (ଦୃଶ୍ୟାନ୍ତର)

"ତୋ' ପୃଥିବୀରେ ଆଉ ସାମ୍ରାଜ୍ୟ ଅଛି ତ ?" (ହୃଦୟେଶ୍ୱରୀ)

"ଅନ୍ୟ ପକ୍ଷରେ ଶ୍ରୀମନ୍ତ ପତ୍ନୀ ମନେପଡ଼ୁଛି ?
ମୁଣ୍ଡ ଟେକି ଚାଲିବା ତା'ର ଅଭ୍ୟାସ ।"

ଶ୍ରୀ ମିଶ୍ରଙ୍କ ଶୈଳୀ ନାଟକୀୟ ଓ ଗୀତିମୟ । ଏହା ତାଙ୍କ ଆବେଗକୁ ଯଥେଷ୍ଟ ଗାମ୍ଭୀର୍ଯ୍ୟ ଯୋଗାଇଛି ଓ ପ୍ରକାଶର ଭାଷାକୁ ଯୋଗାଯୋଗକ୍ଷମ କରାଇଛି । "କାହିଁକି ଏତେ ଦୃଢ଼ଚମତ୍କରେ ଗାଈଆଳ, ତମ ଗାଁ ଏଠୁ କେତେଦୂର ?/ନଦୀର ତୀକ୍ଷ୍ଣ ବାୟୋନେଟ୍ ଅଗରେ/ଟେନାଏ ମାଂସ ତମ ଗାଁ ? (କଇଁଆ ଗଛ ଅଗରେ)

ବାକ୍ୟ ଗଠନରେ ଅନୁପ୍ରାସିକ ଛଟା ଶ୍ରୀ ମିଶ୍ରଙ୍କ ଅନ୍ୟ ଏକ ବିଶେଷତ୍ୱ । 'ଈଶ୍ୱରଙ୍କ ପ୍ରତି', 'ଶବରୀ', 'ସକାଳ ବୋଧେ ସାଢ଼େ ସାତଟା' ପ୍ରଭୃତି କବିତା ଏହା ସପକ୍ଷରେ ସାକ୍ଷ୍ୟ ଦେବେ । ଏଇଠି କହିରଖିବା ଆବଶ୍ୟକ ଯେ ପ୍ରୟୋଗବାଦୀ କବିତାରେ ବ୍ୟବହୃତ ମିଥ୍ ବା ପୌରାଣିକ ସତ୍ୟ ଶ୍ରୀ ମିଶ୍ରଙ୍କ କବିତାରେ କ୍ୱଚିତ୍ ପରିଦୃଷ୍ଟ ହୁଏ । ଏ ପ୍ରତି କବିଙ୍କର ବିଶେଷ ଉନ୍ମୁଖତା ପ୍ରକାଶ ପାଇନାହିଁ ।

ପ୍ରତୀକ ବ୍ୟବହାର କ୍ଷେତ୍ରରେ ସୌଭାଗ୍ୟ ମିଶ୍ରଙ୍କ ମୌଳିକତା ଓ ଅନନ୍ୟତା ଅଧ୍ୟୟନ କରାଯାଇପାରେ । ଗତାନୁଗତିକ ଢାଞ୍ଚାର ସେ ଆଦୌ ପ୍ରୟୋଗ କରି ନାହାନ୍ତି । ତାଙ୍କର ପ୍ରତୀକ ବେଶ୍ ଚିତ୍ରଧର୍ମୀ ଓ ଭାବପ୍ରବୋଧକ । ଘର, ଶବ, ନଈ, ସମୁଦ୍ର, ବାଲି, ଜାହାଜ, ପବନ, ସୂର୍ଯ୍ୟ, ରକ୍ତ ଆଦି ବହୁ ବ୍ୟବହୃତ ପ୍ରତୀକ ଭିନ୍ନଭିନ୍ନ ସ୍ଥାନରେ ଭିନ୍ନ ଭିନ୍ନ ଅର୍ଥ ପ୍ରତୀତ କରନ୍ତି । ଯଥା 'ଦୃଶ୍ୟାନ୍ତର' କବିତାକୁ ଲକ୍ଷ୍ୟ କରାଯାଉ । ଏଠାରେ ପ୍ରତୀକ ଓ ଚିତ୍ରକଳ୍ପ ଭିତରେ ବ୍ୟବଧାନ ନାହିଁ । ଦୃଶ୍ୟମାନ ଏହିପରି : 'ଧାଈର ହାତରେ ରକ୍ତ, ବେଳେବେଳେ ଧାଇ ହସୁଥାଏ', 'ବର୍ଗ ବନ୍ଧନୀ ଭିତରେ ଅଙ୍କ ମାଡିଥାଏ', 'କଙ୍କି ଉଡ଼ି ବୁଲୁଥାନ୍ତି ଅରଖ ଗଛରେ', 'ଘଡ଼ି ଠିଆ ହୋଇଥାଏ ଦରୁଆନ ପରି', 'ଝିଅ ଛବି ଆଙ୍କୁଥାଏ', 'ବଢ଼ିଲା ନଈରେ କାଠିକୁଟା କେତେ କ'ଣ ଭାସିଯାଉଥାଏ', ଦୁଇଁ ଖଟୁଲି ଆଗରେ ଆମ୍ବ ଓ କଦଳୀ', 'ଝାଡଗଦାରେ ଛତୁ ଓ ତାସ୍ତୁପ ଉପରେ ବଲା, ବଲାର ପାଖରେ ହରିପଟ', 'ଗାଈ ଚରୁଥାଏ ପଡ଼ିଆରେ', 'ଜୁଇ ଜଳୁଥାଏ' । ଆମର ଜନ୍ମ, ଜୀବନଚର୍ଯ୍ୟା, ସଂସାର, ସମୟର କ୍ଷୟଶୀଳତା, ଦୁର୍ଘଟଣା, ମୃତ୍ୟୁ ( ଶ୍ମଶାନରେ ଜୁଇ ଜଳିବା ), ଆତ୍ମା ପରମାତ୍ମାର ମିଳନକୁ ଏଇ ପ୍ରତୀକଚିତ୍ର-ମାନଙ୍କରେ ଦର୍ଶାଇ ଦିଆଯାଇଛି । ସେମିତି 'ଅନ୍ଧ ମହୁମାଛି'ରେ 'କଣ୍ଟକରେ, କଦମ୍ବରେ, ଖଟରେ ଠାରୁ ଆରମ୍ଭକରି ଫୁଲରେ ଓ କୁଷ୍ଠରୋଗୀର ଘା'ରେ' ପର୍ଯ୍ୟନ୍ତ କଷ୍ଟ କଳ୍ପିତ ନଶ୍ୱର ପ୍ରତୀକର ବିଚରଣ ଲକ୍ଷ୍ୟ କରାଯାଇପାରେ । ଓଡ଼ିଆ କବିତାରେ ଏହା ସଂପୂର୍ଣ୍ଣ ନୂତନ ପ୍ରୟୋଗଭାବେ ସ୍ୱୀକୃତ ହେବ । 'ଯାତ୍ରା ସଙ୍ଗୀତ' ଓ 'ତ୍ୱାଲାଲମ୍ପୁର'ରେ ଭିନ୍ନ

ଭାବରେ ସେ ପ୍ରତୀକର ପୁଣି ଏକ ନୂଆ ପରୀକ୍ଷା କରିଛନ୍ତି । ଶ୍ରୀ ମିଶ୍ରଙ୍କ କବିତାରେ ପ୍ରତୀକ ହିଁ ବିଶେଷତଃ ଚିତ୍ରକଳ୍ପ ଭାବରେ ପ୍ରୟୋଗ କରାଯାଇଛି ।

ଚିତ୍ରକଳ୍ପ ପ୍ରୟୋଗରେ ଶ୍ରୀ ମିଶ୍ର ବିପୁଳ ସାର୍ଥକତା ଅର୍ଜନ କରିଛନ୍ତି । ପ୍ରାଥମିକ ଅବସ୍ଥାରେ ଚିତ୍ରକଳ୍ପଗୁଡ଼ିକ ରୋମାଣ୍ଟିକ ପରିବୋଛ୍ୱାସର ତରଙ୍ଗରେ ସମାହୃତ । Telescoped ଓ pictured Imageryର ବହୁଳ ପ୍ରୟୋଗ ଶ୍ରୀ ମିଶ୍ରଙ୍କଠିଁ ସୁଲଭ । ଚିତ୍ରକଳ୍ପର ବିଭାଗୀକରଣ ନକରି ଆମେ ତାହାର ଏକ ସଂକ୍ଷିପ୍ତ ତାଲିକା ପ୍ରଦାନ କରିପାରିବା । ଚିତ୍ରକଳ୍ପଗୁଡ଼ିକ ପରିଚିତ। ପରିବେଶରୁ ସଂଗୃହୀତ । ରୋମାଣ୍ଟିକ ଭାବୋଚ୍ଛ୍ୱାସର ଚିତ୍ରକଳ୍ପଗୁଡ଼ିକ ରୋମାଣ୍ଟିକ ଶବ୍ଦପୁଞ୍ଜକୁ ନେଇ ନିର୍ମିତ । ଆଗରୁ କହିଛି, ଶ୍ରୀ ମିଶ୍ରଙ୍କ ପ୍ରତୀକଗୁଡ଼ିକ ଚିତ୍ରଧର୍ମୀ, ଅନ୍ୟ ଅର୍ଥରେ ଚିତ୍ରକଳ୍ପଗୁଡ଼ିକ ମଧ୍ୟ ପ୍ରତୀକଧର୍ମୀ । ତେବେ ସାଦୃଶ୍ୟଗତ ଚିତ୍ରର ଆଧିକ୍ୟ ତାଙ୍କ ରଚନାରେ ପରିଳକ୍ଷ୍ୟ । ପ୍ରକୃତି ଓ ଋତୁର ରୂପ, ରଙ୍ଗ, ବିଭବର ଆକର୍ଷଣ ତାଙ୍କ ଚିତ୍ରକଳ୍ପ ରଚନାରେ ବିଶେଷ ଖୋରାକ ଯୋଗାଇବା ମନେହୁଏ । ଶ୍ରେଷ୍ଠ ବଡ଼ କେତୋଟି ଚିତ୍ରକଳ୍ପର ଉଦାହରଣ ନିମ୍ନରେ ଦେଇ ଶ୍ରୀ ମିଶ୍ରଙ୍କ ଶିଳ୍ପ ପ୍ରକରଣର ସଂକ୍ଷିପ୍ତ ଆଲୋଚନା ସହିତ ଏ ପ୍ରବନ୍ଧର ଉପସଂହାର କରାଯାଉଛି । ଯଥା : 'ତମ ଖୋଲା ପିଠି ପରି ଏଇ ଜହ୍ନରାତି', 'ତୁମକୁ ମୁଁ ଓଦା ଦେବୀ ଦେଖିଥିଲି ଜହ୍ନ ଝରଣାରେ', 'ଦୁଧିଆଲି ଗାଈ ପରି ମେଘ ଖଣ୍ଡେ କାହିଁ ଚରିବୁଲେ', 'ଅନ୍ଧକାର ଗହଳ ଖୋପାରେ/ଲକ୍ଷ ତାରା ଝଟକବେ ନୂଆବୋହୂ କାନଫୁଲ ପରି', 'ତମ ଦେହ ବସନ୍ତରେ ଚଢ଼େଇଙ୍କ ଏତେ କଳରବ', ମୁମୂର୍ଷୁ ସନ୍ଧ୍ୟାର ପ୍ରାଣର ଛଟପଟ ଆକାଶର ମଇଳା ଶେଯରେ', 'ସୂର୍ଯ୍ୟ ତ ମିଳାଇଯାଏ ଝଟି ପରି ପାହାଡ଼ ସେପାରେ', 'ସୂର୍ଯ୍ୟାସ୍ତ ଝୁଲିଯୁଥିଲା ଈଶ୍ୱରଙ୍କ ଅଭିଶାପ ପରି', 'ବସନ୍ତ ଝୁଲୁଛି ଛିଣ୍ଡାଇଲା ଘୁଡ଼ିପରି', 'ଅଇଁଠା ଥାଳିରେ ମାଛକଣ୍ଟା ପରି ମୁଁ', 'ପଶ୍ଚିମ ଆକାଶ ଖାସିକଟା କାଗାଫରି ନାଲି', 'ପଣାକାଠି ପରି ତୋର ଦେହ', 'କଂସାବାଟି ପରି ସ୍ଥିର ମୁହଁ', 'ସାପପରି ମସୃଣ ସମସ୍ତ', 'ଗଛ ଗଣ୍ଡେ ଶୁଖିଲା ହାତ ଗଲା ଗ୍ରୀଷ୍ମର', 'ଘଣ୍ଟାରୁ ଖସି ପଡ଼ୁଥିବା ମିନଟ୍ କଣ୍ଟା ପରି ଗୋଟେ ଗୋଠଛଡ଼ା ଗାଈ', 'ଶରି ସବୁ କି ମାଛଧରିଲା', 'ନଗ୍ନର ତୀକ୍ଷ୍ଣ ବାୟୋନେଟ୍ ଅଗରେ ଚେନାଏ ମାଂସ ତମ ଗାଁ', 'ଦୁଇପାଖରେ ସମୁଦ୍ର ଅନନ୍ତ ଅବିରାମ ନବଦୂର୍ବାଦଳଶ୍ୟାମ ଇତ୍ୟାଦି ଇତ୍ୟାଦି ।' ସାଧନା ଅନୁବ୍ରତୀ ଏଇ କାବ୍ୟ-ଶିଳ୍ପୀଙ୍କ ଶିଳ୍ପଚେତନା ଏବେ ବିକାଶମୁଖୀ, ପରିଣତ ତଥାପି ବାକି ରହିଛି ।

( ସହାୟକ : ଶ୍ରୀ ଦାଶରଥି ଦାସଙ୍କ କବିତା ସଂପର୍କିତ ବିଭିନ୍ନ ଆଲୋଚନା । )

# ନିର୍ଜନ ନକ୍ଷତ୍ରରୁ ଶୂନ୍ୟତାର
# ଶୋଷ : ଦୀପକ ମିଶ୍ରଙ୍କ କବିତା

ଏକ :

ଅଦ୍ୟାବଧି ୧୧ ଗୋଟି କବିତା ସଙ୍କଳନର ପ୍ରଣେତା କବି ଦୀପକ ମିଶ୍ରଙ୍କ କାବ୍ୟକୃତି ବିଚାର କଲାବେଳେ ମୁଁ ତାଙ୍କର ଉତ୍ତର-ସତୁରି କାଳରେ ପ୍ରକାଶିତ ୬ଟି କବିତା ସଙ୍କଳନକୁ ଗ୍ରହଣ କରିଛି । ସେଗୁଡ଼ିକ ହେଉଛି : ନିର୍ଜନ ନକ୍ଷତ୍ର (୧୯୭୧), ମଧ୍ୟାହ୍ନର ଗ୍ରୀଳ (୧୯୭୪), ବୃତ୍ତ (୧୯୭୫), ସପ୍ତମ ପୃଥିବୀ (୧୯୭୭), ଅରଣ୍ୟ ମର୍ମରି (୧୯୭୯) ଏବଂ ଶୂନ୍ୟତାର ଶୋଷ (୧୯୮୧) । ଏଇ ନିର୍ଦ୍ଦିଷ୍ଟ ଦଶନ୍ଧିରେ ଶ୍ରୀ ମିଶ୍ରଙ୍କ କାବ୍ୟ ଆଭିମୁଖ୍ୟ ସ୍ପଷ୍ଟ, ନିର୍ଦ୍ଦିଷ୍ଟ ଓ ଉତ୍ତରଣମୁଖୀ । ଏ ଉତ୍ତରଣ ମୁଖ୍ୟତଃ ଏକ ଉଦ୍ବିଗ୍ନ ଚେତନା ତଥା ଦୁଃସହ ଯନ୍ତ୍ରଣାକୁ ଆତ୍ମସ୍ଥ କରି ପ୍ରଚଣ୍ଡ ଜୀବନ-ଲୋଭର ଉଜ୍ଜ୍ୱଳ ଆଡ଼କୁ । କେବଳ ଭାବଗତ ଦୃଷ୍ଟିରୁ ନୁହେଁ; କବିତାର ଗଠନଶୈଳୀ ଏତେ ତୀକ୍ଷ୍ଣ ଓ ଆବେଦନଧର୍ମୀ ହୋଇଛି ଯେ ତନ୍ମଧ୍ୟରେ ବେଳେବେଳେ ତଥାକଥିତ ଭାଷାର ହାଡ଼ ମଧ୍ୟ ଭାଙ୍ଗି ଯାଇଛି । କବି ଶ୍ରୀ ମିଶ୍ରଙ୍କ କବିତାର ବିଚାର ପୂର୍ବରୁ ତାଙ୍କ ଉତ୍ତର-ସତୁରି କବିତାର ବିଭିନ୍ନ ମୋଡ଼ ସମ୍ପର୍କରେ ଏକ ପ୍ରାକ୍ ସୂଚନା ପ୍ରଦାନ କରିବା ।

'ନିର୍ଜନ ନକ୍ଷତ୍ର'ର ମୁଖ୍ୟସ୍ୱର ମୃତ୍ୟୁ ସଚେତନତା । ମୃତ୍ୟୁ ପ୍ରତି କାବ୍ୟପୁରୁଷର ରହିଛି ଏକ ପ୍ରଶ୍ନମନସ୍କ ଦାର୍ଶନିକ ଦୃଷ୍ଟିଭଙ୍ଗୀ । ମୃତ୍ୟୁକୁ କାବ୍ୟପୁରୁଷ ବହୁ ପରୀକ୍ଷାନିରୀକ୍ଷା କରି ସତେ ଯେମିତି ତା'ର ସ୍ୱରୂପ ଅନୁସନ୍ଧାନ ପାଇଁ ଚେଷ୍ଟିତ ରହିଛି । ଏଠାରେ ଜୀବନ-ଲୋଭର ମାତ୍ରା ଖୁବ୍ ବେଶୀ ଫୁଟି ପାରି ନାହିଁ । ବରଂ ଏଇ ସଚେତନତା ଦେଇ ଦେହବୋଧର ସ୍ୱରୂପ ଖୋଜାଯାଇଛି । 'ମୁଁ'କାର ଦ୍ୱାରା ଏକାନ୍ତ ଉଚାଟିତ ଭଙ୍ଗୀ ତଥା 'ନୀଳ' ଶବ୍ଦ, ନୀଳ ଦୃଶ୍ୟ, ଶାଗୁଣାର ଡେଣା, ନିଜ ଶବ ବୋହିବା, ଶବ ପୋଡ଼ା, ନିଆଁ ଆଦି ଦୃଶ୍ୟ ସଂଯୋଜନାରେ ବହୁ କବିତା ମୃତ୍ୟୁର କଳାତ୍ମକ ରୂପ ଆଙ୍କିଛନ୍ତି । ଏ ସତ୍ତ୍ୱେ ସବୁ ଅସୁନ୍ଦର ଓ କୁତ୍ସିତତାକୁ ଅତିକ୍ରମ କରି କାବ୍ୟପୁରୁଷ ନକ୍ଷତ୍ରର ଦ୍ୟୁତି ସକାଶେ ବସିରହିଛି । ଆଲୋକ ଓ ଅମୃତଆଡ଼କୁ ମୃତ୍ୟୁକୁ (ଅନ୍ୟ ଅର୍ଥରେ ଜୀବନକୁ) ନେଇ-ଯିବାର ଅଭୀପ୍ସା ଏଥିରେ ପ୍ରକଟିତ ।

'ମଧ୍ୟାହ୍ନର ଗ୍ରୀଳ' ବେଳକୁ କବି ବାସ୍ତବ ମହାଲଣ ଜୀବନଚର୍ଯ୍ୟାର ଭୂମିକୁ ଓହ୍ଲାଇ ଆସିଛନ୍ତି । ଜୀବନଯନ୍ତ୍ରଣା, ଦେହଚେତନା ଓ ଈଶ୍ୱର ଅଭିନିବେଶ ହୋଇଛି

କବିତାର ପ୍ରଧାନ ଅନ୍ତଃସ୍ୱର । ଜୀବନଯନ୍ତ୍ରଣାର ଅଙ୍ଗୀକାର ଓ ତହିଁରୁ ଉତ୍ତୀର୍ଣ୍ଣ ହେବା ପାଇଁ କାବ୍ୟପୁରୁଷର ବ୍ୟାକୁଳତା ଏଠାରେ ରସୋତ୍ତୀର୍ଣ୍ଣ । ଏଠାରେ ରହିଛି ମଧ୍ୟାହ୍ନର ତପ୍ତତନ୍ଦ୍ର ସ୍ୱରରେ ଆଉଟି ହେବାର ନିବିଡ଼ ଅନୁଭବ ଏବଂ ତତ୍‌ସହିତ ଏକ ଗ୍ରୀଷ୍ମଶୀତଳ ସମ୍ଭାବନା । ଅନ୍ୟଅର୍ଥରେ ପ୍ରଖର ଜୀବନାନୁଭବର କାରୁଣ୍ୟ ସହିତ ଏକ ଶୀତଳ ଆଶ୍ୱାସନା, ଏ ସଙ୍କଳନର ଅନେକ କବିତାର ଅନ୍ତଃସ୍ୱର ।

'ବୃତ୍ତ'ର କବି ପ୍ରେମର କବି । ପ୍ରେମ ସହିତ ଦେହ (କାମ) ଓ ମୃତ୍ୟୁଚେତନା ଯେମିତି ହାତ ଧରାଧରି ହୋଇ ଚାଲିଛନ୍ତି । 'ବୃତ୍ତ'ରେ ପ୍ରେମ ଓ ପ୍ରେମିକାକୁ ଏକ ଉଚ୍ଚ ସ୍ତରକୁ ନିଆଯାଇଛି । ପ୍ରେମଚେତନାର ଏକ ଉତ୍ତରଣ ସ୍ୱର ବୃତ୍ତର ଅଧିକାଂଶ କବିତାରେ ପ୍ରତିଫଳିତ । ଦେହ, ମନ, ହୃଦୟର ବିଭିନ୍ନ ଆବେଗ ଯେମିତି ଏ ବୃତ୍ତର ପରିଧି । 'ବୃତ୍ତ'ର ପ୍ରେମଚେତନା କେତେବେଳେ ସମର୍ପଣ-ବିହ୍ୱଳର ତ କେତେବେଳେ ଦେହାନୁଭବରେ ଉତ୍ତୀର୍ଣ୍ଣତା-ପ୍ରତ୍ୟାଶୀ । 'ବୃତ୍ତ' ସଙ୍କଳନରେ କାବ୍ୟ-ଆବେଗ ଏକାନ୍ତ ପ୍ରାଣବନ୍ତ ଓ କବିତାମାନଙ୍କର ସଙ୍ଗୀତମୟତା ଏକାନ୍ତ ଉପଭୋଗ୍ୟ । 'ସପ୍ତମ ପୃଥିବୀ'ରେ କବି ବୃତ୍ତ ଅନୁଭବରୁ ବେଶୀଦୂର ଯାଇପାରି ନାହାନ୍ତି ।

'ଅରଣ୍ୟ ମଇଁଷି' ସଙ୍କଳନ ନିର୍ଜନ ନକ୍ଷତ୍ରର ରୂପାନ୍ତର ବା ଉତ୍ତରଣ । ଏଠାରେ ମୃତ୍ୟୁପ୍ରତି କବିଙ୍କ ପ୍ରସନ୍ନମନସ୍କ ପରୀକ୍ଷାମୁଖୀ ଦୃଷ୍ଟିଭଙ୍ଗୀ ଉଭେଇ ଯାଇଛି । ମୃତ୍ୟୁସଚେତନତା ହୋଇଛି ଏକାନ୍ତ ଭାବେ ଜୀବନଧର୍ମୀ । ଏହି ମୃତ୍ୟୁକୁ କବି ନିଜ ପାଖାପାଖି ବସାଇ ମୃତ୍ୟୁଜନିତ କାରୁଣ୍ୟ ବା ପରିବେଶରୁ କାବ୍ୟରସିକୁ ଉତ୍ତୀର୍ଣ୍ଣ କରାଇଛନ୍ତି । କବିଙ୍କର ମୃତ୍ୟୁପ୍ରତି ରହିଛି ସ୍ନେହକୋମଳ ବ୍ୟଙ୍ଗବିଦ୍ରୂପ । 'ଅରଣ୍ୟମଇଁଷି'ରେ ମୃତ୍ୟୁ ମୁଖ୍ୟ ନୁହେଁ; ଜୀବନଯାପନର ବିଭିନ୍ନ ଦିଗ, ଜୀବନଯନ୍ତ୍ରଣାର ବିଭିନ୍ନ ରଙ୍ଗ ବାଙ୍ମୟ ଦିଶେ । ଜୀବନ ସଂଗ୍ରାମର ବହୁଧା ଚିତ୍ର ଉପସ୍ଥାପନ କରି କବି ଜୀବନକୁ ମୃତ୍ୟୁମୟ ଏବଂ ମୃତ୍ୟୁକୁ ଜୀବନମୟ କରି ଦେଇଛନ୍ତି । ଜୀବନର ଜୟଯାତ୍ରା ନିକଟରେ ମୃତ୍ୟୁ ବଡ଼ ନିର୍ଜନ ବା ଅରକ୍ଷିତ ଦିଶିଛି । ଏ ସଙ୍କଳନ ଏକାନ୍ତ ସ୍ୱତନ୍ତ୍ର ସ୍ୱାଦର ଯେମିତି 'ନିର୍ଜନ ନକ୍ଷତ୍ର' ବା 'ବୃତ୍ତ' ।

'ଶୂନ୍ୟତାର ଶୋଷ'ରେ ଜୀବନଯାପନର ବିଭିନ୍ନ ମୋଡ଼ ବା ଭଙ୍ଗୀରୁ ଆସିଛି ଏକ ପୂର୍ଣ୍ଣତା ପାଇଁ ମୋହ । ସେଇ ପରିପ୍ରେକ୍ଷୀରେ ଶୂନ୍ୟତାର ମୁହଁ କବିଙ୍କୁ ଜଳଜଳ ଦିଶିଛି । ଶୂନ୍ୟତା ଏଠାରେ ଚରିତ୍ରୀଭୂତ । ତା'ର ଶୋଷ ଅଛି । ସେ ଶୋଷ ଆମ ଜୀବନର ବହୁ କଥିତ ଓ ଅକଥିତ ଦିଗକୁ ସର୍ବାନ୍ତଃକରଣରେ ଛୁଇଁଛି । ଏଥିରେ ପ୍ରତିଫଳିତ ସ୍ୱର କବି ଜୀବନର ଗଭୀର ଅଭିଜ୍ଞତାର ସଞ୍ଚୟରୁ ସଞ୍ଜାତ । କାବ୍ୟପୁରୁଷ ଶୂନ୍ୟତାର ବହୁବିଧ ଶୋଷ ବା ଶୋଷର ବହୁବିଧ ଶୂନ୍ୟତାକୁ ବୁଝିଲାବେଳେ ଜୀବନର ଯାବତୀୟ ଦୁଃଖ

ଯନ୍ତ୍ରଣା, ଦର୍ଶନ ସର୍ବୋପରି ସ୍ୱୟଂ ଜୀବନମୟତାରେ ଏକ ପରିପୂର୍ଣ୍ଣ ଐଶ୍ୱର୍ଯ୍ୟ ଅନୁସନ୍ଧାନ କରିଛି ।

ବିଭିନ୍ନ ସଙ୍କଳନରେ ଏହି ସମସ୍ତ ଚେତନା କବିଙ୍କ ଅନୁଭୂତିକୁ ଘେରି ରହିଛି ଯାହା କ୍ରମେ କ୍ରମେ କାବ୍ୟସ୍ୱରକୁ ଏକ ଅଭିଜ୍ଞତାପୂର୍ଣ୍ଣ ରୂପାନ୍ତର ଦେଇଛି ।

ମୃତ୍ୟୁ :

ମୃତ୍ୟୁ ଏକ ରମଣୀୟ
ନିରାପଦ ସ୍ଥାନ
ରମଣୀର କୋଳପରି
ତା'ର ନାହିଁ କୌଣସି ପ୍ରସ୍ଥାନ ।

(ପାଞ୍ଚୋଟି କାହାଣୀ : ମଧ୍ୟାହ୍ନର ସ୍ତୁତି)

ଶ୍ରୀ ମିଶ୍ରଙ୍କ କବିତାରେ ପ୍ରତିଫଳିତ ଏ ବିଷୟକଳ ପରସ୍ପର ସମ୍ବନ୍ଧାନ୍ୱିତ । ଏଣୁ କବିଙ୍କ ମୃତ୍ୟୁସଚେତନତାକୁ ବିଶ୍ଳେଷଣ କଲାବେଳେ ଅନ୍ୟ ସ୍ୱରମାନଙ୍କୁ ଏଡ଼ାଇ ହୁଏ ନାହିଁ । 'ନିର୍ଜନ ନକ୍ଷତ୍ର' ଓ 'ଅରଣା ମଇଁଷି' ସଙ୍କଳନଦ୍ୱୟ ଏ ନିମିତ୍ତ ବିଶେଷ ବିଚାର୍ଯ୍ୟ । ଅନ୍ୟ ସଙ୍କଳନମାନଙ୍କରେ କିଛି କବିତା ଭିନ୍ନ ଅନେକ କବିତାରେ ମୃତ୍ୟୁସଚେତନତା ମିଶିକରି ରହିଛି । ପ୍ରଶ୍ନ ଉଠେ—ମୃତ୍ୟୁ ସମ୍ପର୍କରେ ଏତେ କବିତା କାହିଁକି ? ମରି ନଥିବା ବା ମୃତ୍ୟୁ ଲଭି ନଥିବା ଲୋକ ମୃତ୍ୟୁକୁ ଅନୁଭବ କରିବା କେତେ ସ୍ୱାଭାବିକ ? ଅବଶ୍ୟ ମୃତ୍ୟୁ ଅନୁଭବ ମୃତ୍ୟୁସମ୍ପର୍କୀୟ ଏକମାତ୍ର କଥା ହୋଇ ନ ପାରେ । ମୋର ମନେହୁଏ ମୃତ୍ୟୁର କାଳ୍ପନିକ କଳାତ୍ମକ ରୂପ ଆଙ୍କିବା ଏକ ଉଚ୍ଚକୋଟୀର କଳାକୃତି । ଦ୍ୱିତୀୟତଃ ଜୀବନଯନ୍ତ୍ରଣା-ଜନିତ ଅନୁଭୂତିକୁ ଗ୍ରହଣ କରିବା ପାଇଁ ମୃତ୍ୟୁକୁ ବିଭିନ୍ନ ସ୍ତରରେ ତନ୍ନତନ୍ନ କରିବା ଆଉ ଏକ ବୈଶିଷ୍ଟ୍ୟ । ଏଥିରେ ପ୍ରକୃତରେ ଜୀବନର ବିବେଚନା ହୋଇଥାଏ ଏବଂ ମୃତ୍ୟୁକୁ ଜୀବନର ଅଂଶବିଶେଷ ବୋଲି ଅବିଚ୍ଛିନ୍ନ ଘୋଷଣା କରାଯାଇଥାଏ । 'ନିର୍ଜନ ନକ୍ଷତ୍ର' ଓ 'ଅରଣା ମଇଁଷି'ର ମୃତ୍ୟୁସଚେତନତା ଯଥାକ୍ରମେ ଉପରଲିଖିତ ଦୁଇଟି ଉଦ୍ଦେଶ୍ୟକୁ ଉଣା ଅଧିକେ ଚରିତାର୍ଥ କରୁଛନ୍ତି । 'ନିର୍ଜନ ନକ୍ଷତ୍ର'ରେ ମୃତ୍ୟୁ ପରୀକ୍ଷାଗାରରେ । ବରଫ ଓ ଫୁଲର ମୂର୍ତ୍ତି, କଳା ଓ ଧଳା ଫୁଲର କ୍ରମାନ୍ୱୟ ସଜଡ଼ା ମାଳା, କଳାକଳା ଢେଉ, ଶୈବାଳ ଦ୍ୱୀପ, ମ୍ଳାନ ଅପରାହ୍ଣ, ତନ୍ଦ୍ରା, ନୀଳ ବରଫର ଝଡ଼, ନଆଁର ଦର୍ପଣ, ଶ୍ମଶାନ ଓ ଶବଦାହ, ସନ୍ତାନର ନରମ ଅଙ୍ଗୁଳିର ତୁଳା ଅଂଶ ଆଦି ଦୃଶ୍ୟ ଓ ପ୍ରତୀକ ସଂଯୋଜନାରେ କବି ମୃତ୍ୟୁର ଭିନ୍ନରୂପ ଆଙ୍କିଛନ୍ତି । ସେହି ଅନୁଭବରୁ ଆସିଛି ମୃତ୍ୟୁର ସ୍ୱରୂପ (ଅବଶ୍ୟ ମୁର୍ଦ୍ଦାର ଓ ଶ୍ମଶାନ କେବେ/ଏମା ପକ୍ଷରେ ମୃତ୍ୟୁର ପ୍ରତୀକ ନୁହେଁ—କୁହୁଡ଼ିର ପ୍ରତିଧ୍ୱନି), ସମସ୍ତ ସହିତ ତା'ର ସମ୍ପର୍କ (ସମସ୍ତ ହିଁ ମୃତ୍ୟୁକୁ ବାହାର କରେ / ଅଙ୍ଗିମର ଠେଲା ପରି

ତା'ର କଙ୍କାଳରୁ—ନୀଳ ଅପସ୍ମାରର ସନ୍ଧ୍ୟାର), ଦେହ, ପ୍ରେମ, ବୟସ, ସାବାଳକତ୍ୱ (ପ୍ରତ୍ୟେକ ମଣିଷ ହୁଏ ଥରେ ମାତ୍ର ବୟସ୍କ ଓ ସାବାଳକ ମୃତ୍ୟୁକୁ ଛୁଇଁଲେ—ତନ୍ଦ୍ରା ଓ ମୃତ୍ୟୁ) ସର୍ବୋପରି ମାୟା ଓ କାମନା (ଯେହେତୁ ମୋ ଶୋଇବା ଘର ଅଛେ/ଦକ୍ଷିଣ ଦିଗରେ ଓ ସେଠାରେ ବାରମାସ ଇତସ୍ତତଃ ଚରୁଥାନ୍ତି ସୁନ୍ଦର ମଇଁଷି/ଯେଠାରେ ବି ଦେଖାଯାନ୍ତି/ବେଳେବେଳେ ବିଧବାଙ୍କ ରକ୍ତାକ୍ତ ବଦନ—ଓ୍ୟାଶଜା ବସ୍ତ୍ର ବିଗତ ଦିନର) ତଥା ବୈରାଗ୍ୟର ସ୍ୱରୂପ ଇତ୍ୟାଦି ଜୀବନର ବହୁ ଦିଗ ଓ ଭାବ ସମ୍ପର୍କରେ ଏକ ତାର୍କିକ ଓ ବୌଦ୍ଧିକ ବିଶ୍ଳେଷଣ। କବିଙ୍କର ମୃତ୍ୟୁ ପ୍ରତି ଦୃଷ୍ଟିକୋଣ ରହସ୍ୟମୟ, ପ୍ରଶ୍ନମନସ୍କ ଓ ଉଦାର। ଏଇ ଦୃଷ୍ଟିକୋଣ ଅଧିକ ଉଦାର ଓ ସ୍ନେହମୟ ରୂପ ନେଇ ଉତ୍ତରଣମୁଖୀ। ତାହା ପୁନଶ୍ଚ ରମଣୀର କୋଳ, ପ୍ରଥମ ଶ୍ରେଣୀର ବିଶ୍ରାମାଗାର, ବିଶୁଦ୍ଧ ବିଭୂତି, ଶବ୍ଦ, 'ଅରଣା ମଇଁଷି' ଓ 'ଦନେଇ'ର କୋଳାକୋଳି, ଅବେଳ, ବନ୍ଧୁ, ଗୋଲପୋଷ୍ଟ, ନୀଳମେଘ ପ୍ରଭୃତି ଦୃଶ୍ୟ ଓ ପ୍ରତୀକ ମାଧ୍ୟମରେ ସମ୍ପ୍ରସାରିତ ବା ରୂପାନ୍ତରିତ ହୋଇଛି। ଶ୍ରୀ ମିଶ୍ରଙ୍କ ଦୃଷ୍ଟିରେ ମୃତ୍ୟୁର ମଧ୍ୟ ସ୍ୱୟଂସମ୍ପୂର୍ଣ୍ଣ ଜୀବନ ରହିଛି। ଶୈଶବଠୁ ବାସରଘର ଏବଂ ସେଠୁ ବାର୍ଦ୍ଧକ୍ୟ ଯାଏ ତା'ର ବିଭିନ୍ନ ଉତ୍ତାପ, ବିଭିନ୍ନ ରୁଚି। ଅରଣା ମଇଁଷିର ଶୃଙ୍ଗ ଉହାଡ଼ରେ ଏ ସଂସାର କେବଳ ମୃତ୍ୟୁମୟ ଓ ବିଷାଦମୟ। କିନ୍ତୁ ତାହାହିଁ ଆମର ଜୀବନ। ମୃତ୍ୟୁକୁ ଅହରହ ଭେଟିବା, ତା' ସହ କୌତୁକ କରିବା ଏବଂ ପ୍ରଶ୍ନବାଣ ଇତ୍ୟାଦି ଦ୍ୱାରା ମୃତ୍ୟୁକୁ ବିବ୍ରତ ଓ ଜର୍ଜରିତ କରିବା ସର୍ବୋପରି ମୃତ୍ୟୁକୁ ମୃତବତ୍ସା ମା'ର ପଣତକାନି ତଳେ ସନ୍ତାନର ସ୍ନେହ ଦେଇ ଅନୁତାପରେ ସନ୍ତୁଳିବା ଦ୍ୱାରା କବି ମୃତ୍ୟୁକୁ ଏକାନ୍ତ ଭାବରେ ଜୀବନମୟ କରିଦେଇଛନ୍ତି। ମୃତ୍ୟୁ କେବଳ ଏକ ଶିଶୁ ରୂପରେ ମାଆର କୋଳକୁ ପୂର୍ଣ୍ଣ କରିନାହିଁ ('ମୃତ୍ୟୁକୁ କହିବି ବୁଝାଇ ସୁଝାଇ'—'ଭସାଣି') ଓ ତାହା ମଧ୍ୟ କେବେ ବିଶୁଦ୍ଧ ବିଭୂତି ପରି ଲୋକଙ୍କ କାନରେ ଝଡ଼ିପଡ଼ିଛି (ପାରିହେବ।)। ପୁନଶ୍ଚ ରଘୁ ସାହାଣୀ, ବଳରାମ ସୁଆର, ଶୁକ ବଡ଼େଇ, ଗୌରମୋହନ ମାଷ୍ଟ୍ରେ ଆଦି ଜୀବନସଂଗ୍ରାମ ନିରତ ଚରିତ୍ରମାନଙ୍କୁ ମୃତ୍ୟୁର ଦାଢ଼ରେ ବସାଇ କବି ଶ୍ରୀ ମିଶ୍ର ଜୀବନ ଲୋଭ ତଥା ଜୀବନ ଜୀଇଁବା ପାଇଁ ପ୍ରଚୁର ପ୍ରୋତ୍ସାହନ ସୃଷ୍ଟି କରିଛନ୍ତି। କବି ନିଜେ ମାତୃମୟ ଆଶ୍ୱାସନା ଦେଇ ମୃତ୍ୟୁର ଲୁହ ପୋଛି ଦେଇଛନ୍ତି—(ମୁଁ ପୋଛିବି/ମୃତ୍ୟୁର ଡେବା ଡେବା ଆଖିର ଲୁହ ରେଶମ ସୁତାରେ ପ୍ରଜାପତି ଉଡ଼ୁଥିବା ତୋ' ହାତ ତିଆରି ରୁମାଲ କୋଣରେ—)। ଏହି ମୃତ୍ୟୁସଚେତନତା ସହିତ କବି ସମୟ, ପ୍ରେମ ଓ ଈଶ୍ୱରଙ୍କ ଉପସ୍ଥିତିକୁ ବହୁ କବିତାରେ ବହୁ ଭାବରେ ଅର୍ଥମୟ କରିଛନ୍ତି। ମୃତ୍ୟୁର ଅନେକ ସଂଜ୍ଞା ମଧ୍ୟ ପ୍ରଦାନ କରିଛନ୍ତି। ଉତ୍ତର ସତୁରିର ଓଡ଼ିଆ କବିତାରେ କବି ରମାକାନ୍ତ ରଥଙ୍କ ଭିନ୍ନ ମୃତ୍ୟୁ-ସଚେତନତା ନେଇ କବି ଦୀପକ ମିଶ୍ରଙ୍କ ଜାଗା ସ୍ୱତନ୍ତ୍ର ଓ ବେଶ୍ ମର୍ଯ୍ୟାଦାମଣ୍ଡିତ। ଅଧିକ ଶୈଳିକ ଦକ୍ଷତା ଯେପରି ପ୍ରତୀକ, ଚିତ୍ରକଳ୍ପ ଓ ମିଥ୍ ମାଧ୍ୟମରେ ମୃତ୍ୟୁ ସଚେତନତାର

ସୂକ୍ଷ୍ମତମ ଦିଗମାନଙ୍କୁ ସେ ଖୋଜି ଚାଲିଛନ୍ତି ! (୧) ଏ ନେଇ ଭାରତୀୟ ପରମ୍ପରା ପ୍ରତି ଉନ୍ମୁଖତା ତଥା ବର୍ତ୍ତମାନ ପରିପ୍ରେକ୍ଷୀରେ ତା'ର ମାର୍ଜନ କବିଙ୍କ ମୃତ୍ୟୁସଚେତନତାକୁ ସାର୍ଥକ ରୂପ ଦେଇଛି ।

> ପ୍ରେମ ଏକ ରାଜପ୍ରାସାଦ; ମାଟି ଅବା ମାର୍ବଲରେ
> ହେଉ ଓ ମୋ ରୁଚି ଆଲୋକ ଏବେ ବି
> ଦିଶୁଛି ନିଖୁଣ ସେଇ ପଥର ଚଟାଣ ଉପରେ ଯେଉଁଠି
> ତୁମ ଦେହ ଦିନେ ଜଳୁଥିଲା ନିଜ ଆଲୁଅରେ ।
>
> (ପବନର ବି କାନ ଅଛି : କୃତ୍ତି)

କବି ଦୀପକ ମିଶ୍ରଙ୍କ କବିତା ଭୂଇଁର ଅନ୍ୟ ଏକ ମୁଖ୍ୟ ଅଞ୍ଚଳ ହେଉଛି ପ୍ରେମ । ଏ ପ୍ରେମ ଦେହର ଉତ୍ତାପ ନେଇ ଯେତିକି ଉଚ୍ଛ୍ୱସିତ; ହୃଦୟ ଓ ଆତ୍ମାର ଶୋଷ ନେଇ ସେତିକି ଆବେଗାୟିତ । ରକ୍ତମାଂସର ନାୟିକାମାନେ ବିଭିନ୍ନ ରୂପ ନେଇ ତାଙ୍କ ପ୍ରେମ ପରିଧିରେ ଆତଯାତ । ସେ ପରିଧିରେ ଅବଶ୍ୟ ରକ୍ତ, ଲୁହ ଓ କଳଙ୍କର ସମାବେଶ । କବି ବୁଝନ୍ତି 'ପ୍ରେମ ଓ ମୃତ୍ୟୁ ମଣିଷର ଶେଷ ଶବ୍ଦ' ଏବଂ 'ମୃତ୍ୟୁର ଅନ୍ଧାର ଘରକୁ ଆଲୋକିତ କରେ ପ୍ରେମର ଅତୀତ ଜୀବନ' (ବିସ୍ମୃତ) । କବିଙ୍କ ପ୍ରେମଚେତନା ସହିତ ବହୁ ଜାଗାରେ ମୃତ୍ୟୁଚେତନତା ମିଶିଯାଇ ରହିଛି (ମୋ' ଗ୍ରୀବାରେ/ଭଲ ପାଇବାର ଭୃଗୁ ପଦ ଚିହ୍ନ/ ମୋ' ପିଠିରେ/ମଲା ମଣିଷର ମଲା କଇଁ ବନ—ଦୃଷ୍ଟାନ୍ତ) । ଶ୍ରୀ ମିଶ୍ରଙ୍କ ରୋମାଣ୍ଟିକ୍ ଭାବନାସକଳ କେବଳ ଆବେଗମୁଖୀ ନୁହନ୍ତି; ତାହା ନିର୍ମମ ବାସ୍ତବତାକୁ ମଧ୍ୟ ବେଳେ-ବେଳେ ସ୍ୱାଗତ କରିଛନ୍ତି । କାବ୍ୟନାତ୍ମକ ପ୍ରେମକୁ ଉଚ୍ଚକୋଟୀରେ ବସାଇବାକୁ ଗଲାବେଳେ ଜ୍ୟୋତିଷ୍ମାନ ଗ୍ରହ, ମାନସରୋବରର ରକ୍ତକମଳ, କନ୍ୟାକୁମାରୀର ଶିଳା, ରାଧାକୃଷ୍ଣ ଯୁଗଳ ମୂର୍ତ୍ତି, ମିର୍ ଇତ୍ୟାଦି ଦୃଶ୍ୟ ଓ ଚରିତ୍ରର ଅବତାରଣା କରିଛନ୍ତି । ଶ୍ରୀ ମିଶ୍ରଙ୍କ ପ୍ରେମଚେତନାରେ ସମକାଳୀନ ସମୟର ପ୍ରବାହ ପ୍ରାୟ ନାହିଁ । ମଧ୍ୟଯୁଗୀୟ ପ୍ରେମ ଭାବନା ପ୍ରତି ପରମ୍ପରାମାନ୍ୟତା ଦୃଷ୍ଟେ କବିଙ୍କର କିଛିଟା ବିହ୍ୱଳ-ଆସକ୍ତି ରହିଛି । କାବ୍ୟନାତ୍ମକ ଇତିହାସ ପୃଷ୍ଠାରେ ଉଦ୍ଧତ ମଣିଷଙ୍କ ଜଙ୍କ୍ ଲଗା ତରବାରି ଅପେକ୍ଷା ପ୍ରେମିକାଙ୍କ ଦେହର ଚନ୍ଦନ ପଲଙ୍କକୁ ବେଶି ମର୍ଯ୍ୟାଦା ପ୍ରଦାନ କରନ୍ତି । ପ୍ରେମିକା ପାଇଁ ସେ କହନ୍ତି—

---

(୧) 'ବର୍ତ୍ତନାରେ ଧରାଛୁଆଁ ଦିଏ ନାହିଁ
ସେ ମେଘର ଆଦିବ କାଇଦା ଓ ଏକାକ୍ଷଣି
ଏତେଟିକେ ତ ଏକାକ୍ଷଣି ବ୍ୟାପିଯାଏ ତମାମ୍ ଆକାଶ ।'
'ଅକ୍ଷିରୁ ଅକ୍ଷିକୁ ନାଚେ ମୃତ୍ୟୁ' : ଦୀପକ ମିଶ୍ର—ପ୍ରତିଦ୍ୱନ୍ଦୀ : ପୂଜାସଂଖ୍ୟା ୧୯୮୪ ଦ୍ରଷ୍ଟବ୍ୟ ।

'ତୁମ ନିରୁଦ୍ଧ ଲାବଣ୍ୟ/କେମିତି ପ୍ରବାହିତ ହୁଏ ଦେଖ
ମୋ ଦେଶର ନଦନଦୀ ହୋଇ/ଯାହାର ତଟରେ ଲୋଟେ
ସାତ ସ୍ୱର୍ଗର ମହିମା' (ନିଜସ୍ୱ ପଦାବଳୀ)

କାବ୍ୟନାୟକ ବନ୍ଦୀଶାଗାରେ ନାୟିକାକୁ ଦେହର ନୈବେଦ୍ୟ ଭିକ୍ଷା କରିଛି । ବନ୍ଦୀ ଅଙ୍ଗୀକାର ପରେ ବିଷାଦଗ୍ରସ୍ତ ନାୟକ ପ୍ରେମ ସକାଶେ କାରୁଣ୍ୟ ପ୍ରକାଶ କରିଛି । ଉକ୍ତିଟିଏ :

× × ×

ସେ ସ୍ତନରେ ନାହିଁ ମମତାର ସୁନା ଚମ୍ପାମାଳ
ସେ ନାଭିରେ ନାହିଁ ମୃଗୟାର ସ୍ନିଗ୍ଧ ଶୀତକାଳ
ତା' ହେଲେ ନିଃଶବ୍ଦ ବିଦାୟ ବଡ଼ ଭଲ
କାରଣ ଭିକ୍ଷା ନ ଦେବ ତ ଯାହିଁ
କାହିଁକି ବା ଭାଙ୍ଗିବ ଆଉ ଆଜନ୍ମ ଭିକାରୀର ଥାଳ । (ଚକ୍ର)

କେଉଁଠି ବି ନାୟିକା ତାଙ୍କୁ ମାଗିଛି : ନଡ଼ିଆ ଫୁଲ, ମାଟି ଦୀପ, ସବୁଜ ଶିଶିର, ସ୍ଫଟିକର ମ୍ଳାନ ଚନ୍ଦ୍ରହାର, ଶରଘାତ ନିର୍ଦ୍ଦୋଷ ହଂସ (ପରିଶିଷ୍ଟ) । ତେବେ କବିତାରେ କେଉଁଠି ନାୟିକାର ପ୍ରତ୍ୟକ୍ଷାତ୍ମକ ଉକ୍ତି ନାହିଁ । କବିଙ୍କର ପ୍ରାୟ ପୂର୍ଣ୍ଣ ଭାବରେ ପ୍ରଥମ-ପୁରୁଷୀୟ ଅଭିବ୍ୟକ୍ତି । କାବ୍ୟନାୟକ ନାୟିକାର କଥାକୁ ଆତ୍ମକଥନ ତଥା ବର୍ଣ୍ଣନା ମାଧ୍ୟମରେ ପ୍ରକାଶ କରିଛି । ପ୍ରେମରେ କବି ଅଶ୍ରୁ ଓ ସମ୍ବେଦନକୁ ଉଦାର ସ୍ୱୀକୃତି ଦେଇଛନ୍ତି । ବନ୍ଦୀ ଉକ୍ତି ମଧ୍ୟରୁ ଦୁଇଟି :

ଯେଉଁ ପ୍ରେମ ଗଢ଼େ ନିତି ପ୍ରସ୍ଫୁଟିତ ନଳିନୀର ବନ
ତା' ବେଦୀରେ କେତେ ରକ୍ତସ୍ନାତ ହୃଦୟର କଂପନ × ×
(ଅବଜ୍ଞାର ମନ : ସପ୍ତମ ପୃଥିବୀ)

ଯଥା, କେଉଁ ରାଧା ପରିପୂର୍ଣ୍ଣ / ଯଦି ନାହିଁ ଯମୁନା ଓ କାଳନ୍ଦୀ ବିଜନ
ଯଦି ନାହିଁ ଯନ୍ତ୍ରଣାର ଧିକଧିକ ଜଳୁଥିବା ବଇଁଶୀର ଶୂନ୍ୟ ନିବେଦନ
ଯଦି ନାହିଁ ବିନମ୍ରସ୍ଥ ନିଶାର ନିକ୍ୱଣ × × × (ଅପଭ୍ରଂଶ : ବୃତ୍ତ)

ପ୍ରେମ ଚେତନାରେ ଦେହ-ବିଦେହ-ଅବବୋଧକୁ ସ୍ୱତନ୍ତ୍ର ପରିଚ୍ଛେଦରେ ଆଲୋଚନା କରାଯାଇଛି ।

ମୋ' ଚମକ
ଦୁଇଖଣ୍ଡ ଜ୍ୟୋତ୍ସ୍ନାଲୋକ

ହୋଇ ରହିବ ଓହ୍ଲା ଜାନୁରେ ତୁମର,
ଆଲୁଅ ନ ଥିଲେ ନାହିଁ
ସନ୍ତ୍ରମରେ ଜଳୁଥିବ ଘର ଭିତର ବାହାର ।
(ଆଲୁଅ ନ ଥିଲେ ନାହିଁ : ଶୂନ୍ୟତାର ଶୋଷ ।।)

ଶ୍ରୀ ମିଶ୍ରଙ୍କ ପ୍ରେମଚେତନାରେ ଦେହ-ବିଦେହ ପ୍ରସଙ୍ଗ ଓତପ୍ରୋତଭାବେ ଜଡ଼ିତ । ପ୍ରେମର ହାକାରନ୍ଧ୍ର ପାଇଁ ଦେହର ପ୍ରୟୋଜନୀୟତା ସ୍ୱୀକାର୍ଯ୍ୟ ('ଏ ଦେହକୁ ବାଦ୍‌ଦେଲେ/ କେଉଁଠି ମୂର୍ତ୍ତି ଉଭାହେବ ନିଜ ବିଗ୍ରହରେ' କମ୍ବା, 'ଦେହର ଉତ୍ତାପ ଅଟେ ପ୍ରେମର ଉତ୍ତାପ'—ଅନ୍ଧାରରେ ଅବଶ୍ୟ ଉଡ଼ୁଛି) । 'ନିର୍ଜନ ନକ୍ଷତ୍ର'ର ପୂର୍ବ କବିତାମାନଙ୍କରେ ମଧ୍ୟ ଦେହ-ବିଦେହ ଅବବୋଧ ମୁଖ୍ୟ ଭୂମିକା ନେଇଛି । ଦେହ-ବିଦେହ ପ୍ରସଙ୍ଗ ପର୍ଯ୍ୟାଲୋଚନା ବେଳେ ଶ୍ରୀ ମିଶ୍ରଙ୍କ କବିତାରେ ସ୍ତନ, ଯୋନି, ନାଭି, ନିତମ୍ବ, ଜଙ୍ଘର ଭିଡ଼ ଏକାନ୍ତ ସ୍ୱାଭାବିକ । ଏହା ବେଳେବେଳେ ମାତ୍ରାଧିକ୍ୟ ହେଲେହେଁ ପ୍ରସଙ୍ଗ ବହିର୍ଭୂତ ହୋଇ ନାହିଁ । ଏଇ ଦେହ ରକ୍ତମାଂସମୟ ନାରୀର ଦେହ ଏବଂ ତହିଁରେ କାବ୍ୟପୁରୁଷର ଦେହ-ଅବବୋଧ । ଏହା ଅନେକ ଚିତ୍ରକଳ୍ପ ଦେଇ ଶ୍ରୀ ମିଶ୍ରଙ୍କ କବିତାରେ ମୂର୍ତ୍ତିମନ୍ତ । ଦେହର ମୁକ୍ତି ପାଇଁ ବାଟ, 'ବୈରାଗ୍ୟର ଧବଳ ଟଗର' ଫୁଟାଇବା ପାଇଁ ମାଧ୍ୟମ ମଧ୍ୟ । ସନ୍ଥ କବି ଜଗନ୍ନାଥ ଦାସଙ୍କ 'ଏ ଦେହ ଥିଲେ ସବୁପାଇ । /ଜଳେ ଯେସନେ ଚନ୍ଦ୍ର ଗ୍ରାଇ' ପରି ଶ୍ରୀ ମିଶ୍ର ବୁଝନ୍ତି ଏଇ ଦେହ—'କିଛି ଗ୍ରାଇ/କିଛି ଆଲୁଅର/ଏକ ବିଭାଜ୍ୟ ମାଟିର ଭଗ୍ନାଂଶ' (ପଞ୍ଚତନ୍ତ୍ର) । ଏଇ ଦେହବୋଧ ବା ଇନ୍ଦ୍ରିୟ ନିବିଷ୍ଟତା କାବ୍ୟପୁରୁଷର ଦେହାତେତନାର ବିକାଶ ପାଇଁ ହୋଇଛି ଉପଯୁକ୍ତ ସିଡ଼ି । ତାଙ୍କ କବିତାରେ ବହୁ ଜାଗାରେ ଦେହ-ଅବବୋଧର ପ୍ରାଚୁର୍ଯ୍ୟ ଭିତରେ ଶ୍ରୀ ମିଶ୍ରଙ୍କ କାବ୍ୟପୁରୁଷ ଭୋଗୀ, ଯୋଗୀ, ବୈରାଗୀ ବା ଅନ୍ୟ ଅର୍ଥରେ ରୂପପ୍ରାଣ ବା ସୌନ୍ଦର୍ଯ୍ୟପ୍ରାଣ । ସେ ରକ୍ତମାଂସର ନାୟିକାକୁ କହନ୍ତି : 'ତେଣୁ ମୁଁ ରହିଥିଲି ତୁମର ନିତମ୍ବ, ଜାନୁ ଓ ସ୍ତନର ସନାକ୍ତ ରେଖା ମୋ' ଯୋଗର ଆସନ ହୁଅନ୍ତେ × × × (ପାଞ୍ଚୋଟି କାହାଣୀ) କମ୍ବା 'ଏ ପାଇଁ ପ୍ରସ୍ତୁତ ହୁଅ : /ଯେତେ ପାର ନିଜ ଭିତରେ ନିଜକୁ ବିଗ୍ରାଇ ଦିଅ,/ତୁମ ଦାମିକା ଶାଢ଼ୀର ବିଖରି ମଧ୍ୟେ ଆଉ ନ ରହିଲେ ବନ୍ଦୀ/ଶେଫାଳୀ ଫୁଲର ମାସ୍ୱା ଖୁବ୍ ଭଲ ହେବ ଓ ସେଠାରେ ଦେଖିବେ ଲୋକେ/ଦୁଇଟି ସୀମିତ ଶରୀର ପରିବର୍ତ୍ତେ ଜଳୁଅଛି ଦୁଇଟି ଅନନ୍ୟ ଆଲୋକର ବନ (ଅପହରଣ) । ଏ ପ୍ରସଙ୍ଗରେ କବିଙ୍କ 'ଅଖି ଫିଟି ନଥିବା ଖରାରେ', 'ଆଲୁଅ ନ ଥିଲେ ନାହିଁ', 'ନାଟକୋତ୍ସବ' 'ତୁମେ, କନ୍ୟା ଓ କନ୍ୟାବ୍ରତ' ପ୍ରଭୃତି ଏକାନ୍ତ ଉଲ୍ଲେଖଯୋଗ୍ୟ । ଦେହ-ଅବବୋଧର ଊର୍ଦ୍ଧ୍ୱାୟିତ ବିଦେହ-ଶୀତଳତା ଏଥିରେ ବେଶ୍ କାଳାମ୍ବକଭାବେ ରୂପାୟିତ । ଦେହଚେତନା ନେଇ ଶ୍ରୀ ମିଶ୍ର ଏକାନ୍ତଭାବେ ରୂପପ୍ରାଣ । କବିଙ୍କ ସୌନ୍ଦର୍ଯ୍ୟ ଦୃଷ୍ଟି ବା ରୂପପ୍ରାଣତା ଯେତେ ପ୍ରଗାଢ଼ ହେଉନା କାହିଁକି ସେ ଦେହର ବିଲୟ ବା ମୃତ୍ୟୁକୁ ସେ ପରିପ୍ରେକ୍ଷୀରେ ବିସ୍ମରିଯାଇ ନାହାନ୍ତି । ଏଣୁ ନାରୀର ନିଟୋଳ ଦେହ ବା ସ୍ତନର ସଜଳ

ସ୍ପର୍ଶ ଭିତରେ ସେ ନିଷ୍ପ୍ରାଣ ରୁକ୍ଷ କବରକୁ ଛୁଇଁଥାନ୍ତି । ଆମ ସାହିତ୍ୟର ପୂର୍ବବର୍ତ୍ତୀ ରୋମାଣ୍ଟିକ କବିମାନଙ୍କଠାରୁ ଏ ଅନୁଭବରେ ଫରକ ରହିଛି । ରୂପ ସହିତ ନିଷ୍ଠୁର ବାସ୍ତବତାର ନିଖୁଣ ଉପସ୍ଥାପନା ତାଙ୍କ କବିତାରେ ଭିନ୍ନ ପୃଷ୍ଠଭୂମି ତିଆରି କରେ । ଏ ପ୍ରସଙ୍ଗରେ ବିଭିନ୍ନ ସଙ୍କଳନରୁ କେଇଟି ଉଦାହରଣ ଉଲ୍ଲେଖ କରିଯାଇପାରେ ।

(୧) ସମସ୍ତ ପଚିବ ଦିନ/ବସ୍ତୁସ୍ତ ତ ଯିବ × × ×
ଏବଂ ତୁମ ଝଇର ରଙ୍ଗର ରୁଦ୍ରାକ୍ଷମାଳ
ମଳା ଦାପପର ଶୋଇଥିବ ସ୍ତିମିତ ସ୍ତୁଚ୍ଛ ଆଳମାନେ ।  (ଅପଭ୍ରଂଶ : ବୃତ୍ତ)

(୨) ମୁଁ ଯେଉଁ ଫୁଲ ଯିଏ ଝଟର ବାସର ଘର ବାଛଣାରେ
ଏବଂ ଝରେ ଅଦୂରସ୍ଥ ସମାଧି ଉପରେ ।  (ସପ୍ତମ ପୃଥିବୀ)

(୩) ମୁଁ ଡେଉଁଚି ତୁମ ସ୍ତନର ପୋହଳା ଦ୍ୱୀପକୁ
ଓ ତୁମ ଶାଢ଼ୀର ସମୁଦ୍ର ତଳେ ଭେଟିଚି ମୋ' ମୂର୍ଖ କାମନାକୁ ।
ସେ ସମୁଦ୍ର
କି କବର
ମୁଁ ଜାଣେନା ।  (କେତେକ ଧର୍ମବିଦଙ୍କ କଥା : ସପ୍ତମ ପୃଥିବୀ)

(୪) ଏକଦା ଅହଙ୍କାରୀ ଓ ଉଦ୍ଧତ ଦୁଇ ସ୍ତନ
ଆଜି ଯେପରି ଝୁଲୁଅଛି
କର୍ମନଷ୍ଟାନ ଦୁଇ ବିଧ୍ୱସ୍ତ ମାଂସର ଗୋଷ୍ଠାଳି × × ×
ରକ୍ତବର୍ଣ୍ଣ ତୁମର ସ୍ତନର ରଣାଙ୍ଗନରେ
ଯାହା ଆଜି ଦିଶେ ଖାଲି
ଶେଠା ମୁହିଁ ପରି କେଉଁ କବରଖାନାର ।
(କେବେ କେମିତି ସାଧାରଣ ଅବସ୍ଥାରେ : ଶୂନ୍ୟତାର ଶୋକ)

ନା'ଗୀ ଶ୍ରୀ ମିଶ୍ରଙ୍କ କବିତାରେ ମର୍ଯ୍ୟାଦାର ଆସନ ପାଇ ନଥିଲେ ବି ଦେହର ମହିମା ବର୍ଣ୍ଣନାରେ ତାଙ୍କ କବିତା ସ୍ୱଚ୍ଛ । ନିକଟରେ ପ୍ରକାଶିତ ତାଙ୍କର ଦେହବନ୍ଦନା (୨) କବିତାଟି ମୋର ମନେହୁଏ କବିଙ୍କ ଦେହଚେତନା ସମ୍ପର୍କିତ କବିତାମାନଙ୍କ ଭିତରୁ ଶ୍ରେଷ୍ଠ ଉଦାହରଣ । ଓଡ଼ିଆ କବିତାରେ ଶ୍ରୀ ମିଶ୍ରଙ୍କ ଦେହ-ବିଦେହ ଚଳକା ବେଶ୍ ବ୍ୟାପ୍ତ ଓ ସାର୍ଥକ । ସମସାମୟିକ କବିମାନଙ୍କ ଭିତରେ ଦେହ-ଅନୁଭବରେ ସେ ସମ୍ପୂର୍ଣ୍ଣ ଭାବରେ ବାରହୋଇ ପଡ଼ନ୍ତି । ମଧ୍ୟଯୁଗୀୟ ଛଟା ଥିଲେ ମଧ୍ୟ ଏ ଅନୁଭବରେ ଶ୍ରୀ ମିଶ୍ର

---

(୨) ଦେହ ବନ୍ଦନା—'ନବଲିପି', 'ଗୋଧୂଳି ଲଗ୍ନ'—ପୂଜା '୮୪' ସଂଖ୍ୟା

ଏକାନ୍ତ ସ୍ପର୍ଶିତ ଭାବେ ବେପରୁଆ ଓ ପ୍ରତ୍ୟକ୍ଷ । ମୁକ୍ତ ବର୍ଣ୍ଣନାକୁ ସେ କେଉଁଠି ଘୋଡ଼ାଇଦେବାର ଛଳନା କରିନାହାଁନ୍ତି କି କୌଣସି ବିକୃତ ବାସନା ଦ୍ୱାରା ତାହା ଉଲଙ୍ଗ ହୋଇପଡ଼ି ନାହିଁ । ତାକ୍ଷଣ ଯୁକ୍ତି ଓ ମନନ ଦ୍ୱାରା ତାଙ୍କ କାବ୍ୟ ଆବେଗ ସୁନିୟନ୍ତ୍ରିତ ରହିଛି । କବିଙ୍କ ପ୍ରେମଚେତନା ଓ ଦେହବିଦେହ ଅବବୋଧ ସହିତ ଈଶ୍ୱରଙ୍କ ମଧ୍ୟ ବାନ୍ଧିହୋଇ ରହିଛନ୍ତି । ବିଶେଷ ବିଶ୍ଳେଷଣ ନ କରି ଉଦ୍ଧୃତିଟିଏ ଉଲ୍ଲେଖ କରିବା ।

> ମୁଁ ଶୁଣିଚି
> ପ୍ରେମରେ ଅଦୃଶ୍ୟ ହୁଅଇ ଯେ ଦୃଶ୍ୟ
> ଈଶ୍ୱର ଓ ନାରୀ ଦୁହେଁ କାଳେ କାଳେ ଏକଇ ରହସ୍ୟ
> ଏମାନେ ଗୋଟିଏ ନଆଁ ଦୁଇ କସମର
> ଏମାନେ ଗୋଟିଏ ପବନ ଦୁଇଟି ଦିଗର ।
> (ଓ୍ୟାରକା—କିଛି ବିଚାର ମୋହର—ମଧ୍ୟାହ୍ନର ଗ୍ରୀଷ୍ମ)

> 'ସମୟର ଉଜୁଡ଼ା କୂଳକୁ
> ସମସ୍ତେ ହୁଅନ୍ତି ପାରି ସହି ସହି
> କପାଳ ଲିଖନ; × × ×
> (ପାରିହେବା : ବୃତ୍ତ)



ଶ୍ରୀ ମିଶ୍ରଙ୍କର ସମୟ ସମ୍ପର୍କୀୟ ଜିଜ୍ଞାସା ବହୁ କବିତାରେ ରହିଛି । ହେଲେହେଁ ଏଠାରେ ତାହା ଆଦୌ ସମକାଳୀନତା ନୁହେଁ । ପୁନଶ୍ଚ ସମକାଳୀନତା ନେଇ କବି ପ୍ରାୟ ନୀରବ । ଏ ସମୟ ତାଙ୍କ କବିତାରେ ତା'ର ସନାତନ ରୂପ ନେଇ ପ୍ରକଟିତ । ଶ୍ରୀ ମିଶ୍ରଙ୍କ ଅଧିକାଂଶ କବିତାରେ ସମୟ ସମ୍ପର୍କୀୟ ପ୍ରତ୍ୟକ୍ଷ ଉଚ୍ଚାରଣ ଲକ୍ଷ୍ୟ କରିହେବ । ସମୟକୁ ସଂଶକ୍ତିମାନ କହିଲାବେଳେ କାବ୍ୟପୁରୁଷ ମଣିଷର ଭାଗ୍ୟ, ଦୁର୍ଦ୍ଦିନ, ମୃତ୍ୟୁ ଏବଂ ଈଶ୍ୱରଙ୍କୁ ତା' ସହିତ ବିଭିନ୍ନ ଭାଗରେ ସମନ୍ୱୟ କରିଛି । 'ସମୟ ଅନନ୍ୟ' ଏ ସମ୍ପର୍କରେ ସିଧାସଳଖ କବିତା । 'ସମୟ ପଚିବ ଦିନେ' (ଅପଭ୍ରଂଶ) କହିଲାବେଳେ ସେ ସମୟକୁ ଚରିତ୍ରୀଭୂତ କରିଛନ୍ତି । ସମୟ ହିଁ ଭାଗ୍ୟ ଓ ଅନୁଭବକୁ ଅନୁକୂଳ ରୂପ ପ୍ରଦାନ କରେ । କେବେ ତାହା ପୁଷ୍ପବୃଷ୍ଟି ହୋଇ ବା କେବେ ମୃତ୍ୟୁକୁ ବିଶୁଦ୍ଧ ବିଭୂତ ପରି ଲୋକଙ୍କ ପାଖରେ ପହଞ୍ଚାଇ ଦିଏ (କିଏ କହିବ ସେଠାରେ କେହି ପୁଷ୍ପବୃଷ୍ଟି କରେ ଅହୋରାତ୍ର/କମ୍ପା ମୃତ୍ୟୁ ପଡ଼େ ଝରି ବିଶୁଦ୍ଧ ବିଭୂତ ପରି ଲୋକଙ୍କ କାନ୍ଧରେ—ପାରିହେବା) । ସମୟ ହିଁ ମୃତ୍ୟୁକୁ ଜନ୍ମଦିଏ ବୋଲି କହିଲାବେଳେ (ସମୟ ହିଁ ମୃତ୍ୟୁକୁ ବାହାରକରେ ଅଫିମର ଢେଲାପରି ତା'ର କଣ୍ଠରୁ) ଅନ୍ୟାୟ ମୃତ୍ୟୁ ଓ ଅବେଳକୁ କବି ଅସମାହିତ ଅବସ୍ଥାରେ ରଖି ଦେଇଛନ୍ତି ।

କିଏ ଆସେ କା'ର ହାତ ଧରି
ଅବେଳ ସହିତ ଆସେ ମୃତ୍ୟୁ ନା ମୃତ୍ୟୁ ଅପେକ୍ଷା
କିଏ ବସିଥାଏ ଅବେଳର ନବ ଗୁମ୍ଫରକୁ ? × × ×
ଯାହା ପାଖରେ
ଯେଉଁପରି ଯେତିକ ରହିଛି ସ୍ମୃତି/ତାକୁ ହିଁ ପଗୃର ବୃଂ
ଦୁଃଖର ଗୃହସ୍ଥ । —(ଅବେଳ)

ସମସ୍ତ ସଂପର୍କରେ କବିଙ୍କର ବହୁ ବହୁ ସଂଜ୍ଞା । ଆଉ ଗୋଟିଏ ଉଦ୍ଧୃତି ନିଅନ୍ତୁ :

ସମୟ ବେକରେ କିଏ ପକାଇବ ଘଣ୍ଟି
ସବୁ ଅସ୍ତ୍ର ଖସିଯାଏ ଯିଏ ଯେବେ ଅନାଏ ତରକି । (ଉତ୍କଳ ନିଗାଣ)

ସମୟର ଜ୍ୱାଳାକୁ 'ଦେହବୋଧ' ପାଖରେ ସେ ନିଭାଇ ଦେଇଛନ୍ତି । (ସ୍ୱପ୍ନର ଉଷ୍ମ କୋଳରେ ସମସ୍ତ ଶୁଏ/ତା'ର ସୁଖ ଦୁଃଖ ଭୁଲି × × × —ପାଞ୍ଚଦେବା) କବିଙ୍କର ବହୁ ଅନୁଭବ ସହିତ ସମୟ ସଂପର୍କିତ ରହିଛି ।

ତୁମେ ଯଦି ଆସିଥିବ କାରଖାନାର କଳା ଚିମିନି
ଧୂଆଁରେ ପହଁରି ଏବଂ ଶୁଣି ଶୁଣି ଶ୍ରମିକଙ୍କ
ରାଜଯକ୍ଷ୍ମା କାଶ ଏବଂ ତାଙ୍କ ନାରୀଙ୍କର ଚେମେଣ୍ଟା ଗୁଡିର ଦାନ୍ଦନ :
ସେଠାରେ ମୁଁ ବି ଅଛି ସମାନ ଭାବରେ ସେମାନଙ୍କ
ହସ କାନ୍ଦ ଶ୍ରେଷ୍ଠ ଦୁନିଆରେ ଯେହେତୁ ମୋହର ଭାଗ୍ୟ
ବିଜଡ଼ିତ ସେମାନଙ୍କ ପାପପୁଣ୍ୟ ଫଳର ସହିତ ।
(ଅନ୍ୟ ପୃଷ୍ଠଭୂମି : ସମସ୍ତ ପୃଥିବୀ)



ଦୀପକ ମିଶ୍ରଙ୍କ କବିତା ସମ୍ପର୍କରେ ଯେଉଁ ବଡ଼ ଅଭିଯୋଗ ହୁଏ ତାହା ହେଉଛି ସାମାଜିକ ଆଭିମୁଖ୍ୟ ତାଙ୍କ କବିତାରେ କ୍ୱଚିତ୍ ପରିଦୃଷ୍ଟ । କଥାଟି ଅନେକାଂଶରେ ସତ । ଏକ ସିଧାସଳଖ ବା ସମକାଳୀନ ସମାଜ-ସଚେତନତା ତାଙ୍କ କବିତାରେ ଅବଶ୍ୟ ବିରଳ । କିନ୍ତୁ ଜଣେ ଜୀବନ-ଧର୍ମୀ କବି ଏ ପ୍ରକାର ସଚେତନତାରୁ ଅଲଗା ରହିପାରିବେ କି ? ଶ୍ରୀ ମିଶ୍ରଙ୍କ କବିତାରେ ବର୍ତ୍ତମାନ ସୂକ୍ଷ୍ମ ଭାବରେ ଏହା ବିଦ୍ୟମାନ । ଦୁଃଖକୁ ଗ୍ରହଣ ଓ ଗ୍ରହଣ କରିବାର ପ୍ରତ୍ୟୟ ସୃଷ୍ଟି କରିବା, ବ୍ୟଙ୍ଗ କରିବା, ମୃତ୍ୟୁକୁ ଅନୁତପ୍ତ କରାଇବା ଇତ୍ୟାଦି ଭାବ ଦ୍ୱାରା କବିଙ୍କ ଜୀବନ ସହାନୁଭୂତି ବେଶ୍ ବାରି ହୋଇପଡ଼େ । ସମାଜ ସଚେତନତା ତାଙ୍କ ପାଇଁ ପ୍ରତ୍ୟକ୍ଷଧର୍ମୀ, ପ୍ରଚ୍ଛନ୍ନଧର୍ମୀ ବା ଏକ ଆଖିଦୃଶିଆ ଅଭିମୁଖ୍ୟ ନ ହୋଇ ଶିଳ୍ପୀସୁଲଭ ମନ ନେଇ ହୋଇଛି ହୃଦୟର ସହାନୁଭୂତି ଓ ଦରଦ ଦ୍ୱାରା

ପ୍ରକାଶମୟ । ତାଙ୍କ କବିତାରେ ସେ ଏମିତି କେତୋଟି ଚରିତ୍ରକୁ ଆମର ସାମ୍ନା କରାଇଛନ୍ତି ଯେଉଁମାନେ କି ସମାଜର ବହୁବିଧ ବିଭବର ପ୍ରତିନିଧିତ୍ୱ କରନ୍ତି । ଏ ସବୁ ପ୍ରାୟ ଶ୍ରୀ ମିଶ୍ରଙ୍କ ପରିଣତ ସମୟର କବିତାରେ ଦେଖିବାକୁ ମିଳେ । ସାଂସାରିକ ଜଞ୍ଜାଳପିଷ୍ଟ, ଦାରିଦ୍ର୍ୟ ଓ ରୋଗଗ୍ରସ୍ତ, ଦୁଃଖୀ କେବେ ବା ନିଃସଙ୍ଗ ଏଇ ଚରିତ୍ରମାନଙ୍କ ପାଇଁ କବିଙ୍କ ମମତାର ଅନ୍ତ ନାହିଁ । ଗଳ୍ପ ପରି ବର୍ଣ୍ଣନାଶ୍ରୟୀ ଏଇ ଚରିତ୍ରଗୁଡ଼ିକ (ରଘୁ ସାହାଣୀ, ଶୁକ ବଢ଼େଇ, ବଳରାମ ସୁଆର, ଗୌର ମୋହନ ମାଷ୍ଟ୍ରେ)ଙ୍କର ଦୁର୍ନିବାର ଜୀବନ ସଂଗ୍ରାମ ଭିତରେ କବିଙ୍କ ସମାଜ-ସଚେତନ ଅଭିମୁଖ୍ୟ ବେଶ୍ ସାକାର ଓ ପ୍ରାଣବନ୍ତ । ଜୀବନ-ବିଡ଼ମ୍ବନା ଓ ବିରୋଧାଭାସର ସ୍ୱର ବହନ କରୁଥିବା ରଘୁ ସାହାଣୀ-ମାନଙ୍କ ଚିରକାଳିକ ଯନ୍ତ୍ରଣାକୁ କବି ଗଭୀର ମର୍ଯ୍ୟାଦା ଦେଇଛନ୍ତି (ରଘୁ ସାହାଣୀ ! /ତୁମେ ହେବ ଅଲିଖିତ କବିତାର ପ୍ରଥମ ଦେବତା/ଯିଏ ମରେ ପ୍ରତି ବର୍ଷ ଓ ପୁଣି ବଞ୍ଚିଉଠେ ହୃଦେ ବନ୍ଧି ବୈରାଗ୍ୟର ଛତା—'ରାବଣ ଓ ରଘୁ ସାହାଣୀ') । ତାଙ୍କ କବିତାରେ ରୋଗ ଓ ଅଭାବଗ୍ରସ୍ତ ଶୁକ ବଢ଼େଇମାନେ ଜାଣିକରି ମରନ୍ତି ଏବଂ ମରିକରି ଜୀଅନ୍ତି । ଦୁଃଖକୁ ଟେକାଧରି କରି ନୂତନ ସ୍ୱପ୍ନ ଦେଖନ୍ତି । ଉକ୍ତି ଟିଏ :

ଦୁଃଖକୁ ଭୁଲିଲେ ଯିନା ଅନ୍ୟ ନୂଆ ଦୁଃଖ ପାଇଁ
ଆମେ ପୁଣି ହୋଇବା ପ୍ରସ୍ତୁତ । ଦେଖୁଛୁ ତ
ମୋ' ପାଟିରୁ ଭକ୍ ଭକ୍ ଆସୁଥିବା ରକ୍ତରେ
ଲଗାଇ ମୋର ଗ୍ଳେଟ ନହାଣିଟି ମୁଁ କେମିତି
ଗଢ଼ୁଛିରେ ଦୁଃଖରେ ଆଉଟି ପାଉଟି ଏକ ସୁଖର ମଣିଷ । (ଶୁକ ବଢ଼େଇ)

ଚିରକାଳିକ ଦୁଃଖ ଓ ଅଭାବର ପ୍ରବାହପିଷ୍ଟ ଏଇ ଚରିତ୍ରମାନେ ନିର୍ଦ୍ଦିଷ୍ଟଭାବେ ଆମ ସମାଜର ନିଦରିଦ୍ର ଜୀବନ ସଂଗ୍ରାମରତ ମଣିଷମାନଙ୍କୁ ଉପସ୍ଥାପନ କରନ୍ତି । ଏତଦ୍‌ଭିନ୍ନ ଅନ୍ୟ କେତୋଟି କବିତାରେ ମଧ୍ୟ ଏଇ ଆଭିମୁଖ୍ୟ ପ୍ରକଟିତ ହୋଇଛି । ବ୍ୟକ୍ତିମୁଖୀ ହୋଇଥିଲେ ହେଁ ମଧ୍ୟ ତା'ର ନୈର୍ବ୍ୟକ୍ତିକ ଆବେଦନ ରହିଛି । ଏ ଦିଗରେ 'ଶୁକ-ପରୀକ୍ଷିତ ସମ୍ବାଦ', 'ମଧ୍ୟାହ୍ନର ଗ୍ରୀଷ୍ମ' ଆଦି କବିତାକୁ ଉଦାହରଣ ଭାବେ ନିଆଯାଇ ପାରିବ । ନିତବେ କବିଙ୍କର ଏ ଆଭିମୁଖ୍ୟ ସଂପର୍କୀୟ କବିତାର ସଂଖ୍ୟା କମ୍ ।

ହେ କରୁଣାକର !
ମୋ' ମନରୁ କାଢ଼ି ନିଅ ସମସ୍ତ ଶୋଷର ଯନ୍ତ୍ରଣା,
ସେ ଫୁଲର ହେଉ
କି ପଥରର ହେଉ
ଅବା ହେଉ ଅପ୍ସରୀର ଚେତଣା ।

(ବୈରାଗ୍ୟ : ସପ୍ତମ ପୃଥିବୀ)

●

ଶ୍ରୀ ମିଶ୍ରଙ୍କ ଈଶ୍ୱର-ଆତ୍ମ ଜିଜ୍ଞାସା ସଂପର୍କିତ ସିଧାସଳଖ କବିତାର ସଂଖ୍ୟା ସେତେ ବେଶୀ ନୁହେଁ । ଜୀବନ ଯନ୍ତ୍ରଣାରୁ ମୁକ୍ତି ତଥା ଏକ ସାର୍ବିକ କଲ୍ୟାଣବୋଧର ଭାବରୁ କବିଙ୍କର ଏ ଆତ୍ମ ଜିଜ୍ଞାସା ଜନ୍ମ ନେଇଛି । ପରିଶେଷରେ ଈଶ୍ୱରଙ୍କ ସ୍ୱରୂପ ଅନୁସନ୍ଧାନ, ସୃଷ୍ଟିର ରହସ୍ୟ ସଂପର୍କରେ ପ୍ରଶ୍ନମନସ୍କ ବିଶ୍ଳେଷଣାତ୍ମକ ଦୃଷ୍ଟିଭଙ୍ଗୀ ସର୍ବୋପରି ଅନ୍ୟ ଭାବଧାରାମାନଙ୍କ ସମ୍ବନ୍ଧାତ୍ମକ ପ୍ରକାଶରେ ତାଙ୍କ କବିତାରେ ଈଶ୍ୱର ସ୍ଥାନ ପାଇଛନ୍ତି । ଈଶ୍ୱର ଭାବଧାରାର କବିତାଗୁଡ଼ିକରେ କେବେ କେବେ ପ୍ରଚ୍ଛନ୍ନ ବ୍ୟଙ୍ଗ ପୁଣି କେବେ ଦାର୍ଶନିକତା ପ୍ରତିଫଳିତ ହୋଇଛି । ଈଶ୍ୱରଙ୍କ ସମ୍ପର୍କରେ ଗୋଟିଏ ସାଧାରଣ ଉକ୍ତି ଟିଏ :

"ଈଶ୍ୱର କରିଲେ ଚନ୍ଦ୍ରା ରାତି ହୁଏ ଅଭସ୍ମ ଅରଣ୍ୟ<br>ଓ ଏ ଘରର ସମର୍ଥ ଲୋକ ସବୁ ପରିଣତ ହେବେ<br>ମୁର୍ଦ୍ଦାରରେ । ମୁଁ ମଧ୍ୟ ମୁର୍ଦ୍ଦାର ହୋଇ ଜଗିଥିବି<br>ସେମାନଙ୍କ ସଫା ଶରୀରକୁ ।" (ନାମକରଣ)

ପୂର୍ବରୁ କୁହାଯାଇଛି ଯେ ତାଙ୍କ କବିତାର ବିଭିନ୍ନ ଭାବଗୁଡ଼ିକ ପରସ୍ପର ସମ୍ବନ୍ଧାନ୍ୱିତ । କବିତାର କେତୋଟି ଜାଗାରେ ମୃତ୍ୟୁ, ଦେହବୋଧ ବା ପ୍ରେମ ସହିତ ଈଶ୍ୱରଙ୍କ କଥା କୁହାଯାଇଛି । କବି ଈଶ୍ୱରଙ୍କୁ ସାଧାରଣ ମାନବୀୟ ଏବଂ ଏକ ଆନ୍ତରିକତାର ସ୍ତରକୁ ନେଇ ଆସିଛନ୍ତି । ଈଶ୍ୱର ଓ ନାରୀ କାଳେ କାଳେ ରହସ୍ୟ ବୋଲି କବିଙ୍କ ଘୋଷଣା :

"ଯେହେତୁ ମୁଁ ଦେଖିଛି ଈଶ୍ୱର ବୁଲନ୍ତି ଏକ କବନ୍ଧର ଗ୍ରୀବାପରି<br>ମୃତ୍ୟୁର ଜଙ୍ଗଲ ଭିତରେ ପ୍ରେମ ସୁରାହାରେ;

× × ×

ମୁଁ ଶୁଣିଛି ପ୍ରେମରେ ଅଦୃଶ୍ୟ ହୁଅଇ ଯେ ଦୃଶ୍ୟ<br>ଈଶ୍ୱର ଓ ନାରୀ ଦୁହେଁ କାଳେ କାଳେ ଏକଇ ରହସ୍ୟ ।<br>(ଓ୍ୟାଶ୍‌ନା—କିଛି ବିଚାର ମୋହର : ମଧ୍ୟାହ୍ନର ଗ୍ରୀବା)

କିମ୍ବା,

"ନାରୀ ଏକ ରକ୍ତାକ୍ତ ପୃଥିବୀ<br>ଯାହାକୁ ସୃଜିଲା ପରେ ବିଧାତା ବି<br>ରହିଗଲେ ଏକାନ୍ତ ନୀରବ ଓ ସେ ରକ୍ତରେ<br>ନିଜେ ପହଁରିଲେ ଧରି କୁହୁଡ଼ିର ତରଳ ଉତ୍ତାପ ।"<br>(ପ୍ରତିମାଟିଏ ଗଢ଼ିଲା ପରେ : ଅରଣୀ ମନ୍ଥିପି)

ପ୍ରାୟ ଅଧିକାଂଶ କବିତାରେ ପୌରାଣିକ ଚରିତ୍ର ଓ ଘଟଣାମାନଙ୍କ ଉପଯୋଗ କବିଙ୍କର ଏଇ ଚେତନା ସପକ୍ଷରେ ସାକ୍ଷ୍ୟ ଦିଏ । 'କାମ୍ୟାପ୍ରବେଶ' କବିତାରେ ବସୁଦେବର ଯନ୍ତ୍ରଣା ଭିତରେ ଏକ କୃଷ୍ଣମୟ ବିଶ୍ୱର ପରିବେଶ ଚୟନ କରୁ। 'ନେଉଁଡ଼ାନାଇଁ' କବିତାରେ ଜଗନ୍ନାଥ ବ୍ରହ୍ମର ଉଦ୍ଧାର ପ୍ରକାଶେ ଭକ୍ତ ବିଶର ମହାନ୍ତିଙ୍କର ମନୋଭୂମି ଅଙ୍କନ କରୁ। 'ଶୁକ-ପରୀକ୍ଷିତ ସମ୍ବାଦ' ପରିବେଷଣ ଆଳରେ ଆଧୁନିକ ଜୀବନ ଯନ୍ତ୍ରଣାର ରୂପାୟନ ଆଦି ଭିତରୁ ଶ୍ରୀ ମିଶ୍ରଙ୍କ ଈଶ୍ୱର ଅବବୋଧଟି ଧରାପଡ଼େ । 'ସମର୍ପଣ' କବିତାଟି ଏ ଦିଗରେ ଏକ ଉତ୍ସର୍ଗୀତ ସମର୍ପିତ ଅନୁଭୂତିର ବାଷ୍ପରୁଦ୍ଧ ସ୍ୱରର ସଫଳ ପରିପ୍ରକାଶ । ଏ ପ୍ରସଙ୍ଗରେ ଉଦ୍ଧୃତି ଉଲ୍ଲେଖ କରିବାଟା ଏଡ଼ାଇଦେଇ ହୁଏ ନାହିଁ ।

"ମୁଁ ପୋଡ଼ୁଛୁ ସେ କଥାଁରେ
ଯାହା ଲିଭିଯାଇପାରେ;
ତୁମର ସେ ପଦ୍ମଫୁଲ ଆଖିର ଦୃଷ୍ଟିରେ
ହୁଏତ ମୁଁ ପାଇପାରେ ନୂତନ ପୃଥିବୀ
ଏକ ତୁମର ସୃଷ୍ଟିରେ ।

× × ×

ମୁଁ ବିକ୍ଷିପ୍ତ ମରୁଭୂମି କେଉଁ ଅନାଦିକାଳର
ତୁମେ ଆସ, ଶୀତଳ ମେଘର ଆଶା, ସ୍ନିଗ୍ଧ ଜଳଧାର ।"

(ସମର୍ପଣ : ମଧ୍ୟାହ୍ନର ଗ୍ରୀଷ୍ମ)

କବି ପୁନଶ୍ଚ ଅବକ୍ଷୟର ଅନ୍ଧାର ଭିତରୁ ନୂତନ ସୃଷ୍ଟିର ଆଲୋକ ବିଚ୍ଛୁରଣ ହେବାର ପ୍ରତ୍ୟାଶା ରଖନ୍ତି । ଯାବତୀୟ କ୍ଷଣଭଙ୍ଗୁରତାରେ କାବ୍ୟପୁରୁଷ କଲ୍ୟାଣ-ଚେତନା ଓ ଦିବ୍ୟଭାବର ଉଦୟନ ଆଶାୟୀ । ସେଇଥିଲାଗି ତା'ର ଦୃଢ଼ ଉଦ୍‌ଘୋଷଣା :

"ପୋଡ଼ାକାଠର କଙ୍କାଳ ଓ
ଜଠର ଭେଦି ବୃକ୍ଷ ଜନ୍ମନଏ ନାହିଁ ସତ
କିନ୍ତୁ ଏହାର ପୋଡ଼ିହେବାର ନୀରବ ଯନ୍ତ୍ରଣା
ରୁ
ଜନ୍ମନଏ ଏକ ଅଦ୍‌ଭୁତ ସ୍ୱପ୍ନାବିଷ୍ଟ ଜଗନ୍ନାଥ ;
ଭଙ୍ଗାଇଟାରୁ ମାଟିର ଗଛ ଉଠେନାହିଁ ସତ
କିନ୍ତୁ ଏହାର ଲିଭିଯାଉଥିବା ହସ
ରୁ
ଗଢ଼ିଉଠେ ମନ୍ଦିର ମସ୍‌ଜିଦ୍, ଗିର୍ଜା ଓ ଇମାରତ୍ ।"

(ଅନ୍ଧକାରର ନଦ : ମଧ୍ୟାହ୍ନର ଗ୍ରୀଷ୍ମ)

"ଯେଉଁ ଦିନଟିଏ ବଞ୍ଚିଲୁ ତୁ
ଅଙ୍ଗେ ଯେନ ଉଦ୍‌ବେଳ ଯୌବନ ସେଥିକ
ଯଥେଷ୍ଟ ସ୍ୱପ୍ନ ପାଇଁ ପ୍ରେମସ୍ଥାନ ଏ ମଣ୍ଡମଣ୍ଡଳେ ।"



( ନିଃଶବ୍ଦ ଡାକର ମାୟା : ଶୂନ୍ୟତାର ଶୋକ )

ଶ୍ରୀ ମିଶ୍ରଙ୍କ କବିତାରେ ଯୁଗଯନ୍ତ୍ରଣା ଓ ସନାତନ ଦୁଃଖର ସ୍ୱର ଏକ ବିଷାଦ-ବିଜଡ଼ିତ ପରିବେଶ ତିଆରି କରେ । କିନ୍ତୁ ତାଙ୍କ କବିତା ଚେତନାକୁ ତହିଁରୁ ଉତ୍ତୀର୍ଣ୍ଣ କରାଇ ଏକ ଆତ୍ମୀୟ ଆଶ୍ୱାସନାମୟ ଅଞ୍ଚଳକୁ ନେଇଯାଏ । ଏ ଦୃଷ୍ଟିରୁ ସେ କେତେକାଂଶରେ ସ୍ଥିତିବାଦୀ ମନେ ହୁଅନ୍ତି । ଏ ସ୍ଥିତିବାଦ ଆସିଛି ପରିଣତ ବୟସର କବିତାରେ । କବି ଜୀବନର ମସ୍ତବଡ଼ ଦୁଃଖ ବୋଲି ଘୋଷଣା କଲେ ମଧ୍ୟ ଜୀବନ ପ୍ରତି କବିଙ୍କ ସମ୍ମୋହନ ଖୁବ୍ ବେଶୀ । ତାଙ୍କର ଉକ୍ତି :

"ଏପରି କେଉଁ ଦୁଃଖ ଅଛି କହ
ଯାହା ଜୀବନ ଠାରୁ ଆହୁରି ଗଭୀର
ଏବଂ ବେଶୀ କ୍ଷଣସ୍ଥାୟୀ × × ×
ବାଛି ବାଛି ନଈକୂଳେ ମୋ ପାଇଁ ତୋଳା ହେଲା ଘର
ମନ ତ୍ରସ୍ତ ଅଭ୍ୟସ୍ତ ହେବ ଦେଖି ବଢ଼ି ପାଣି ଆଉ ମାଟିଆ କୁମ୍ଭୀର ।"

(ଅବଜ୍ଞାର ମନ : ସପ୍ତମ ପୃଥିବୀ)

ଜୀବନ ପାଇଁ ହେଉ, ଈଶ୍ୱର ଅଭୀପ୍ସା ହେଉ କିମ୍ବା ସାମୂହିକ କଲ୍ୟାଣବୋଧ ହେଉ, ତହିଁରେ ଅଶ୍ରୁ ଓ ରକ୍ତର ଉତ୍ତାପ ଦେଇ ଶ୍ରୀ ମିଶ୍ର ଦୁଃଖକୁ ଆବେଗାତ୍ମକ ରୂପ ଦେଇଛନ୍ତି । ଏଣୁ ତାଙ୍କ କାବ୍ୟପୁରୁଷ ବାସ୍ତବତାର ଜ୍ୱଳନରେ ଜଳି ଦୁର୍ଦ୍ଦଣ୍ଡ ଖରବେଳେ ମୃଗୟା ପାଇଁ ପ୍ରସ୍ତୁତ ହୁଏ (ମଧ୍ୟାହ୍ନର ଗୁଣ) । ଯୁଗଯନ୍ତ୍ରଣା ଓ ଜୀବନଯନ୍ତ୍ରଣାର ବାସ୍ତବ ଉଚ୍ଚାରଣ ଭିତରେ କାବ୍ୟସ୍ୱର ଏକାନ୍ତ ବିଷାଦ ବିଜଡ଼ିତ । 'ମଧ୍ୟାହ୍ନର ଗୁଣ' ଗ୍ରନ୍ଥରୁ ଦୁଇଟି ଉଦ୍ଧୃତି :

"ଯେଉଁଠି ଦିନେ ବିଭିନ୍ନ ରଙ୍ଗ ଓ ବୟସର ସାର୍ଥକ ଯୁବତୀଙ୍କ
ସ୍ତନରେ ଆଘାତ ପାଇ ନଈର ଫେଣ ଫୁଲି ଉଠିଥିଲା ସମୁଦ୍ର ସମାନ;
ଆଜି ସେଠି କେତେଟା ମଲାମାଛ ପଡ଼ିଛନ୍ତି ଚିଲଙ୍କ ମୁହଁରୁ
ଓ ସେଠାରେ ମୂର୍ଦ୍ଧାର ଗନ୍ଧ ସ୍ତବ୍ଧ କରେ ଶାଗୁଣାର ହାଡ଼ ।"

(ଦୁଇଦିନ ଓ ଦୁଇରାତି)

କମ୍ପା,

"ଆଜି ହୋଯ୍ଷ ବସନ୍ତ ପଡ଼ିଛୁ ଏକ ଧଳା ପ୍ରଜାପତି
ଶବ ହୋଇ ବାସିଫୁଲ ପାଖୁଡ଼ାରେ ମୋର ପ୍ରଗଣାରେ ।"  (ଦୁଇଦାଗ)

ଶ୍ରୀ ମିଶ୍ରଙ୍କ କବିତାରେ ଜୀବନ ଜୀଇଁବା ପାଇଁ ବଳରାମ ସୁଆର, ଶୁକ ବଢ଼େଇ, ରଘୁ ସାହାଣୀ ଆଦି ଚରିତ୍ରମାନେ ଜୀବନର ବେଦୀରେ ଜ୍ୱଳନର ଉତ୍ତାପକୁ ବେଶ୍ ଅନୁଭବ କରନ୍ତି । ଏହି ପ୍ରସଙ୍ଗରେ 'ନିମନ୍ତ୍ରଣ' ଓ 'ନିଃଶବ୍ଦ ଡାକର ମାୟା' ଦୁଇଟି ଉତ୍କୀର୍ଣ୍ଣ କବିତା । 'ନିମନ୍ତ୍ରଣ'ରେ ପକ୍ଷୀ ପ୍ରତୀକ ଜରିଆରେ ଦୁଃଖଦୁର୍ଦ୍ଦଶାଜର୍ଜର ପଳାୟନମୁଖୀ ବ୍ୟକ୍ତି-ମଣିଷକୁ ଗଭୀର ଆତ୍ମବିଶ୍ୱାସ ଓ ଆଶ୍ୱାସନା ଦେଇ ମାଟି ପ୍ରତି ମୋହାବିଷ୍ଟ କରାଯାଇଛି । "ନିଃଶବ୍ଦ ଡାକର ମାୟାରେ" ଖସିପଡ଼ିଥିବା ପତ୍ର ସହିତ ଅନ୍ତରଙ୍ଗ କଥୋପକଥନରେ କବି ଏକ ଚିରସ୍ଥିତ ସତ୍ୟକୁ ସାମ୍ପ୍ରତିକ ପରିପ୍ରେକ୍ଷୀରେ ଚରିତ୍ରଧର୍ମୀ ଭାବେ ଉପସ୍ଥାପନ କରିଛନ୍ତି । ପଡ଼ିରହିଥିବା ସଂସାରର ଅନନ୍ତ କୋଳରେ ବଞ୍ଚି ରହିଥିବା ମୁହୂର୍ତ୍ତଟିକୁ ଜୀଇଁ ପାରିବାଇ ଜୀବନର ସାର୍ଥକତା—ଏଇ ବାର୍ତ୍ତା ଟିକକ କବିତାଟିକୁ ଏକାନ୍ତ କାଳଜୟୀ କରିଛି । ନିଷ୍ପ୍ରେମ ପୃଥିବୀରେ ହାହୁତାଶମୟ ଜୀବନ ପାଇଁ ଏ କବିତାରେ କେତେ ଆଶ୍ୱାସନା ଭରି ରହିଛି । ବଉଳପତ୍ର ପରି ଝଡ଼ିଯିବାକୁ ବସିଥିବା ଅସହାୟ କାବ୍ୟପୁରୁଷ ବଉଳପତ୍ରକୁ ଆଶ୍ୱାସନା ଦେଉ ଦେଉ ସତେ ଯେମିତି ନିଜକୁ କହୁଛି :

"ଯେଉଁ ଦିନଟିଏ ବଞ୍ଚିଲୁ ତୁ
ଅଙ୍ଗେ ଯେଉଁ ଉଦ୍‌ବେଳ ଯୌବନ ସେତିକି
ଯଥେଷ୍ଟ ସ୍ୱପ୍ନ ପାଇଁ ପ୍ରେମହୀନ ଏ ମହୀମଣ୍ଡଳେ ।"

ଶ୍ରୀ ମିଶ୍ରଙ୍କ କାବ୍ୟପୁରୁଷ ଜୀବନର ଦୁଃଖ ଓ ଅଶ୍ରୁକୁ ଅମୂଲ୍ୟ ସମ୍ପଦ ପରି ପରମ ସାଦରେ ସାଉଁଟି ନେଇଛି । ଦୁଃଖକୁ ଚରିତ୍ରମୟ କରି ତାକୁ ଆନ୍ତରିକ ବ୍ୟଙ୍ଗ କରିବା ସହିତ ତା'ପ୍ରତି ସ୍ନେହମମତା ଅଜାଡ଼ି ଦେବାରେ ସେ କାର୍ପଣ୍ୟ କରିନାହିଁ । କୋଟେଇରେ ଶ୍ମଶାନ-ଯାତ୍ରା ବେଳେ ମଧ୍ୟ କାବ୍ୟପୁରୁଷ ଜୀବନ ପ୍ରତି ଏକାନ୍ତ ପୁଲକ ଓ ପ୍ରୀତିପଦ ଦୃଷ୍ଟି ନିକ୍ଷେପ କରିଛନ୍ତି । ତାଙ୍କ କବିତାର ନାମ ମଧ୍ୟ—"ମୁଁ ପଢ଼ିଛି ଦୁଃଖର ଲଲାଟ ଲିଖନ" । ଶ୍ରୀ ମିଶ୍ରଙ୍କ 'ମଧ୍ୟାହ୍ନର ଗ୍ରୁଇ'ଠୁଁ 'ଶୂନ୍ୟତାର-ଶୋଷ' ଯାଏଁ 'ଦୁଃଖ-ଚେତନା'ର ରୂପାନ୍ତର ଓ ଉତ୍ତରଣ କବିଙ୍କୁ ଅଧିକ ଜୀବନବାଦୀ କରିଛି । ଦୁଃଖପ୍ରତି କବିଙ୍କର ବ୍ୟଙ୍ଗ, ଆତ୍ମୀୟତା ଓ ସମବେଦନା । ଜୀବନର ଦୁଃଖ ଓ ଯନ୍ତ୍ରଣା ପ୍ରତି ଏ ଅଙ୍ଗୀକାରରେ କୌଣସି କୃତ୍ରିମତା ବା ଅହଙ୍କାର ନାହିଁ । ଦୁଇଟି ମାତ୍ର ଉଦ୍ଧୃତି ନେବା :

"ମଧ୍ୟାହ୍ନରେ ଯିଏ ଶକ୍ତ ଓ ଯିଏ
କାତ ଖୋଜି ପାଏ ନାହିଁ
ଘେରାର ନଇରେ ସେ କାହିଁ ବ୍ୟଥିତ ହେବ
ନଈ ମୁହାଁଣରେ ଦେଖି ଉଦୟ ବା ଅସ୍ତ ।"                    (ଛବି)

କିମ୍ବା,

"ଯିଏ ବର୍ଷା ପାଇଁ ରୁ କାନ୍ଦ ଶିଖିଛୁ
ତା' ଆଖି ପାଣି କେବେ ଶୁଖିବ ବୋଲି ବିଶ୍ୱାସ କରୁନ ।"        (ପଦ୍ମପତ୍ରରେ)

**ଛନ୍ଦ :**

କବି ଦୀପକ ମିଶ୍ରଙ୍କ ଗଢ଼ଣକଳା ଖୁବ୍ ବେଶୀ ପରୀକ୍ଷାମୂଳକ ନ ହେଲେ ମଧ୍ୟ ଅନେକ ବୈଚିତ୍ର୍ୟ ସମନ୍ୱିତ । ତାଙ୍କ କବିତାରେ ବହୁପ୍ରକାର ଗୀତ ବା ଛନ୍ଦର ପ୍ରୟୋଗ ଲକ୍ଷିତ ହେଲେ ହେଁ ଆଙ୍ଗିକ ପରିବର୍ତ୍ତନ ପାଇଁ ସେ ନିର୍ଦ୍ଦିଷ୍ଟ ଭାବେ କିଛି ପରୀକ୍ଷାମୂଳକ ପଦକ୍ଷେପ ନେଇ ନାହାଁନ୍ତି । ସେ ମୁଖ୍ୟତଃ ଚିତ୍ରକଳ୍ପର କବି । ଚିତ୍ରକଳ୍ପ ପରେ ପ୍ରତୀକ ଓ ମିଥ୍‌ର ଆଶ୍ରୟ । ଚିତ୍ରକଳ୍ପର ବିବିଧ ଓ ବହୁଳ ପ୍ରୟୋଗ ଶ୍ରୀ ମିଶ୍ରଙ୍କ କବିତାରେ ଯେଉଁ ବିଧିବଦ୍ଧତା ପାଇଛି, ତାହା ସମକାଳୀନ କାବ୍ୟକାରଙ୍କଠାରେ ବହୁତ କମ୍ ପରିଲକ୍ଷିତ ହୁଏ । ବର୍ଣ୍ଣନା ଶୈଳୀରେ ଶ୍ରୀ ମିଶ୍ର କେତେବେଳେ ପରିମିତ ଓ କେତେବେଳେ ବର୍ଣ୍ଣନାଧର୍ମୀ ପଂକ୍ତିଚୟନରେ ଉଭୟ ପଦ୍ୟମୟତା ଓ ଗଦ୍ୟମୟତା ଭରି ହୋଇ ଆବେଗର ସହ ବକ୍ତବ୍ୟ ରାଖନ୍ତି । ବୈପରୀତ୍ୟ କଥନ ଢଙ୍ଗ ଓ ଅପ୍ରଚଳିତ ଶବ୍ଦମାନଙ୍କୁ ପରିବେଷଣ ଶୁଶ୍ରୂଷା ଦ୍ୱାରା ସେ ସମନ୍ୱିତ କରିଛନ୍ତି । କାଁ ଭାଁ ଅଧିକ କଥନ ତାଙ୍କୁ ବର୍ଣ୍ଣନାଧର୍ମୀ କରିଛି ଏବଂ କବିତାର କେତେକାଂଶ ଶବ୍ଦଖେଳରେ ଆବଦ୍ଧ ରହିଯାଇଛି । ଏହା ଶ୍ରୀ ମିଶ୍ରଙ୍କ କବିତାର ଦୁର୍ବଳତା ବୋଲି ମନେ ହୋଇଥାଏ ।

ଶ୍ରୀ ମିଶ୍ରଙ୍କ କବିତା ଏକାନ୍ତ ଚିତ୍ରକଳ୍ପମୟ । ଆଧୁନିକ ଓଡ଼ିଆ କବିତାରେ ଚିତ୍ରକଳ୍ପ ଚୟନରେ ସେ ଜଣେ ବିଶିଷ୍ଟ କର୍ଣ୍ଣଧାର । ଚିତ୍ରକଳ୍ପ ଦ୍ୱାରା ତାଙ୍କ କବିତା ବେଳେବେଳେ ଜଟିଳ, ବେଳେବେଳେ ସୁଦୃଶ୍ୟ, ପରିଛନ୍ନ ହୋଇଉଠେ । ଚିତ୍ରକଳ୍ପ ତାଙ୍କ କବିତାର ଉଭୟ ଅଙ୍ଗ ଓ ଆତ୍ମା । ଚିତ୍ରକଳ୍ପକୁ ବାଦଦେଇ ତାଙ୍କ କବିତାର ସ୍ଥିତି ଓ ଶକ୍ତି କଳ୍ପନା କରିଯାଇ ନ ପାରେ । ବସ୍ତୁ ଭାବ ଓ ଦୃଶ୍ୟର ସାକାରତ୍ୱ ପାଇଁ ଆଧୁନିକ କବିତାରେ ଚିତ୍ରକଳ୍ପର ଅନିବାର୍ଯ୍ୟତା ସ୍ୱୀକାର୍ଯ୍ୟ । ଶ୍ରୀ ମିଶ୍ରଙ୍କ ଅଧିକାଂଶ ଚିତ୍ରକଳ୍ପରେ ସତ୍ୟ ସତେଜ ପ୍ରକୃତ ହିଁ ମୂର୍ତ୍ତି ରୂପ ନେଇଛି । ଯନ୍ତ୍ର ସଭ୍ୟତାର ବସ୍ତୁସକଳ ସେଠି ଜାଗାମାଡ଼ି ବସି ନାହାଁନ୍ତି । ଗୋଟିଏ ଗୋଟିଏ ବସ୍ତୁ ବା ଦୃଶ୍ୟ ପାଇଁ ସେ ଏକାଧିକ ଚିତ୍ରକଳ୍ପ ବିଭିନ୍ନ ଜାଗାରେ ପ୍ରୟୋଗ କରିଛନ୍ତି । ତାଙ୍କର ଅସଂଖ୍ୟ ଶବ୍ଦଚୟନ,

ସଂକ୍ରିତୟନ, ପରିଚ୍ଛେଦ ଚୟନ, କେବେ ସମ୍ପୂର୍ଣ୍ଣ କବିତାଟିଏ ବନ୍ଧୁ ଛନ୍ଦରେ ଚିତ୍ରକଳ୍ପମୟ । ଏ ପ୍ରସଙ୍ଗରେ ସ୍ୱତନ୍ତ୍ର ପ୍ରବନ୍ଧର ଆବଶ୍ୟକତା ରହୁଛି । ଓଡ଼ିଆ କବିଙ୍କ ପ୍ରତି ଚିତ୍ରକଳ୍ପ ପ୍ରୟୋଗରେ ପାଶ୍ଚାତ୍ୟ ସାହିତ୍ୟର ଅନୁସରଣ ଅଭିଯୋଗ ହେଉଥିବେବେଳେ ସେମାନେ ସ୍ୱକୀୟ ପରମ୍ପରା ଓ ପରିବେଶରୁ ଦୂରେଇ ଯାଉଛନ୍ତି ବୋଲି କୁହାଯାଏ । ଏ ଅଭିଯୋଗର ଉତ୍ତରରେ ଶ୍ରୀ ମିଶ୍ରଙ୍କ କବିତାରୁ ଦୁଇଟି ମାତ୍ର ଚିତ୍ରଧର୍ମୀ ଗ୍ରାମ୍ୟ ଚିତ୍ରକଳ୍ପର ଉଦାହରଣ ଉପସ୍ଥାପନ କରାଯାଉଛି । ଏଥିରେ ଅବଶ୍ୟ ଉପମାଧର୍ମର ଆଧିକ୍ୟ ରହୁଛି ।

(୧) "ଜମଗଛ ପତ୍ର/ସିଂଧାସଳଖ ତୁମ ଶରୀର ଗଠନ,
ଜମଗଛ ଡାଳରେ ମୌନ ହଳଦୀବସନ୍ତ ପକ୍ଷୀ
ତୁମ ବାଁ କାନ୍ଧରେ ହଳଦୀ ରଙ୍ଗର
ଚନ୍ଦନ ଗନ୍ଧ ଗୃହଦରର ବାଛନ୍ଧ ପତନ । / ଅମୃତଭଣ୍ଡା ଗଛର ଉର୍ଦ୍ଧ୍ୱାଂଶ ପରି
ତୁମ ପେଣ୍ଡା ଦୁଇଟି × × × ନନ୍ଦିକା ଭେଣ୍ଡି ରକମ ବଣ ଆଙ୍ଗୁଠି ।"
(ଗୌରମୋହନ ମାଷ୍ଟ୍ରେ)

(୨) ଧଳା କଇଁ ରଙ୍ଗ ପରି ଆଙ୍ଗୁଠି ଦଶଟି ଯାହା ଦିନେ
ଧରି ବାନ୍ଧି ରଖିଥିଲା ଉନ ଗାଁର ପିଲାଙ୍କ ଶୂନ୍ୟ ଚେତନାକୁ,
ସେମାନେ ଓହ୍ଲାଇଥାନ୍ତି ପୋକଲଗା ଶେଥା ବାଇଗଣ ଭଳି ମଣ ମଣ
ଯାଉଥିବା ବାଇଗଣ ଗଛର ମଡ଼ ମଡ଼ ଶୁଖିଲା ଡେମ୍ଫରୁ... (ବଳରାମ ପୁଆର)

ଶ୍ରୀ ମିଶ୍ର ପୁରାଣ ଓ ଅନ୍ୟାନ୍ୟ ଶାସ୍ତ୍ରରୁ ମଧ୍ୟ ଚିତ୍ରକଳ୍ପ ସଂଗ୍ରହ କରିଛନ୍ତି । ଆଲୋଚନାର କଳେବର ବୃଦ୍ଧି ଦୃଷ୍ଟିରୁ ଆଲୋଚକର ଚିତ୍ରକଳ୍ପ ସଂପର୍କରେ ଏଠାରେ କେବଳ ସଂକ୍ଷିପ୍ତ ପରିଚୟାତ୍ମକ ସୂଚନା ।

ଶ୍ରୀ ମିଶ୍ରଙ୍କ ପ୍ରତୀକ ପ୍ରୟୋଗ ସଂପର୍କରେ ବିଭିନ୍ନ ଆଲୋଚକ ବିଭିନ୍ନ ସ୍ଥାନରେ ଆଲୋକପାତ କରିଛନ୍ତି । ହରିହର ମିଶ୍ର ଏବଂ ଦାଶରଥି ଦାସ ଶ୍ରୀ ମିଶ୍ରଙ୍କ ସଙ୍କଳନର ମୁଖବନ୍ଧରେ ଏବଂ ଶ୍ରୀ ରବି ସାହି 'ଯନ୍ତ୍ରଣାର ବୃତ୍ତରୁ ମୁକ୍ତିର ସ୍ୱର' (୩) ଶୀର୍ଷକ ଆଲୋଚନାରେ ସବିଶେଷ ଦୃଷ୍ଟିପାତ କରିଛନ୍ତି । ତେବେ ଶ୍ରୀ ମିଶ୍ରଙ୍କ ପ୍ରତୀକମାନଙ୍କ ମଧ୍ୟରୁ କେତୋଟି ଆମର ପ୍ରାଚୀନ ସାହିତ୍ୟରୁ ପରମ୍ପରା-ମାନ୍ୟତା ନ୍ୟାୟରେ ସଂଗୃହୀତ । କେତୋଟି ପୁଣି ଏକାନ୍ତ ବ୍ୟକ୍ତିଗତ ପ୍ରତୀକ । ସେ ଯାହାହେଉ, କବିତାର ଆବଶ୍ୟକତା-ମତେ ପ୍ରତୀକ ତାଙ୍କ କବିତାରେ ସ୍ୱୟଂସିଦ୍ଧ ପ୍ରୟୋଗମାନ୍ୟତା ପାଇଛି । ପାରମ୍ପରିକ ବା ପ୍ରଥାସିଦ୍ଧ ପ୍ରତୀକ ପ୍ରୟୋଗ ଭିତରେ ସେ ଆବଦ୍ଧ ରହି ନାହାଁନ୍ତି ।

---

(୩) ଛନ୍ଦାହାର—୨ ଦ୍ରଷ୍ଟବ୍ୟ ।

ଏହି ପରିପ୍ରେକ୍ଷୀରେ କବିଙ୍କ ବିଭିନ୍ନ ସଂକଳନମାନଙ୍କର ନାମକରଣକୁ ସ୍ୱତନ୍ତ୍ରଭାବେ ବିଚାର କରାଯାଇପାରେ । 'ଅନାମୀକା', 'ଅନୁଷ୍ଟୁପ୍' (ଏକ ରାଗବିଶେଷ) ଏବଂ 'ନଷ୍ଟନୀଡ଼ ହ୍ରଦ' ଗୋଟେ ଗୋଟେ ପ୍ରତୀକ । 'ନିର୍ଜନ ନକ୍ଷତ୍ର'ର ଆଲୋକ ବା ଦ୍ୟୁତି କବିଙ୍କ ପାଇଁ ସୌନ୍ଦର୍ଯ୍ୟ ଓ ପବିତ୍ର ଭାବର ପ୍ରତୀକ ହୋଇଥିବାବେଳେ 'ମଧ୍ୟାହ୍ନର ଗ୍ରହ' ଗନ୍ତବ୍ୟ ଜୀବନଚର୍ଯ୍ୟାର ପ୍ରତୀକ ଭାବେ ବାସ୍ତବ ପୃଷ୍ଠଭୂମିକୁ ଚିହ୍ନିତ କରୁଛି । 'ବୃନ୍ତ' ହେଉଛି ଦେହ, ମନ, ଆତ୍ମାର ପରିଧି ଭିତରେ ଜୀବନ ଚିନ୍ତା ଓ ତତ୍ତ୍ୱଚିନ୍ତାକୁ ନେଇ ପରିସୀମାର ଊର୍ଦ୍ଧ୍ୱକୁ ଉଠିବାର ଅଭୀପ୍ସା ।

ସପ୍ତମ ପୃଥିବୀ ଏକ ଊର୍ଦ୍ଧ୍ୱସ୍ଥିତ ସ୍ଥିତିର ପରିକଳ୍ପନା । 'ଅରଣୀ ମର୍ଚ୍ଛିତି' ମୃତ୍ୟୁର ପ୍ରତୀକ; ଅଥଚ ସେହି ମୃତ୍ୟୁ କାବ୍ୟପୁରୁଷ ଦୃଷ୍ଟିରେ ଯେମିତି ଜୀବନର ଏକ ଅଂଶ । ଜୀବନ ମୃତ୍ୟୁମୟ—ଏ ସହଜ ସତ୍ୟଟି 'ଅରଣୀ ମର୍ଚ୍ଛିତି'ରେ ପ୍ରତିଫଳିତ ହୋଇଥିଲେ ହେଁ ଅଧିକ ଭାବରେ ଏଠାରେ ମୃତ୍ୟୁ ଜୀବନମୟ । 'ଶୂନ୍ୟତାର ଶୋଷ'ରେ ଜୀବନଚର୍ଯ୍ୟାର ବହୁବିଧ ମୁହଁ । ସବୁ ଅପ୍ରାପ୍ତି ପରେଇ ଶୂନ୍ୟତା । ତା'ର ଶୋଷକୁ ଚୂପିଦେବା ଅର୍ଥ ଦୁଃଖବାଦକୁ ଆପଣେଇ ତାକୁ ଅତିକ୍ରମ କରିବା । କବିତା ତ ସ୍ୱୟଂ ଏକ ବୃହତ୍ତର ପ୍ରତୀକ ଯାହା ସବୁ ଭାବକୁ ନିଜ ଭିତରେ ଧରି ରଖେ । ଶ୍ରୀ ମିଶ୍ରଙ୍କ କବିତା ସଙ୍କଳନମାନଙ୍କର ପ୍ରତୀକ ଅର୍ଥ ବେଶ୍ ପ୍ରାଞ୍ଜଳ ଓ ଆବେଦନଧର୍ମୀ । କବିଙ୍କ ପ୍ରତୀକ-ପ୍ରୟୋଗ ସମ୍ପର୍କରେ ବିସ୍ତୃତ ଦୃଷ୍ଟିପାତ କରାଯାଇପାରେ ।

ପୌରାଣିକ ଆଖ୍ୟାନ ବା Mythକୁ ନେଇ ଶ୍ରୀ ମିଶ୍ରଙ୍କର କେତୋଟି ସୁନ୍ଦର ସିଧାସଳଖ କବିତା ରହିଛି । କିନ୍ତୁ ମୋର ମନେହୁଏ ମିଥ୍ ତାଙ୍କ କବିତାରେ ଏକାନ୍ତ ମହାତ୍ମ୍ୟକ ଉପାଦାନ ଭାବେ ବେଶି ଭାବରେ ବ୍ୟବହୃତ । ନିର୍ଜନ ନକ୍ଷତ୍ରର ପୂର୍ବ ସଙ୍କଳନ-ମାନଙ୍କରେ ଏହା ଲକ୍ଷ୍ୟ କରାଯାଇପାରେ । ପୁନଶ୍ଚ ମିଥ୍ ତାଙ୍କ କବିତାର ଭଙ୍ଗୀ ଓ ପ୍ରତୀକ ଭାବରେ ମଧ୍ୟ ବ୍ୟବହୃତ । ତାଙ୍କ କବିତାରେ ବହୁ ପୌରାଣିକ ଆଖ୍ୟାନର ସମାବେଶ ପାଠକକୁ ପୁରାଣ-ଶାସ୍ତ୍ର ଆମୁଖ କରିବାକୁ ବାଧ୍ୟ କରେ । ଏତଦ୍‌ଭିନ୍ନ ଲୋକକଥା, ଲୋକଗୀତ, ଅନ୍ୟ ଭାଷାର ଶିଳ୍ପୀ, ସାଧକ, ସଙ୍ଗୀତଜ୍ଞଙ୍କ ଦର୍ଶନ ମଧ୍ୟ ତାଙ୍କ କବିତାର ଗଢ଼ଣଶୈଳୀକୁ ସମୃଦ୍ଧ କରିଛି । ପ୍ରାଚୀନ କବିଙ୍କର ବହୁ ଉଦ୍ଧୃତିକୁ ମୂଳକେନ୍ଦ୍ର କରି ଶ୍ରୀ ମିଶ୍ର ଅନେକ ସାର୍ଥକ କବିତା ରଚନା କରିଛନ୍ତି । ଓଡ଼ିଆ କବିତାରେ ସେ ବୋଧେ ସବୁଠୁ ବେଶୀ ଉଦ୍ଧୃତିକୁ ପ୍ରୟୋଗମାନ୍ୟତା ଦେଇଛନ୍ତି । (୪) ଭାଗବତ, ମହାଭାରତ,

(୪) ପରମ୍ପରା-ମାନ୍ୟତାର ଆଉ ଏକ ବାଟ ହେଉଛି ପୂର୍ବବର୍ତ୍ତୀ କବିଙ୍କ ଉଦ୍ଧୃତି ଉଲ୍ଲେଖ କରି କବିତା ରଚନା କରିବା । ଉଦ୍ଧୃତିଟି କବିତା ପାଇଁ ମୂଳକେନ୍ଦ୍ର ବା ପିଣ୍ଡରୂପ କାର୍ଯ୍ୟ କରେ । ଉଦ୍ଧୃତ ଉକ୍ତିଟି ଖୁବ୍ ଶକ୍ତିଶାଳୀ ହୋଇପାରେ କିମ୍ବା ପରବର୍ତ୍ତୀ କବିତାର ଆଭିମୁଖ୍ୟକୁ ଖାଲି ପ୍ରକଟିତ କରିପାରୁଥିଲେ ଚଳେ । ଏହା

ବର୍ଣ୍ଣବୋଧ ଆଦ ଗ୍ରନ୍ଥମାନ ତାଙ୍କ କବିତା ପାଇଁ ଗମ୍ଭୀର ପ୍ରେରଣା ପ୍ରଦାନ କରିଛି । ବର୍ଣ୍ଣବୋଧରୁ ନିଆଯାଇଥିବା ଉଦ୍ଧୃତି ଦ୍ୱାରା ସେ ଛଅୋଟି ସ୍ୱତନ୍ତ୍ର କବିତା ନିର୍ମାଣ କରିଛନ୍ତି । କବି ମଧୁ ରାଓଙ୍କ ସ୍ୱର ସହିତ ବିରୋଧାଭାସ ସତ୍ତ୍ୱେ ବି ସେ ପରମ୍ପରାକୁ ମାନ୍ୟ କରି ନୂତନ ଅର୍ଥ ଅନ୍ୱେଷା କରିଛନ୍ତି । କବିତାଗୁଡ଼ିକ ହେଉଛି : 'ଆକାଶର ନୂତନ ଓ୍ୟାରିକା', 'ମଧ୍ୟାହ୍ନର ଗ୍ରୁଚ', 'ଅରଣ୍ୟ ମଳିଚି' । ଶେଷ ଦୁଇଟି ଶୀର୍ଷକକୁ ସେ ସ୍ୱକୀୟ ସଂକଳନର ନାମ ଗୌରବ ଦେଇଛନ୍ତି । ଅନ୍ୟ ସବୁ ଉଦ୍ଧୃତି 'କାୟାପ୍ରବେଶ', 'ଶୁକ-ପରୀକ୍ଷିତ ସମ୍ବାଦ', 'ପ୍ରଥମାଟିଏ ଗଢ଼ିଲା ପରେ' ଆଦି କବିତାରେ ବ୍ୟବହୃତ ହୋଇଛି । ପରମ୍ପରାର ଆହୁରି ଅନେକ ଜିନିଷକୁ ନିଜ କବିତାରେ ସଂଯୋଜିତ କରି ସେ ପରମ୍ପରାକୁ ବହୁ ବାଗରେ ଗମ୍ଭୀର ମାନ୍ୟତା ପ୍ରଦାନ କରିଛନ୍ତି । ଶ୍ରୀ ମିଶ୍ରଙ୍କ ମିଥ୍ ପ୍ରୟୋଗ ଓ ଆବେଦନ ସଂପର୍କରେ ସୁଦୀର୍ଘ ପ୍ରବନ୍ଧର ଅବତାରଣା କରାଯାଇପାରେ । ଏଠାରେ ସାମାନ୍ୟ ସୂଚନା ମାତ୍ର ଦିଆଯାଇଛି ।

ଦୀପକ ମିଶ୍ର ଏକାନ୍ତ ଆବେଗବାନ୍ କବି । ଆବେଗର ଲହରି ତାଙ୍କ କବିତାରେ ବର୍ଣ୍ଣନା ବହୁଳତାକୁ ବେଳେ ବେଳେ ପ୍ରଶ୍ରୟ ଦେଉଥିଲେ ମଧ୍ୟ, ଗଦ୍ୟମୟ ପଂକ୍ତିମାନ କବିତା ମଝିକୁ ଓହ୍ଲାଇ ଆସୁଥିଲେ ମଧ୍ୟ ସବୁକୁ ସମୀକରଣ କରି ଏକ ସଙ୍ଗୀତମୟ ଆବେଦନ ସୃଷ୍ଟି କରେ । ଏହି ସଙ୍ଗୀତମୟ ଆବେଦନ ପାଇଁ ତାଙ୍କର ବିଭିନ୍ନ ସଙ୍କଳନରୁ ସ୍ୱତନ୍ତ୍ର କବିତାମାନ କାଢ଼ି ନିଆଯାଇପାରେ । ଆଧୁନିକ କବିତାରେ ଗଦ୍ୟମୟତାର ପ୍ରାଚୁର୍ଯ୍ୟ ଭିତରେ ଏ ସଙ୍ଗୀତମୟତା ନିଶ୍ଚିତ ଭାବରେ ପ୍ରଣିଧାନଯୋଗ୍ୟ । ଶ୍ରୀ ମିଶ୍ରଙ୍କ ଆବେଗାତ୍ମକ ଭାଷାଶୈଳୀ କାଞ୍ଚା ବା ଶୃଙ୍ଖଳ ଭାବପ୍ରବଣତା ପ୍ରଣୋଦିତ ନୁହେଁ; ତହିଁରେ ଗମ୍ଭୀର ବୌଦ୍ଧିକ ଜିଜ୍ଞାସାବୋଧ, ଦାର୍ଶନିକ ଉପଲବ୍ଧି, ବହୁ ଶାସ୍ତ୍ର ସଂଜାତ ଅଭିଜ୍ଞତା, ଯୁକ୍ତିପ୍ରବଣ ମନନ, ପଦ୍ୟମୟତା, ଗଦ୍ୟମୟତା ଫେଣ୍ଟାଫେଣ୍ଟି ହୋଇ ରହିଛି । ତାଙ୍କ କବିତାର ଗଢ଼ଣ-କଳା ଭାବଚେତନାର ବିକାଶ ବା ଉତ୍ତରଣ ସହିତ ସମାନ ଭାବରେ ବିବର୍ତ୍ତନଶୀଳ ହୋଇ ନାହିଁ । କେଉଁଠି ଦୀର୍ଘ ବର୍ଣ୍ଣନା ତ କେଉଁଠି ସଂକ୍ଷିପ୍ତ କଥନ, କେଉଁଠି ସୂଚନା ତ କେଉଁଠି ବର୍ଣ୍ଣନା । ଶ୍ରୀ ମିଶ୍ରଙ୍କ କହିବା ଢଙ୍ଗ ଅନେକ ସମୟରେ ଅନ୍ତର୍ମୁଖୀ; ବହିର୍ମୁଖୀ ହେଲବେଳେ ତାହା ସମ୍ବେଦନଶୀଳତା ଓ ସମ୍ବୋଧନାତ୍ମକ ରୂପ ନେଇ ଉଭା ହୁଏ । ବେଳେବେଳେ ଉଭୟର ସମନ୍ୱୟ ମଧ୍ୟ ହୋଇଥାଏ ।

---

ପରବର୍ତ୍ତୀ କବିତାର କେନ୍ଦ୍ରବିନ୍ଦୁ ହୋଇପାରେ । ପରବର୍ତ୍ତୀ କବିତାର ବକ୍ତବ୍ୟକୁ ସଂପ୍ରସାରିତ ରୂପ ଦେଇପାରେ । ଉଦ୍ଧୃତି ଅନେକ ସମୟରେ ସ୍ୱତନ୍ତ୍ର କବିତା ନିର୍ମାଣ କରିଥାଏ । ମୋଟାମୋଟି ଏହା ଏକ ସହାୟକ ସାମଗ୍ରୀ ।

ଓଡ଼ିଆ କବିତାର ପରମ୍ପରା-ମାନ୍ୟତା : ଏକ ସୂଚନା—ଇସ୍ତାହାର—୨୭

—ଶତ୍ରୁଘ୍ନ ପାଣ୍ଡବ ।

ଅନ୍ତର୍ମୁଖୀ କହିବା ଢଙ୍ଗର ଉଦାହରଣ :

କିଏ ବା ଜାଣିବ କହ
କେତେ ମରୁଭୂମି ମୁଁ ପାରହେଲି
କେତେ ଚମ୍ପା କନକ ଓ କସ୍ତୁରୀ ପାଇଲି···(ସମର୍ପଣ)

କିମ୍ବା, ମୋ' ଛାତିରେ/ଭଲପାଇବାର ଭୃଗୁ ପଦଚିହ୍ନ
ମୋ' ପିଠିରେ/ମଲମଣିଷର ମଳା କଇଁ ବନ-। (ଦୃଷ୍ଟାନ୍ତ)

ବହିର୍ମୁଖୀ କହିବା ଢଙ୍ଗର ଉଦାହରଣ :

ହେ ମୋର, ପରାଶର ପୁତ୍ର ପର ମନ ଏଇ ଦେଖ
ତୋ' ପିତୃତ୍ୱର ଜମିଦାରୀ ମୁହଁ କାଉଳି × × ×
(ଶୁକ ପରୀକ୍ଷିତ ସମ୍ବାଦ)

କିମ୍ବା,

"ଏତେ ଏତେ ଅଙ୍ଗୀକାର ପରେ ଯଦି
ଝରୁଥାଅ ତୁମ ଓଦାବାଳର ଛାଇ
ମୋ ଘରକୁ କରିବ ଶ୍ମଶାନ
ଓ ଶସ୍ୟକ୍ଷେତ୍ର ହେବ ପୋଡ଼ାଭୂଇଁ
ତା' ହେଲେ ତମ ସ୍ୱରରେ ନାଇଁ × × (ଚକ୍ର)

ବେଳେବେଳେ କାବ୍ୟ ଅନୁଭବରେ ସେ ଏପରି ଉଚ୍ଚତାରେ ପହଞ୍ଚିଛନ୍ତି ଯେ ତହିଁରେ ଭାଷାର ସବୁ ଚୁଡ଼ି ଭାଙ୍ଗିଯାଇଛି । ସାଦାସିଧା ପଂକ୍ତି ଚୟନରେ ଏହା ସୂକ୍ଷ୍ମ କଳାତ୍ମକ ରୂପ ପରିଗ୍ରହଣ କରିଛି । ଅଙ୍ଗସଜ୍ଜା ପ୍ରତି ଏଠି ଯେପରି କୌଣସି ପ୍ରଚେଷ୍ଟା ନାହିଁ । ପଂକ୍ତିଗୁଡ଼ିକ ସତେ ଯେମିତି ସ୍ୱୟଂନିଃସ୍ୱ, ସ୍ୱୟଂ ଆଡ଼ମ୍ବରଶୂନ୍ୟ । ଅଳ୍ପ କେଇଟିର ଉଦାହରଣ :

(୧) "ଏଥର ତା' ହେଲେ
ମୁଁ ଉଠେ ମମତା;
ମୋ ବାହୁଡ଼ାଯାତ୍ରାରେ
କ'ଣ ଥିବ ଆଉ ନକ୍ଷତ୍ର ଆଲୋକ,
ତୁମ ଘରେ ଛାଡ଼ିଗଲି
ମୋ ଦେହରେ ଲଗିଦେଇ
ଆଣିଥିବା ରାତିକର ସବୁ ଜ୍ୟୋତ୍ସ୍ନାଲୋକ ।" (ଅଳୁଅ ନ ଥିଲେ ନାଇଁ)

(୨) "ବାସନାର ସ୍ୱଚ୍ଛକାଠରେ
ମୋ ଶ୍ମଶାନ ପଲଙ୍କ ନିର୍ମାଣ ହେବାପରେ
ତୁମର ଆସିବାର୍ ଥିଲା ।
× × ×
ଆମ୍ଭର ମିଳନରେ ଦେହର ଆଶଙ୍କା କ'ଣ ?
× × × ×
କେତୋଟି କଇଁଫୁଲର ପୋଷାକ ପିନ୍ଧିଲାବେଳେ
ତୁମର ଫେରିବାର ଥିଲା । (ଆଖି ଫିଟି ନ ଥିବା ଝିଅଟିରେ)

(୩) "ଯିଠିକୁ ଆଖି ପାଉ ନ ଥିବା, ଯିଠିକୁ ହାତ ପାଉ ନ ଥିବା
ମଣିଷ ଆମେତରେ ଭୂପଡ଼; ଖାଲି ମୃତ୍ତିର/ଗନ୍ଧକୁ
ଦୋହରେଇ ନାହାକଲି ନାକ ଭିତରକୁ
ଟାଣିନେବା ଆମ କାମରେ ଭୂପଡ଼ ।" (ଗୋଲପୋଷ୍ଟ)

କବି ଶ୍ରୀ ମିଶ୍ରଙ୍କ ଶବ୍ଦସମ୍ଭାର ବିଶାଳ ଓ ପରିପୂର୍ଣ୍ଣ । ଅନେକ ପ୍ରାୟ ବ୍ୟବହୃତ ହେଉ ନଥିବା ଶବ୍ଦକୁ ସେ ପ୍ରୟୋଗଗୌରବ ଦେଇଛନ୍ତି । କଇଁଶ୍ୱ, ମୃଚ୍ଛକଟିକା, ରଜନୀଗନ୍ଧା, ଓଷ୍ଠରିକା ଆଦି ଶବ୍ଦର ସ୍ୱାତନ୍ତ୍ର୍ୟ ବ୍ୟତୀତ ସଂସ୍କୃତାନୁଯାୟୀ ଶବ୍ଦ ତାଙ୍କ କବିତାରେ ବେଶୀ ଭାବରେ ବ୍ୟବହୃତ । ତାଙ୍କ କବିତାରେ ଇଂରାଜୀ ଶବ୍ଦ ପ୍ରୟୋଗ ପ୍ରତି ମୋହ ନାହିଁ କହିଲେ ଚଳେ (ଯେମିତି ରହିଛି ୭ ଅଖିଳମୋହନଙ୍କ ଠାରୁ କମ୍ପ୍ୟୁ ସୌନ୍ଦର୍ଯ୍ୟ ମିଶ୍ରଙ୍କ କବିତାରେ) । ଏକାନ୍ତ କଥିତ ଶବ୍ଦାବଳୀର ବ୍ୟବହାର ତାଙ୍କ କବିତାରେ ଖୁବ୍ ବେଶୀ ନାହିଁ । ଏଇ ଶବ୍ଦମାନଙ୍କର ଏକ ତାଲିକା ଆମେ ତଳେ ପ୍ରଦାନ କରୁଛୁ । ତାଙ୍କ ଶବ୍ଦଚୟନ ବା ଶବ୍ଦବୟନର କିଛି ନମୁନା ମଧ୍ୟ ଉପସ୍ଥାପନ କରିଯାଇପାରେ । ପାଠକେ ଏଇ ଶବ୍ଦମାନଙ୍କ ସାମ୍ନା କରନ୍ତୁ ଓ ତା'ର ପ୍ରୟୋଗକୁ ଉପଲବ୍ଧି କରନ୍ତୁ ।

ସେଗୁଡ଼ିକ : ଆଷାଢ଼, ହରଫ, ନୈଷ୍ଠିକ, ତଦାରଖ, ହରଦ୍ରା, ଦୁର୍ଦ୍ଦଣ୍ଡ, ପାର୍ଶ୍ୱଦ, ଅମୂଢ଼, ହଣ୍ଡିଗୋଳ, ନାଶ୍ପତି, ଜୌଲୁଷ, ନିର୍ଘାତ, ନାଙ୍କୁମ, ଯବନ୍ତି, ଆବର୍ତ୍ତି, ପଗଡ଼ି ମୁର୍ଖୀ ଗିଳୁଛି, କୁହାଟ, ବେଢ଼ଣ, ଆଳମାଳ, ସ୍ତିମିତ, ନିବାତ, କୋଟଟ, ଅମ୍‌ଥମ୍, ଗ୍ରାଜସିକ ଅନ୍ଧକାର, ଗମ୍‌ଗମ୍ ଅନ୍ଧକାର, ସୁସ୍ଥିର, ବେର୍ଦ୍ଧାକ୍, ତଚ୍ଛନଚ୍ଛ, ନଚ୍ଛକ୍, ବିପାକ, ଝିମ୍‌ଝିମ୍ ଆଲୁଅ, ନେଫେଡ଼ା, ଶ୍ରାନ୍ତାଳାପ, ନିରାଲମ୍ବ, ଆସଙ୍ଗଲିପ୍ସା, ସୁଠାମ, ନିର୍ଦ୍ଧୂମ୍, ଯଦୃଚ୍ଛା, ଅନୁକ୍ତ, ଅଜୁ, କାହିଲ୍, ଅଟରଟର, ଭକ୍‌ଭକ୍, ମିଆଦ, ହୃଷ୍ଟପୁଷ୍ଟ, ଗୁରୁଗୁରୁ, ହିଂକ୍ରମ, ନିଅଂଟ, ହିଂସ୍ରକରେ, ଦୁସ୍ତର, ଓଝାଡ଼ୀ, ଉଲ୍ଲାଇ କୁଲାଇ ଇତ୍ୟାଦି ।

ଶ୍ରୀ ମିଶ୍ରଙ୍କ ଅନେକ କବିତା ପ୍ରଥମପୁରୁଷମୟ ଢାଞ୍ଚରେ ଲିଖିତ । ତନ୍ମଧ୍ୟରେ 'ମୁଁ'ର କାବ୍ୟପୁରୁଷର ପ୍ରତିନିଧି । କିନ୍ତୁ ତାଙ୍କର ପରିଣତ ସମୟର କବିତାରେ 'ମୁଁ' କାର ଉଠିଯାଇ ତାହା ଏକାନ୍ତ ସାଧାରଣୀକରଣ ଆଡ଼କୁ ମୁହାଁଇଛି । ଅନେକ ଜାଗାରେ ଏଣୁ 'ତୁ' ସମ୍ବୋଧନ (କାବ୍ୟପୁରୁଷକୁ ଓ ଅନ୍ୟମାନଙ୍କୁ)ର ପ୍ରୟୋଗ ହୋଇଛି । ଏ ଆଲୋଚନାରେ ଉଲ୍ଲେଖ କରାଯାଇଥିବା ଉଦ୍ଧୃତିରୁ ଦୀପକ ମିଶ୍ରଙ୍କ ଭାବଚେତନା ଓ ଗଢ଼ଣ ଶୈଳୀର ବିଭିନ୍ନ ଦିଗକୁ ଅନୁଧ୍ୟାନ କରାଯାଇପାରେ ।

ଶେଷ :

ଶ୍ରୀ ଦୀପକ ମିଶ୍ର ସମ୍ପ୍ରତି ନିୟମିତ ଭାବେ କବିତା ରଚନାରେ ନିରତ । ନିକଟରେ ତାଙ୍କର ଏକାଦଶ ସଙ୍କଳନ 'କପଟ ସୂର୍ଯ୍ୟାସ୍ତ' (ବିଦ୍ୟାପୁରୀ, ୧୯୮୪) ଆତ୍ମପ୍ରକାଶ କରିଛି । ନିଜର ବକ୍ତବ୍ୟ ପାଇଁ ସେ ଏବେ ନୂଆ ନୂଆ ଚିତ୍ରକଳ୍ପ ପ୍ରତୀକ ଓ ଇଙ୍ଗିତର ସନ୍ଧାନରେ ଅନ୍ୱେଷାରତ । ତେବେ ଜୀବନ ଓ ଯନ୍ତ୍ରଣାପ୍ରତି ସ୍ନେହ ଏବଂ ଆତ୍ମୀୟ କୌତୁକ ଓ ଶ୍ଳେଷ କବିଙ୍କ ବର୍ତ୍ତମାନର କବିତାମାନଙ୍କରେ ପରିଲକ୍ଷିତ ହେଉଛି । ସେଥି ସହିତ ରହିଛି ସ୍ରଷ୍ଟା ହୃଦୟର ଆର୍ଦ୍ର ସହାନୁଭୂତି ଯାହାକୁ କବିଙ୍କ ମାନବିକ ସଂପ୍ରୀତି ବୋଲି ଅଭିହିତ କରିହେବ । ଅଧିକ ଶିଳ୍ପଗତ ସମୃଦ୍ଧି ନେଇ ତାଙ୍କ ଭାବଜଗତକୁ ସେ ପୁନର୍ନିର୍ମାଣ ମଧ୍ୟ କରୁଛନ୍ତି । କାବ୍ୟ ଆଙ୍ଗିକରେ ବିଦେଶୀ ସାହିତ୍ୟକୁ ବା ସଉତରୀୟ ରମାକାନ୍ତ ପ୍ରବର୍ତ୍ତିତ କାବ୍ୟଧାରାକୁ ସ୍ୱାଗତ କରିଥିଲେ ମଧ୍ୟ ଭାବଭୂମିରେ ସେ ଭାରତୀୟ କାବ୍ୟ ପରମ୍ପରାର ଜଣେ ସଫଳ ଓ ବିନୀତ ଭାଷ୍ୟକାର ।

●

# ଅସ୍ତଜହ୍ନରୁ ମହାମେଘ :
# ପ୍ରତିଭା ଶତପଥୀଙ୍କ କବିତା

ଓଡ଼ିଆ କବିତା ପରିମଣ୍ଡଳରେ ପ୍ରତିଭା ଶତପଥୀ ଏକ ଏକାଗ୍ର, ପରିଚ୍ଛନ୍ନ ଓ ବିଶିଷ୍ଟ କାବ୍ୟସ୍ୱର। ବିଗତ ତିନି ଦଶନ୍ଧିଧରି ପୂର୍ଣ୍ଣ ସକ୍ରିୟ ଏହି କାବ୍ୟଶିଳ୍ପୀଙ୍କର ଅଦ୍ୟାବଧି ସାତଗୋଟି ଗ୍ରନ୍ଥ ସଙ୍କଳିତ ହୋଇଛି। ଏ ଆଲୋଚନାରେ ପ୍ରଥମ ସଙ୍କଳନ 'ଅସ୍ତଜହ୍ନର ଏଲିଜି' ଠାରୁ ଷଷ୍ଠ ସଙ୍କଳନ 'ମହାମେଘ' ପର୍ଯ୍ୟନ୍ତ ଏହି କାବ୍ୟସ୍ୱରର ବୈଶିଷ୍ଟ୍ୟ ଓ ଉତ୍ତରଣକୁ ଚିହ୍ନିତ କରାଯିବାର ପ୍ରଚେଷ୍ଟା କରାଯାଇଛି। 'ଅସ୍ତଜହ୍ନର ଏଲିଜି' ସଙ୍କଳନଟି ଏକ ଆବେଗପ୍ରବଣ କାବ୍ୟସ୍ୱରର ପରିଚୟାତ୍ମକ ଅଭିଲେଖ ହେଲେ ବହୁ କାବ୍ୟିକ ବିବର୍ତ୍ତନ ଦେଇ 'ମହାମେଘ' ପର୍ଯ୍ୟାୟଟି ହେବ ଏକ ବିଶିଷ୍ଟ ଓ ବ୍ୟାପ୍ତ ପରିଣତ ଓ ପ୍ରାଜ୍ଞ—ଏକ ଉତ୍ତରିତ ସ୍ୱାକ୍ଷର। ତତ୍ ପରବର୍ତ୍ତୀ କାବ୍ୟଗ୍ରନ୍ଥ 'ଶବରୀ' ଏକ ବିସ୍ତୃତ କାନ୍‌ଭାସ ଉପରେ ଏହି ଉତ୍ତରଣ ପର୍ବର ଏକ ବଳିଷ୍ଠ ଉଦ୍‌ଭାସନ। କବିଙ୍କର ପ୍ରତିଟି ସଙ୍କଳନ ଆବେଦନରେ ସ୍ୱତନ୍ତ୍ରତା ବହନ କରିଥିଲେ ମଧ୍ୟ ଏହା ଏକ କ୍ରମବିଶିଷ୍ଟ ସ୍ୱରର ଏକ ଏକ ପାହାଚ। ପ୍ରାରମ୍ଭିକ ପାହାଚରୁ ଉତ୍ତରଣର ତୋରଣ ଯାଏ ଏହି ବୈଚିତ୍ର୍ୟ ଓ ବିସ୍ତାରକୁ ଦର୍ଶାଇବା ପାଇଁ 'ଅସ୍ତଜହ୍ନର ଏଲିଜି'ରୁ 'ମହାମେଘ' ଯାଏ ପ୍ରତିଟି ପର୍ଯ୍ୟାୟକୁ କାଳାନୁକ୍ରମିକ ଭାବେ ଆଲୋଚନା କରିବା ଅଧିକ ସଙ୍ଗତ ମନେହୁଏ।

ଦୁଇ :

ପ୍ରତିଭାଙ୍କ 'ଅସ୍ତଜହ୍ନର ଏଲିଜି'ର ମୁଖ୍ୟ ଭାବ ରୋମାଣ୍ଟିକ। ବିଷାଦ ଭାବନା ବା କାରୁଣ୍ୟ ସହ ସେଠି ସୌନ୍ଦର୍ଯ୍ୟବୋଧର ସମ୍ମିଶ୍ରଣ ଘଟିଛି। ସ୍ମୃତି, ସ୍ୱପ୍ନ, ଆଶା, କଳ୍ପନା ଇତ୍ୟାଦି ମାନସିକତା ତଥା ନଦୀ-ନାବିକ, ଅରଣ୍ୟ, ଫୁଲ, ପକ୍ଷୀ, ଋତୁ, ଆକାଶର ନୀଳିମା ଇତ୍ୟାଦି ରୂପଚେତନା ଦେଇ କବିଙ୍କ ଅବବୋଧର ପରିମଣ୍ଡଳ ସଂପୁଟିତ। ବ୍ୟର୍ଥତା, ବିରହ, ଦହନ ସହିତ ଅନୁରାଗ ଆକାଂକ୍ଷାର ମିଶାମିଶି ଆବେଗିକ ଆତ୍ମଲୀନତାରେ କବିସତ୍ତା ମଗ୍ନ। ଏ ପ୍ରାରମ୍ଭିକ ପର୍ଯ୍ୟାୟରେ କେତେଗୋଟି ନାରୀ ଚରିତ୍ରର ଅନୁଷଙ୍ଗ ଦେଇ କବି ଠାଏ ଠାଏ ବକ୍ତବ୍ୟ ବାଢ଼ିବାର ପ୍ରୟାସ କରିଛନ୍ତି। 'ଶତାବ୍ଦୀର କନ୍ୟା', 'ଯୁଗନାରୀ' ଇତ୍ୟାଦି କବିତାରେ ଆଧୁନିକ ସମୟର ମାନସିକତା ପୋଷଣ କରୁଥିବା ନାରୀସତ୍ତା ଭାବେ କବି ନିଜକୁ ଜାହିର କଲାବେଳେ 'ଅହଲ୍ୟାର ଆର୍ତ୍ତନାଦ', 'ସୀତାଙ୍କ ର ସପ୍ତପଦୀ' ଭଳି କବିତାରେ ପୁରାଣର ଏହି ଚରିତ୍ରମାନଙ୍କ ସହ କବିସତ୍ତା ଏକାତ୍ମ

ହୋଇଛି । ଏହା ପରମ୍ପରାର ପରିଗ୍ରହଣ ଓ ଆଧୁନିକତାର ଆବାହନକୁ ସୂଚାଇ ଥାଏ । ପୁନଶ୍ଚ 'ହରିଶ୍ଚନ୍ଦ୍ର', 'ଶିଟର୍ଣ୍ଣୀ', 'ଶକୁନି' ଆଦି ପୁରାଣର କେତେକ ଚରିତ୍ରଙ୍କୁ ପ୍ରସ୍ଥେ.ଗ-ମାନ୍ୟତା ଦିଆଯାଇଛି । ଏହି ଉପସ୍ଥାପନରେ ଚରିତ୍ରମାନଙ୍କୁ ପ୍ରତୀକଗତ ମୂଲ୍ୟ ଦିଆଯାଇ-ଥିଲେ ମଧ୍ୟ ବିଶେଷ ବ୍ୟଞ୍ଜନାମୟ ପରିପ୍ରକାଶର ଏହା ତଥାପି ଅପେକ୍ଷା ରଖେ ।

କ୍ଷୁଦ୍ରତର ଓ ଅମହତ୍ ସ୍ଥିତିରୁ ଉପରକୁ ଉଠିବାର ମାନସିକତା ଏଇ ପ୍ରାରମ୍ଭିକ ପର୍ଯ୍ୟାୟର କେତେକ କବିତାରେ ବେଶ୍ ଆନ୍ତରିକ ଭାବେ ପ୍ରତିଫଳିତ ହୋଇଛି । ଦେହ ଓ ସଂସାରର ନିଗଡ଼ ମଧ୍ୟରେ ସ୍ଥିତିକୁ ମହିମାନ୍ୱିତ କରିବା ଆକାଂକ୍ଷାକୁ ଏହା ବହନ କରେ । 'ଖଦ୍ୟୋତ','ଉଲୂକ', 'ଲାଙ୍ଗୁଳାର ସଙ୍ଗୀତ', 'ଅରୂପ', 'ଆହ୍ୱାନ' ଆଦି କବିତା ଏଇ ଧାରାର । ଚେତନାକୁ ମହତ୍ ଓ ଅର୍ଥାନ୍ୱିତ କରିବାର ଅନୁରାଗ ଓ ଦ୍ୟୋତନା ଯାହା ପ୍ରତିଭାଙ୍କ କବିତାର ପରିଣତ କାଳରେ ଏକ ଉଦ୍ଧରିତ ବଳିଷ୍ଠ ସ୍ୱର ପରିଗ୍ରହଣ କରିଛି, ସୂଚିତ କବିତାରେ ସେଇ ସମ୍ଭାବନାର ବୀଜ କିଛି ଭାବରେ ଆତ୍ମଗୋପନ କରିଥିଲି ବୋଲି କୁହାଯାଇପାରେ । ହେଲେ ମଧ୍ୟ ଏହା ଅସ୍ପଷ୍ଟ ଓ ସମ୍ଭାବନାମୟ । ଆନନ୍ଦ ଓ ଆଲୋକର ମୁହୂର୍ତ୍ତ ପାଇଁ କଣ୍ଟା ଓ କାଦୁଅର ଦୁଃସ୍ଥିତି ଭିତରେ କବି ଅପେକ୍ଷା କରନ୍ତି । ପକ୍ଷୀ, ନଦୀ ତାଙ୍କୁ ଡାକ ଦିଅନ୍ତି । ଉପବନ ଓ ପ୍ରକୃତି ଭିତରୁ ସେ ଡାକ ଶୁଣିପାରନ୍ତି । 'କେତକୀ କଳିର କଥା', 'ଫେଲିମ୍‌ର ସ୍ୱପ୍ନ', 'ଚନ୍ଦିଣ.ର ଆହ୍ୱାନ' ଆଦି ବହୁ କବିତା ରୋମାଣ୍ଟିକ ତନ୍ମୟତାର ମନ୍ମୟ ଉଚ୍ଚାରଣ । କବିଙ୍କର ସ୍ୱର/ବକ୍ତବ୍ୟ ତଥାପି ନିର୍ଦ୍ଦିଷ୍ଟ ହେବାକୁ ଅପେକ୍ଷା କରେ ।

'ଅସ୍ତ୍ରଜହ୍ନର ଏଲିଜି' ସଙ୍କଳନରେ କବିଙ୍କ ସୌନ୍ଦର୍ଯ୍ୟତୃଷ୍ଣା ମୁଖ୍ୟତଃ ପ୍ରକୃତି-ମୁଗ୍ଧତା ଓ ରୂପକଳ୍ପ ଚୟନରେ ରୂପାୟିତ ହୋଇଛି । ଏହି ସୌନ୍ଦର୍ଯ୍ୟତୃଷ୍ଣା ପରିଣତ କାଳରେ ଅଧିକ ଆନ୍ତରିକ ଓ ନିବିଡ଼ ହୋଇଛି । 'ସର ଦେଇ' କବିତାଟି ଏ ସଙ୍କଳନର ସାମଗ୍ରିକ ଅବବୋଧକୁ ଧରିରଖିଛି ବୋଲି କହିବାକୁ ହେବ । ଏ ଗ୍ରନ୍ଥଟି ମୁଖ୍ୟତଃ ସ୍ୱତଃସ୍ଫୂର୍ତ୍ତ ଆବେଗର ଅକପଟ ଉଚ୍ଚାରଣ—ଆଙ୍ଗିକ କୁଶଳତା ପାଇଁ କୌଣସି ପରୀକ୍ଷା ପ୍ରୟାସ ପରିଲକ୍ଷିତ ନ ହେଲେ ମଧ୍ୟ ଆଧୁନିକ କବିତା ଧାରାର କଳାତ୍ମକତା ଓ ନୂତନତା ପ୍ରତି କବି ବେଶ୍ ସଚେତନ ରହିଛନ୍ତି । ଦୁଇଟି ପଂକ୍ତି ଉଦ୍ଧାର କରି କବିଙ୍କ ଭାବ ଓ ରୂପମଗ୍ନତାର ପରିଚୟ ଦିଆଯାଇପାରେ ।

> ମୁଁ ଭାବୁଚି କିଛି ଜ୍ୟୋତ୍ସ୍ନା ପିଇଯିବି ଆଞ୍ଜୁଳାରେ ଭରି
> ପିଇଯିବି ଆକାଶର ଏ ଶୂନ୍ୟତା,
> ମୁଁ ଉଡ଼ିବି ମହାଶୂନ୍ୟେ ଜ୍ୟୋସ୍ନାରେ ମୋ ଶରୀର ପଖାଳି ।
> ବହୁଦିନୁ ଯେ ଶରୀର ଆବର୍ଜନା ଭିତରେ ବୁଡ଼ିଚି—
>
> × × ×

ମୁଁ ଉଡ଼ିବି ଗ୍ରହ ପରେ ଗ୍ରହାନ୍ତର ମିଶିଯିବି ଅସୀମ ଶୂନ୍ୟରେ
ସୀମିତ ମୋ ତନୁ ତେଜି ସୀମାହୀନ ମନର ସୋହାଗେ ।
× × ଦେହର ଝଞ୍ଜିରେ ବନ୍ଧା ଆହା ମୁଁ କି ନାରଖାର ହେଉଛି ।
(ଲିଙ୍ଗୁଳାର ସଙ୍ଗୀତ)

ଜହ୍ନ ବି ବିଦ୍ରୋହ ହୁଏ/ସତେବା ସେ ମୁଗ୍ଧା ଏକ
ମଜ୍‌ଦୁର ଝିଅ/ଗତ ମଧ୍ୟାହ୍ନରେ ପିଏ ଏ ପାଣିରେ—/
ନିରେଖି ନିଜର ଗ୍ରୀଷ୍ମ/ଓଦା ବାଲି ରଙ୍ଗର କପାଳୁ ତା'ର
ପୋଛୁଥିଲି ଏପ୍ରିଲ୍‌ର ଝାଳ । (ଅସ୍ତଜହ୍ନର କଫିନ୍)

ପ୍ରତିଭାଙ୍କ ଦ୍ୱିତୀୟ ସଙ୍କଳନ 'ଗ୍ରସ୍ତସମୟ' । ସମୟ ଗ୍ରସ୍ତ ବୋଲି କହିବା ସତ୍ତ୍ୱେ କବି ଆଦୌ 'ସମୁଦ୍ର ସ୍ନାନ' ଓ 'ଅଷ୍ଟପଦୀ'ର ତଥାକଥିତ ଆତ୍ମଜୈବିକ ମାନସିକତା ପ୍ରତି ଖୁବ୍ ବେଶୀ ପ୍ରବଣତା ପ୍ରକାଶ କରି ନାହାଁନ୍ତି । ଜୀବନର ଅସାରତା, ବିଭଙ୍ଗପଣିଆ, ବିଡ଼ମ୍ବନା, ନିତ୍ୟ ପ୍ରାତ୍ୟହିକ ଦୃଃସ୍ଥିତି ଯାତନା କବି ହୃଦୟକୁ ବ୍ୟଥିତ କରିଛି । ଏ ସଙ୍କଳନରେ ସେ ସ୍ୱର ବେଶ୍ ସ୍ପଷ୍ଟ । 'ଅସ୍ତଜହ୍ନର ଏଲିଜି'ର ଆବେଗଗତ ଉଚ୍ଚାରଣ 'ଗ୍ରସ୍ତ ସମୟ'ରେ ମନନଶୀଳ ଅନ୍ୱେଷଣରେ ପରିଣତ ହୋଇଛି । ଦୃଷ୍ଟିଭଙ୍ଗୀ ପ୍ରଶ୍ନମନସ୍କ । ଅନ୍ୟ ଅର୍ଥରେ କହିଲେ ଅନ୍ୱେଷାର ଦୃଷ୍ଟିଭଙ୍ଗୀ । ସ୍ମୃତିର ଜ୍ୱଳନ (ଅନ୍ତର୍ଲିପି), ନିଃସଙ୍ଗତା (ସମୁଦ୍ରକୁ), କାମନାର ନାଗବନ୍ଧ (ଇନ୍ଦ୍ରଧନୁ) ଆଦି କବିସତ୍ତାକୁ କବଳିତ କରିଛି । କବି ତାକୁ ଡେଇଁ ଯିବାକୁ ଚାହିଁଛନ୍ତି । 'ଗ୍ରସ୍ତ ସମୟ'ର ଆଭିମୁଖ୍ୟକୁ ସ୍ଥୂଳତଃ ନିମ୍ନଭାବରେ ବର୍ଗୀକରଣ କରିଯାଇପାରେ—(କ) ପରିମାନ ଓ ଲୋଭ କାମନା ପୀଡ଼ିତ ଜୀବନ-ଜଞ୍ଜାଳ ଅନ୍ତରାଳରେ ମହତ୍ତ୍ୱର କିଛି ସମ୍ଭାବନାର ଅନ୍ୱେଷଣ, (ଖ) ସମାଜନିଷ୍ଠତା ଓ ମାନବିକ ସହୃଦୟତା ପୋଷଣ, (ଗ) ମୃତ୍ୟୁ ଚେତନା, (ଘ) ସୌନ୍ଦର୍ଯ୍ୟତୃଷ୍ଣା । ଏହି ଅନୁଭୂତିକୁ କେନ୍ଦ୍ରକରି ସମୟର ସ୍ପନ୍ଦନ ଓ ଜୀବନର ବହୁଧା ଦିଗକୁ ଚୟନ କରିବାର ପ୍ରୟାସ । ଉଲ୍ଲିଖିତ ଭାବ ସମୂହର କିଞ୍ଚିତ୍ ବିଶ୍ଳେଷଣ କରାଯାଉ ।

କବି ପ୍ରଥମେ ନିଜର ଅସ୍ତିତ୍ୱ/ସତ୍ତା ଯେମିତି ମ୍ରିୟମାଣ, ଅସଫଳ ଓ ଭଙ୍ଗୁର ତାହା ଘୋଷଣା କରନ୍ତି । 'ଏ ଘର କଣ୍ଢେଇଘର/କାଠର କଣ୍ଢେଇ ଗୋଟି ହାତ ଟେକି ନାଚେ ।' (କାଗଜର ଘର) ପୂର୍ଣ୍ଣତା ଅପହଞ୍ଚ । ସୁରୁଟିଏଁ 'ବିଭ୍ରାନ୍ତିର ଗାର' । ମୁଖା ଭିତରେ ବଞ୍ଚିବାକୁ ପଡ଼େ । ଐଶ୍ୱର୍ଯ୍ୟ ମୋହ, ଅନ୍ୟର ପରିହାସ, ଘୃଣା ଅସ୍ୱସ୍ତିକର ମନେହୁଏ । କବିଙ୍କ ଉକ୍ତି—'ମୋର କାହିଁ ସାନ୍ତ୍ୱନା ବା/ଏ ରାଜ୍ୟେ ମୁଁ ନକଲି ସାମ୍ରାଜ୍ଞୀ' (ସାମ୍ରାଜ୍ଞୀ) । ଆଉ କେଉଁ ଦୃଶ୍ୟ, ଶବ୍ଦ ପାଇଁ କବିମାନସ ପ୍ରଶ୍ନମନସ୍କ ଓ ଆକାଂକ୍ଷୀ ହୋଇ-ଉଠେ । ଏହି ଅବବୋଧରୁ ପ୍ରତିଭାଙ୍କର ପ୍ରଶ୍ନମନସ୍କ-ଅନ୍ୱେଷଣର ଦୃଷ୍ଟିଭଙ୍ଗୀ ପ୍ରକଟିତ

ହୁଏ--ଅସୀମ ଓ ଅରୂପର ସନ୍ଧାନ ଆରମ୍ଭ ହୁଏ । ଜାଗତିକ/ପାର୍ଥିବ ଚେତନାରୁ ସେ ଅନ୍ୟ ଆଡ଼କୁ ଦୃଷ୍ଟି ଦିଅନ୍ତି । ପ୍ରକୃତି ଓ ପରିପାର୍ଶ୍ୱରୁ ତାଙ୍କୁ ଖୋଜି ବସନ୍ତି । ଘର୍‌ଟା ତାଙ୍କ ପାଇଁ ମୋଟା ପର୍ଦ୍ଦାପରି ପ୍ରତୀୟମାନ ହୁଏ । ସ୍ୱାମୀ, ସନ୍ତାନ, ପାର୍ଥିବତା ଯେମିତି ତାଙ୍କର ଅଟଳ ପରିଚୟ ନୁହେଁ । ଅଳୀକ ମାୟାର ଖୋଳପାଟିକୁ ଭାଙ୍ଗି ଦେବାର ବ୍ୟାକୁଳତା ଓ ପ୍ରଚେଷ୍ଟା ବଳବତ୍ତର ହୁଏ । ଜୀବନ ଯନ୍ତ୍ରଣାର ସ୍ୱର ବେଶ୍ କରୁଣ ଶୁଭେ । ଅନ୍ୟ ପକ୍ଷରେ ଅରୂପ, ଅସୀମର ସ୍ପର୍ଶ ଓ ଆସ୍ୱାଦନ ପାଇଁ ଉନ୍ମୁଖତା ସୃଷ୍ଟି ହୋଇଯାଏ । 'ସୂଚୀପତ୍ର', 'ଅନାସ୍ୱାଦିତ', 'ଚନ୍ଦ୍ରିକାର ଦିନ', 'ଅସ୍ପଷ୍ଟ ଦିଗନ୍ତ', 'ଅଜ୍ଞାତ ଆଦେଶ' ଆଦି କବିତା ଏଇ ଧାରାର । ଏ ଅନୁଭବ ଓ ଅନ୍ୱେଷାବୋଧର କେତୋଟି ଉଦାହରଣ ନିମ୍ନରେ ଉପସ୍ଥାପନ କରାଯାଇପାରେ ।

(୧) ଲକ୍ଷ୍ୟ ମୋର ଅନାଗତ କେଉଁ ଦିଗନ୍ତରେ ? (ଅସ୍ପଷ୍ଟ ଦିଗନ୍ତ)

(୨) ମଧ୍ୟରାତ୍ରିରେ ଦୂରୁ କା'ର କଣ୍ଠସ୍ୱର ଶୁଣି
ମୁଁ ହୁଏତ ଚାଲିବାଟ କକ୍ଷଚ୍ୟୁତ ଉପଗ୍ରହ ଭଳି । (ଅଜ୍ଞାତ ଆଦେଶ)

(୩) ପୃଥିବୀରେ ବଞ୍ଚିବା ବଡ଼ ଦୁରୁହ କଠିନ
ସବୁଠୁଁ କଠିନ ଆକାଶ ଦେଖିବା × × ×
କ୍ଷୟିଷ୍ଣୁମାନ ପଡ଼ିମାନ ଶରୀରର ପୂଜା କରି ଦିନରାତି ବିତେ ।
ରାତିର ପବନ ଆସେ କି ଅମୃତମୟ ଇଲାକାରୁ
କେଉଁ ଆକାଶରୁ ? ବିଚିତ୍ର ସୁଗନ୍ଧ ନେଇ କେଉଁ ଉପବନରୁ ?
କିନ୍ତୁ ମୋର ଘରକାର ମୋଟା ପର୍ଦ୍ଦା/ମୋତେ କରେ ବିଚ୍ଛିନ୍ନ ତା'ଠାରୁ ।
(ସୂଚୀପତ୍ର)

(୪) କିପରି ସେ ଆସ୍ୱାଦନ ? ଗଗନ ପବନ
ପ୍ରଶ୍ନ କରେ ଭ୍ରମମାନ ବିହଗକୁ··· ।
ବନ ଉପବନ
ଗନ୍ଧ ବିତରଣରତ ଉନ୍ମୁଖ ଫୁଲକୁ
ପୃଥିବୀ ଜିଜ୍ଞାସା କରେ ଉଚ୍ଛ୍ୱସିତ ନଦୀର ଜଳକୁ । (ଅନାସ୍ୱାଦିତ)

ସମାଜନିଷ୍ଠତା/ମାନବିକ ସହୃଦୟତାର ପରିପ୍ରକାଶ ପରିପ୍ରେକ୍ଷୀରେ କବିଙ୍କର 'ସାବିତ୍ରୀ ଉବାଚ', 'ଧର୍ଷଣ', 'କୁଷ୍ଠୀର ମଧୁଶଯ୍ୟା' ଆଦି କବିତାକୁ ଗ୍ରହଣ କରାଯିବ । ଏ ଧାରାର ସୃଷ୍ଟି ସ୍ୱଳ୍ପ । 'ସାବିତ୍ରୀ ଉବାଚ'ରେ ନିମ୍ନମଧ୍ୟବିତ୍ତ ପରିବାର ସାବିତ୍ରୀ ଜୀଇଁବା ଲାଗି ନାରୀତ୍ୱର ଐଶ୍ୱର୍ଯ୍ୟକୁ ବଳିଦିଏ । ଚନ୍ଦ୍ରା ବେହେରାଣୀ, ମାଳତୀ ପ୍ରଭୃତିଙ୍କଠାରୁ ତା'ର ଜ୍ୱଳନ ଓ ଯନ୍ତ୍ରଣା ଭିନ୍ନ । କୁଆଁରୀ କନ୍ୟାର ଏ ଅଭିବ୍ୟକ୍ତି ଭରି ମାର୍ମିକ । ସାବିତ୍ରୀର ଯନ୍ତ୍ରଣାବୋଧ ସମସ୍ୟା ସଙ୍କଟର ପ୍ରଦାହପିଷ୍ଟ । ତା'ର ପ୍ରଶ୍ନ :

ସଙ୍ଗୀତ୍ସ୍ୱର ସଂଜ୍ଞା କ'ଣ ?/ ବଞ୍ଚିବା ଓ ବଂଶୀଭଙ୍ଗା
ଶତାବ୍ଦୀର ମହା ସଙ୍କଟରେ × × ×
ସାବଜୀ ମୋ ଶ୍ରଦ୍ଧାଞ୍ଜଳି
ଘୃଣାର ଶାଣିତ ଛୁରୀ
ଆତତାୟୀ ନୂତନ ବସନ୍ତ । (ସାବଜୀ ଉବାଚ)

'କୁମ୍ଭୀର ମଧୁଶଯ୍ୟା', 'ଧର୍ଷଣ' କବିତା ଦ୍ୱୟରେ ସାଂପ୍ରତିକ ଆସୁରିକତା ଓ ଜୀବନ ବିଡ଼ମ୍ବନାର ସ୍ୱର ସ୍ପଷ୍ଟ । 'ଅକସ୍ମାତ୍ ଦେଖା' କବିତାରେ ପ୍ରଜାପତି ଓ ଶିଶୁର ରୂପ-ରଚନା ଦେଇ କବିଙ୍କର ଆତ୍ମୀୟତାବୋଧ ଏବଂ ସହୃଦୟତା ଏକାନ୍ତ ପ୍ରଣିଧାନଯୋଗ୍ୟ । 'ଅନ୍ତର୍ଗତ ଦୃଶ୍ୟ', 'ଝଡ଼ : ଅନ୍ୟମନସ୍କତା' ଭଳି କବିତାରେ ହୃଦୟର ଆତ୍ମୀୟତା ଜୀବନନିଷ୍ଠ । ଅନ୍ୟ ଚରିତ ସହ ଆତ୍ମୀକରଣର ସ୍ୱର ନିମ୍ନ ପଂକ୍ତିରୁ ପାଉ—

ତୁ ଆଉ ମୁଁ ନୁହଁ କେହି ଭିନ୍ନ ଲୋକ
ତୋ' ବୋଉ ଆଉ ମୋ ବୋଉ ଠିକ୍ ଏକାପରି । (ଝଡ଼ : ଅନ୍ୟମନସ୍କତା)

ମୃତ୍ୟୁ ଚେତନା ନେଇ ପ୍ରାରମ୍ଭିକ ପର୍ଯ୍ୟାୟରେ ଏକ ଅନ୍ୱେଷାଧର୍ମୀ ଦୃଷ୍ଟିଭଙ୍ଗୀ । 'ଦର୍ପିତ ଆଗମନ' କବିତାଟିରେ ପାରମ୍ପରିକ ଚିତ୍ରଚେତନା ଦେଇ ମୃତ୍ୟୁର ଭାବନା ବେଶ୍ କଳାତ୍ମକ ଭାବେ ପ୍ରକାଶ ପାଇଛି । 'ନେପଥ୍ୟ ଗୃହିଣୀ' କବିତାରେ ମୃତ୍ୟୁର ରୂପ ଚେତନାଟି ପବନର ଚିତ୍ରଚେତନାରେ ବର୍ଣ୍ଣିତ : 'ପବନ ଉଦ୍ଧତ ଓ ଶକ୍ତିଶାଳୀ' । 'ଅନିବାର୍ଯ୍ୟ ଅକଳ୍ପିତ ଦିନ'ରେ ମୃତ୍ୟୁର କଳ୍ପନା ମଧ୍ୟ ବେଶ୍ କଳାତ୍ମକ ।

'ଶ୍ରାନ୍ତ ସମୟ' ପର୍ଯ୍ୟାୟରେ କବିଙ୍କ ସୌନ୍ଦର୍ଯ୍ୟ-ଚେତନା କ୍ରମଶଃ ବିକଶିତ ହୋଇଛି । ସୌନ୍ଦର୍ଯ୍ୟ ସମ୍ମୋହନ ସହିତ ବାସ୍ତବ ଦୃଷ୍ଟିଭଙ୍ଗୀର ସମ୍ମିଶ୍ରଣ ଘଟିଛି । ସ୍ୱର କିଛିଟା ଗମ୍ଭୀର ଓ ପ୍ରାଜ୍ଞ ହୋଇଛି । ଚିତ୍ରଚେତନା ସହିତ ଚିତ୍ରଧର୍ମୀତା ଏହାକୁ ଅଧିକ କଳାତ୍ମକ କରିଛି । ଦୁଇଟି ଉଦାହରଣ ଦିଆଯାଉ —

(୧) ସାବ୍ଜା ଧାନକ୍ଷେତ ପରେ ଜଳୁଥିବା ହଳଦିଆ ଖରା
ନିଃସଙ୍ଗ ଆକାଶ ବୁକେ ତନ୍ଦ୍ରାତୁର ଜହ୍ନର ଡାକରା
ଉଭୟ କ୍ଷତାକ୍ତ କରେ
ଛାଳିଦିଏ ମନ୍ଦାରର ରକ୍ତ
ଲେପି ଦିଏ ଅଯୁତ ସୂର୍ଯ୍ୟାସ୍ତ । (ନିଜସ୍ୱ ଯନ୍ତ୍ରଣା)

(୨) ତଥାପି ବସନ୍ତ ଆସେ ଏମିତି ସବୁଠାରେ
ସବୁଥର ଅନ୍ଧକାରକ ଭଳି
ଚକିତ ରୋମାଞ୍ଚ ଭରି ମଣିଷ ଓ ପଶୁପକ୍ଷୀ ଦେହେ
କାଠ ପାଷାଣରେ ଖୁନ୍ଦି ଜୀବନର ଅଗ୍ନିକଣ ଜୁଆଁ
ସ୍ପର୍ଶରେ ତା' ବଶୀଭୂତ ସମଗ୍ର ଦୁନିଆ । (ବସନ୍ତ)

ଟୀକା :

'ସାହାଡ଼ା ସୁନ୍ଦରୀ' କବିଙ୍କ କାବ୍ୟଚେତନାର ବିକାଶ ବିବର୍ତ୍ତନ କ୍ଷେତ୍ରରେ ପ୍ରକୃତ ମୁଖଶାଳା ସ୍ୱରୂପ । ପୂର୍ବ ସଙ୍କଳନ ଦ୍ୱୟଙ୍କୁ ଚେତନା ଭୂମିର ପ୍ରସ୍ତୁତିପର୍ବ ଭାବେ ଗ୍ରହଣ କରାଯାଇପାରେ ଯଦ୍ୟପି 'ଗ୍ରସ୍ତ ସମୟ' ପର୍ଯ୍ୟାୟରେ କବିଙ୍କ ଆତ୍ମିକ ଜଗତର ସ୍ୱରୂପ ବେଶ୍ ସ୍ପଷ୍ଟ । 'ସାହାଡ଼ା ସୁନ୍ଦରୀ'ରେ ପ୍ରତିଭାଙ୍କ ସ୍ୱର ଅଧିକ ସ୍ପନ୍ଦିତ, ଉନ୍ମୁଖ, ଆନ୍ତରିକ । 'ଗ୍ରସ୍ତ ସମୟ' କାଳରୁ ତାଙ୍କର ଭାବବୃତ୍ତ କ୍ରମଶଃ ପରିଚ୍ଛନ୍ନ ହୋଇ ଉଠିଛି । ଆବେଗପ୍ରବଣତା ଅପେକ୍ଷା ପ୍ରଜ୍ଞା ଓ ବୌଦ୍ଧିକତାର ପରିପ୍ରକାଶ ତାଙ୍କ କବିତାରେ ପରିଲକ୍ଷିତ । 'ଗ୍ରସ୍ତ ସମୟ'ରେ ବିକଶିତ ଭାବଧାରା ଏ ପର୍ଯ୍ୟାୟରେ ଅଧିକ ସ୍ପଷ୍ଟ ଓ ପ୍ରତ୍ୟକ୍ଷ ।

ବାହ୍ୟସତ୍ତା ଓ ଅନ୍ତଃସତ୍ତାର ଦ୍ୱନ୍ଦ୍ୱ 'ସାହାଡ଼ାସୁନ୍ଦରୀ'ର ଅନ୍ୟତମ ପ୍ରତିପାଦ୍ୟ । ସବୁ ଅସାମର୍ଥ୍ୟ ଓ କୁତ୍ସିତତା ଭିତରେ ସୌନ୍ଦର୍ଯ୍ୟର, ଦିବ୍ୟ ଚେତନାର ପ୍ରତ୍ୟାଶା ଏହାର ପ୍ରମୁଖ ସ୍ୱର । ଉପରକୁ ଉଠିବାର ସମ୍ଭାବନା ରହିଛି । ତାହା ପରାହତ । ମାଟିର ଆସକ୍ତି ଓ ବନ୍ଧନ ଭିତରେ ଆକାଶମନସ୍କ ହେବା, ମୁକ୍ତି ଆଡ଼କୁ, ପରିବର୍ତ୍ତନର ଉଜ୍ଜ୍ୱଳ ଦିଗଆଡ଼କୁ ଚାଲିଯିବାର ଅଭିଳାଷ କବି ପୋଷଣ କରିଛନ୍ତି । କୁତ୍ସିତ ଘୃଣ୍ୟ ରୂପତଳେ 'ଫୁଲ ବିଳାସୀ ପ୍ରଜାପତି'ର ରୂପଚେତନା ତାଙ୍କର କାମ୍ୟ । ପ୍ରଶ୍ନ ପଚାରିବାର ଭଙ୍ଗୀ ବା ଅନ୍ୱେଷାବୋଧ ସହିତ ଆକୁତି ଓ ସମର୍ପଣର ଭାବ ଏ ପର୍ଯ୍ୟାୟରେ ଅଙ୍କୁରିତ ହୋଇଛି । ଈଶ୍ୱର ଓ ପରମସତ୍ତା ଏହି ଅନ୍ୱେଷାବୋଧ ସାମ୍ନାରେ ଠିଆ ହୋଇଛନ୍ତି । ମାଟିର ମୋହ ଓ ଆକାଶମସ୍କ ହେବା ମଝିରେ କବିହୃଦୟ ଆତଯାତ । ଏକ ଦିଗରେ ମାଟିର କୁତ୍ସିତତା, ବିଡ଼ମ୍ବନାକୁ ଆପଣାର କରିବା, ସବୁ କିଛିକୁ ଆତ୍ମୀୟ ମନାଇବା, ତା' ଅନ୍ତରାଳରେ ସୌନ୍ଦର୍ଯ୍ୟ ସନ୍ଧାନ; ଅନ୍ୟ ଦିଗରେ ଚେତନାକୁ, ସ୍ଥିତିକୁ ମହନୀୟ କରିବା, ପରମ ସତ୍ତାକୁ ଛୁଇଁବାର ଅଭିଳାଷ ପୋଷଣ କରିବା, ସେ ପରମସତ୍ତା ଆଶା, ଭରସା ଓ ସ୍ଥିତିର ଆଧାର ହୁଅନ୍ତୁ ବୋଲି କାମନା କରିବା ।

କବିଙ୍କ ଦୃଷ୍ଟିରେ ଏ ପୃଥିବୀ ନିଷ୍ଠୁର ନିଦାରୁଣ । ଅନ୍ଧାରର କୀଟମାନେ ନିଷ୍ପାପ ଫୁଲକୁ ଦଂଶନ କରନ୍ତି । 'ଅସ୍ଥି ମେଦ ରକ୍ତର ଏ ଦୁର୍ଲଂଘ୍ୟ ନଅର' ଚେତନାକୁ

ଘେଶରହେ । ଢଥଙ୍କୁ ଅପେକ୍ଷା କଶ ମଣିଷ ଛଟପଟ ହୁଏ । ଏହା ସତ୍ୟ ହେଲେ ବି ତାକୁ ହବୀାନ୍ତଃକରଣରେ କବି ମାନ ନଥନ୍ତ ନାହିଁ । କ୍ଷତ ସତ୍ତ୍ୱେ, ଭୁଲ ସତ୍ତ୍ୱେ ସେ ସୂର୍ଯ୍ୟନ୍ତ ଫୁଲର ସୁଗନ୍ଧକୁ ଟାଣିନେବାକୁ ହେବ । ସ୍ୱାମୀ ସନ୍ତାନର ବୃତ୍ତ ବା କାଗଜର ବଳୟ ଭିତରେ କବିସତ୍ତା (ଅନ୍ୟଭାବରେ ନାରୀସତ୍ତା)ଟି ବିସ୍ଥାପିତ ହେବାକୁ ଚାହେଁ । ଅଲୋଡ଼ା ଅପ୍ରାପ୍ତିର ଚଉହଦ୍ଦ ଭିତରେ ସମ୍ଭାବନାର ଅଙ୍କୁରକୁ ପିଏ ରୁପାକର ଫୁଟାଇବାକୁ ଲୋଡ଼େ । ଖରାବେଳ ଯାହାର ନିଷ୍ଠୁର ବାସ୍ତବତା ଓ କାଗଜର ବଳୟର ଏକ ଦୃଶ୍ୟ-ରୂପ ତା' ଭିତରେ କବି ଅବଧୂତର ଡାକ ଶୁଣିପାରନ୍ତି ।

କବି ଲୋଡୁଥିବା ପରମ ସତ୍ତାର ପରିଚୟ କେତେକ କବିତାରେ ବାଢ଼ିଛନ୍ତି । ତାହା ରହସ୍ୟମୟ । କେତେବେଳେ ସେ ଈଶ୍ୱର, କେତେବେଳେ ପ୍ରକୃତି । ପୁଣି ପବନ, ନଦୀ, ସମୁଦ୍ରଠୁଁ ଆକାଶଯାଏଁ ତାଙ୍କର ବ୍ୟାପ୍ତି । କେବେ ନୀଳ ଚଢ଼େଇ ତ କେବେ ଆକାଶ, ଚନ୍ଦ୍ର, ସୂର୍ଯ୍ୟଙ୍କ ସତ୍ତା ଭିତରେ କବି ତାଙ୍କୁ ଏକାନ୍ତ ଭାବେ ଲୋଡ଼ିବସନ୍ତି । 'ଅମଳନ ଆତ୍ମାର ଗୁରୁଫୁଲ'ର ବିକାଶ ଉନ୍ମେଷ କବି କାମନା କରନ୍ତି । ତାଙ୍କର ବିଶ୍ୱାସ ରଥଚକ ଅଟକିବ, ଅବହେଳିତ ସୁକ୍ଷ୍ମଜ୍ଞାନୀ ହଂସଟି ଡେଣା ମେଲିବ । ଏ ହଂସଟି କବିସତ୍ତାର ପ୍ରତୀକ ରୂପ । ଏତଦ୍ ଭିନ୍ନ 'ସାହାଡ଼ା ସୁନ୍ଦରୀ'ର କେତେକ ବିଶେଷତ୍ୱ ମଧ୍ୟ ଲକ୍ଷଣୀୟ । ପ୍ରକୃତି କବିଙ୍କ ପାଇଁ ଏକ ଅମୃତମୟ ସତ୍ତା ଭାବେ ରୂପାୟିତ ହୋଇଛି । ସେଠି ମରଣ ନାହିଁ, ଦୁଃଖ ନାହିଁ । କବିଙ୍କ ପାଇଁ ଏ ପୃଥିବୀ ହେଉଛି ମୋକ୍ଷଲୋକ ଯଦିଓ ଏହା ଅନେକ ଅଘଟଣ ଓ ବିରୋଧାଭାସରେ ପରିପୂର୍ଣ୍ଣ । କୁବୁଜା, ଦ୍ରୌପଦୀ ଓ ଅଜାମିଳ ଆଦି ପୌରାଣିକ ଚରିତ୍ରମାନଙ୍କ ଆକୁତି ଓ ଅଭିଳାଷ ଭିତରେ କବିସତ୍ତାର ଯନ୍ତ୍ରଣା, ସମର୍ପଣ ଓ ଅଭୀପ୍ସାର ସ୍ୱର ଶୁଭେ । ପୌରାଣିକ ଚରିତ୍ରମାନଙ୍କ ସହ ଏହା କବିସତ୍ତାର ଏକ ଆତ୍ମିକୀକରଣ । ଉପର୍ଯ୍ୟୁକ୍ତ ଭାବ ନାର୍ଯ୍ୟାସକୁ 'ସାହାଡ଼ା ସୁନ୍ଦରୀ', 'ମୀନ ଉଦ୍ଧାରଣ', 'ଅଭିଜ୍ଞର ହସ', 'ସୃଷ୍ଟିର ମୂଳଦୀକଟି', 'ଆତ୍ମଜ୍ଞାନ', 'ସୁକ୍ଷ୍ମଜ୍ଞାନୀ ହଂସଟି ମୋର', 'ମୋକ୍ଷଲୋକ' ଆଦି କବିତାରେ ଠାବ କରାଯାଇପାରେ । କେତୋଟି ପଂକ୍ତି ଉଦ୍ଧାର କରାଯାଉ—

(୧) ମୁଁ ଏମିତି ଦ୍ୱିଖଣ୍ଡିତ/ଧରଣୀର ଧୂଳିରେ ଲୋଟୁଛି
ଅସ୍ଥିର ବ୍ୟାକୁଳ ହୋଇ ଉର୍ଦ୍ଧ୍ୱକୁ ଚାହୁଁଛି । (ଦୁଇଟି ମୁହୂର୍ତ୍ତ)

(୨) ଅରଣ୍ୟର ଗଛ/ଅବାଟର ଫଳ ତୋଟେ ତାକିବ
ଅଚିହ୍ନିତ କହିବ ଆରେ ଆ'/ମୋ ପାଖରେ ଦୁଃଖ ନାହିଁ
ମରଣ ନାହିଁ/ମୁଁ ଅମୃତ × × ×
ନ ହେଲେ ଏତେ ସୁନ୍ଦର ସକାଳ ଓ ଖରାବେଳ
ସେଠି କ'ଣ ଶୁଣାଯାଏ ଡାକ ଅବଧୂତର ! (ଆତ୍ମଜ୍ଞାନ)

(୩) ପଙ୍କରୁ ଉଠିବା କଷ୍ଟକର
ହେଲେ ଅନବଚନୀୟ ସୁନ୍ଦର ଆକାଶ
ତାକୁ ନ ଡ଼ାକ ରହିପାରିବ ନାହିଁ । (ଅନ୍ତରଙ୍ଗ ମୂର୍ତ୍ତି ତୋ'ର)

(୪) ଭୁଲ୍ ମାନ ନଆଯାଉ; କ୍ଷତ
ବେଳେବେଳେ ପୋଡ଼ି ଉଠୁଥାଉ
ତଥାପି ଫୁଲର/ସୁଗନ୍ଧକୁ ଝାଣି ନଆଯାଉ । (ଅଭିଜ୍ଞାର ହାଦ)

(୫) ହେ ପରମ କାରୁଣିକ/ହେ ପରମ ସୃଷ୍ଟିର ଆଧାର
କଣ୍ଟିତ ସନ୍ଧିଯୋଗର ହାତ/ମାନ ଥରଟେ ବଢ଼ାଅ । (ପୌରୁଷର ଉକ୍ତି)

କବିଙ୍କ ସୌନ୍ଦର୍ଯ୍ୟଅନୁରାଗ ଓ ସମାଜନିଷ୍ଠତା ଏ ପର୍ଯ୍ୟାୟରେ ଆନ୍ତରିକ ବିକଶିତ ହୋଇଛି । ନିଜ ଶିଶୁ ଭିତରେ ଅନ୍ୟ ଶିଶୁକୁ ଦେଖିବା, ଈର୍ଷାଳୁ ପଡ଼ୋଶୀମାନଙ୍କ ଅନ୍ତରର କ୍ଷମାକରୁଣା ଦେଇ ଆତ୍ମୀୟ ମନେକରିବା, ଭିକାରୁଣୀର ପାଦଚିହ୍ନକୁ ନିଜ ଭିତରେ କ୍ଷମା ମାଗିବା ଅବକାଶରେ ମାନବିକ ସହୃଦୟତାର ସ୍ଫୁରଣ ଘଟିଛି । ପୃଥିବୀ ବା ମାଟିର ଯାବତୀୟ କୁତ୍ସିତତା. ବିରୂପତା ଭିତରେ ତଥାପି ସୌନ୍ଦର୍ଯ୍ୟ ଲୁଚିରହିଛି ବୋଲି କବି ବିଶ୍ୱାସ ପୋଷଣ କରନ୍ତି । 'ସେ ଦୁଇଟି ଆଖି' 'ସକାଳର ଫୁଲ' 'ଉତ୍ତର ଦକ୍ଷିଣ' ଆଦି କବିତା କାରୁଣ୍ୟ, ସ୍ନେହ, ସମବେଦନାର ପରିପ୍ରକାଶରେ ଉର୍ଜସ୍ୱଳ । ମୃତ୍ୟୁଚେତନତା ନେଇ 'ରେଲଯାତ୍ରା' କବିତାଟି ବେଶ୍ ଜୀବନ ସମ୍ବେଦୀ । କବିଙ୍କ ସୌନ୍ଦର୍ଯ୍ୟ ଅନୁରାଗ ନେଇ ଏ ପର୍ଯ୍ୟାୟରୁ ଉଦ୍ଧୃତିଟିଏ ଦେଖନ୍ତୁ :

କୋମଳ ସରଳ ଗ୍ରୀବା ତୋଳି
ଦଳେ କଣେଇଙ୍କ ପରି ଗୃହିଁଥାନ୍ତି
ଦେଖୀ ନଈ ପଠାସାରା ଫୁଲ ଭର୍ତ୍ତି
ସୋରିଷ କିଆରୀ । (ମାମୁଁ ଘର)

ଏହି 'ସାହାଡ଼ା ସୁନ୍ଦରୀ' ପର୍ଯ୍ୟାୟରେ ସ୍ମୃତିଧର୍ମୀ ଉପସ୍ଥାପନ ତଥା ଅନ୍ତରଙ୍ଗ କଥୋପକଥନ ଜରିଆରେ କବିପ୍ରବୃତ୍ତି ନିଜକୁ ଅଧିକ ଉନ୍ମୁକ୍ତ ରଖିଛି । କଥୋପକଥନଟି କେବେ ନିଜସହ ସ୍ୱଗତୋକ୍ତିରେ ପୁଣି କେବେ ପାର୍ଥିବ ସଂପର୍କ ଓ ପରମ ସମ୍ପର୍କ ସହ ସମ୍ବୋଧନାତ୍ମକ ଭଙ୍ଗୀରେ ରୂପାୟିତ । ଏହି ସ୍ୱଗତୋକ୍ତି ଓ ସଂବୋଧନ ମୁଖ୍ୟତଃ 'ତୁ' କେନ୍ଦ୍ରିତ । ସୀମିତ ପରିସରରୁ ମୁକୁଳି ତାକୁ ଅତିକ୍ରମ କରିଯିବା, ସାହାଡ଼ାସୁନ୍ଦରୀର କମନୀୟ ରୂପଚେତନା ସହ ଆତ୍ମୀୟ ହେବା, ସ୍ନେହ ସଂବେଦନା ଓ କରୁଣାର ଭାବ ନେଇ ସବୁ ଛୁଇଁଯିବା, ସବୁ କୁତ୍ସିତତା ଓ ବିରୋଧାଭାସ ମଧ୍ୟରେ ପୃଥିବୀକୁ ତଥାପି ସୁନ୍ଦରତମ ବୋଲି

ଗ୍ରହଣ କରନେବା ଆଦି ମାନସିକତା 'ସାହାଡ଼ା ସୁନ୍ଦରୀ' ପର୍ଯ୍ୟାୟର ଉଲ୍ଲେଖଯୋଗ୍ୟ ପରିଚୟ ବହନ କରେ । କାବ୍ୟ ଚେତନାର ଏକ ସୁଷ୍ଠୁ ବିକାଶ ଓ ବିବର୍ତ୍ତନ ଏ ପର୍ଯ୍ୟାୟରେ ପ୍ରତିଭାଙ୍କ ସ୍ୱରର ମୌଳିକତା, ନିର୍ଦ୍ଦିଷ୍ଟତା ଓ ଆନ୍ତରିକତାକୁ ଚିହ୍ନିତ କରେ ।

ପାଞ୍ଚ :

ପ୍ରତିଭାଙ୍କ କାବ୍ୟିକ ବିବର୍ତ୍ତନ ପର୍ଯ୍ୟାୟରେ 'ନିୟତ ବସୁଧା' ଆଉ ଏକ ସୋପାନ । ପ୍ରତିଟି ସଙ୍କଳନର ସାମଗ୍ରିକତା ପରିପ୍ରେକ୍ଷୀରେ ପୂର୍ବ ସଙ୍କଳନଟି ଯେପରି ପୃଷ୍ଠଭୂମି ଓ ସେତୁ ସଦୃଶ । ଅତଏବ 'ସାହାଡ଼ା ସୁନ୍ଦରୀ' ସହିତ ଏହାର ଅବିଚ୍ଛିନ୍ନ ଆତ୍ମିକ ଯୋଗାଯୋଗ ରହିଛି । 'ନିୟତ ବସୁଧା' ଶୀର୍ଷକ କବିତା ଓ 'କବି ହେବାମାନେ କ'ଣ ?' କବିତାଦ୍ୱୟ ଏ ସଙ୍କଳନର ଦ୍ୱାରବନ୍ଧ । ଶିଶୁ ଓ କିଶୋରୀସତ୍ତା ଜରିଆରେ କବିଙ୍କର ସୃଜନ ଅନୁଭବ ଓ ଆଭିମୁଖ୍ୟଗତ ଆତ୍ମକଥନ ସ୍ପଷ୍ଟ ସ୍ପର୍ଶ ଦେଇ ସଂଯୋଜିତ ହୋଇଛି । ଯେଉଁ ମହତ୍ତର ସତ୍ତା ସହିତ ଯୋଡ଼ି ହେବାପାଇଁ କବି-ମାନସ ସତତ ଉତ୍କୀର୍ଣ୍ଣ—'ନିୟତ ବସୁଧା' ପର୍ଯ୍ୟାୟରେ 'ତାଙ୍କ' ସହିତ ଏକ ଅନ୍ତରଙ୍ଗ ଲୀଳାଖେଳା ପ୍ରକଟିତ ହୋଇଛି । ଏହାକୁ ଅଭିସାର, ସମ୍ମୋହନ ବା ତଲ୍ଲୀନତା ବୋଲି ଆଖ୍ୟାୟିତ କରିଯାଇପାରେ । ମାଟିର ସରହଦ ଓ ଆକାଶକୁ ସ୍ପର୍ଶିବାର ବ୍ୟାକୁଳତା ଭିତରେ କବିର ସେତୁ ଗଢ଼ିବା ପ୍ରୟାସ କ୍ରମଶଃ ବିଳୀନ ହୋଇଛି । ଏ ଅଭିସାର, ସମ୍ମୋହନ ବା ସେତୁ ଯୋଡ଼ିବା କେତେବେଳେ ଅସ୍ପଷ୍ଟ, ସମ୍ଭାବନାମନସ୍କ ତ ଆଉ କେଉଁ ସମୟରେ ତାହା ସମାହିତ, ପରିପୂର୍ଣ୍ଣତା ଯୁକ୍ତ । ଯେଉଁ ଦ୍ୱିଖଣ୍ଡିତ ଓ ଦ୍ୱିଧାଗ୍ରସ୍ତ ସତ୍ତା ମାଟି ଓ ଆକାଶର ପ୍ରତ୍ୟାଶା ରଖେ, ତାହା 'ନିୟତ ବସୁଧା' ପର୍ଯ୍ୟାୟରେ ଏଇମିତି :

ନା ଗୋଠକୁ ଛାଡ଼ି ପାରେ ନା ବଇଁଶୀକୁ ?
× × × ବଇଁଶୀ ଧରିଲେ ଆକାଶ ଦ'ଭାଗ ହୁଏ
ସ୍ୱର୍ଗ ଦିଶିଯାଏ
କେଉଁ ଏକ ସନ୍ନ୍ୟାସୀର ଉଦାର, ନିବିଷ୍ଟ ଆଖି
ଘୃଣି ରହେ
ନା ଗୋଠ, ନା ଘରଦ୍ୱାର
ଆଉ କ'ଣ କିଛି ମନେ ରହେ ? × × ×
ଶୂନ୍ୟ ସଙ୍ଗେ କଠିନକୁ ଯୋଗ କରୁଥାଏ
ମୁଁ ବଇଁଶୀଆଳି ।

(ଗୋଠ ଜଗୁଆଳି)

ଗୋଠ ସତ୍ୟ, ବଇଁଶୀ ସତ୍ୟ । ସୀମା ସତ୍ୟ—ଅସୀମ ସତ୍ୟ । ଆଶ୍ଚର୍ଯ୍ୟ ଅଭୀପ୍ସାରେ ଥରଥର କବିପ୍ରାଣର ଶ୍ୟାମଳ କିଶୋର । ଏକଦା ବୈଷ୍ଣବ ଅନୁରାଗ ନେଇ କବି ଲେଖିଥିଲେ—'ଓ କିଏ ବି ଆଲୋ ଦାସୀ ଡାକିଲେ କିଶୋରୀ ।' ନାସ୍ତି କହି ଏଠି କହନ୍ତି 'ମୋ ପ୍ରାଣର ଶ୍ୟାମଳ କିଶୋର ।' କବିସତ୍ତା 'ନିସ୍ତବ୍ଧ ବସୁଧା' ପର୍ଯ୍ୟାୟରେ କେତେକ ନୂଆ ରୂପ/ଛନ୍ଦ ଚେତନା, ପ୍ରତୀକ ଦେଇ ନିଜର ଖଣ୍ଡତା, ଅପାରଗତା, ଯନ୍ତ୍ରଣା ସଙ୍କୋପର ସ୍ଥିତିଗତ ସ୍ୱରୂପକୁ ଚିହ୍ନିତ କରିଛି । କବି ସତ୍ତାଟି 'ଗୋଲାପାଣି ଘାଣ୍ଟୁଥିବା କଙ୍କଡ଼ାର ବ୍ୟର୍ଥ ବ୍ୟସ୍ତତା'ରୁ ସହଜରେ ମୁକୁଳି ପାରେନା । କଙ୍କଡ଼ାଟି ପ୍ରବୃତ୍ତି ପୀଡ଼ିତ ପାର୍ଥିବ ସତ୍ତାର ପ୍ରତୀକ ରୂପ । ଯେଉଁ ଆକୁତି ତାଙ୍କୁ ଜାଗତିକ ନଦରୁ ଉଠାଇ ତାକେ ସେ ଏକ ମୋଟା 'ପର୍ଦ୍ଦାଟିଏ' ପାଲଟିଯାଏ । 'କ୍ଷୟଶୀଳ, ପତମାନ, ସୁଖାନ୍ୱେଷୀ ଶରୀର', 'ଖଣ୍ଡିତ ଚେତନା', 'ପଥର ତଳ ମଝି ମାଣିଖୁଣ୍ଟ' ପରି ସହଜ ଧର୍ମରେ କ୍ଷୟ ପାଇ ଯାଉଥିବା 'ମୁଁ' ଇତ୍ୟାଦି ପରିଚୟ ଓ ସ୍ୱରକୁ ପ୍ରକାଶ କରୁଥିବା କବିସତ୍ତା ମହତ୍ତର ହେବା ପାଇଁ ଆଶା, ବିଶ୍ୱାସ, ଆଶ୍ୱାସନାରୁ ଆସ୍ଥା ତୁଟାଏ ନାହିଁ । ପରମସତ୍ତାଙ୍କ ରୂପକୁ 'ନିସ୍ତବ୍ଧ ବସୁଧା' ପର୍ଯ୍ୟାୟରେ କେତେକ ଦୃଶ୍ୟମାନ ଓ ଅମୂର୍ତ୍ତ ରୂପରେ କବି ବର୍ଣ୍ଣନା କରିଛନ୍ତି । ପରମ ସତ୍ତାଟି କବିଙ୍କ ପାଇଁ କେବେ ଐନ୍ଦ୍ରଜାଲିକ, କେବେ ମେଘ ତ କେବେ ଅପୂର୍ବ ନେଳିଆ-ପକ୍ଷୀ କିମ୍ବା ଅକପଟ ଶବ୍ଦରୂପର ଭାଷ୍ୟକାର । ଜହ୍ନ ମଧ୍ୟ ସେହି ସତ୍ତାର ଛଦ୍ମରୂପ । ଅନାବନା ବୁଦା ହସ୍ତିତୃପ ଅଧୁଚିତ ଅରମା ପଡ଼ିଆପରି ଏକୁଟିଆ ଅଲୋଡ଼ା କବିସତ୍ତା । ଜ୍ୟୋତ୍ସ୍ନାର ଫୁଆରା ତା'ର ବିଭଙ୍ଗ ସ୍ଥିତିକୁ ଉଜ୍ଜ୍ୱଳ କରେ, ଅସ୍ତିତ୍ୱକୁ ନୀଳମାମୟ କରେ । ପରମାସତ୍ତା ଜ୍ୟୋତ୍ସ୍ନା ଓ ନୀଳିମାର ରୂପଚେତନାରେ ଭାସ୍ୱର । ଆମ ଆଧୁନିକ କାବ୍ୟ ପରମ୍ପରାରେ ନୀଳରଙ୍ଗର ଏକ ବ୍ୟାପକ ପ୍ରୟୋଗ ରହିଛି । ପରମସତ୍ତାଙ୍କର ରଙ୍ଗ କ'ଣ ନୀଳ ? କବିଙ୍କର ଉଦ୍ଧୃତିଟିଏ ଦିଆଯାଉ—

ଜହ୍ନ, ତୁ ବୋଧେ ସେଇ ଅପୂର୍ବ ନେଳିଆ ପକ୍ଷୀଟିର ହୃଦୟରେ
ଆଜି ମୋ ହାରି ଅସ୍ତିତ୍ୱରେ ବି ସେଇ ଅପୂର୍ବ ନୀଳ ।
ଜାଣୁ, ଏମିତି ଗୋଟିଏ ଯୋଗାଯୋଗକୁ
ମୁଁ ଖୋଜୁଥିଲି, ଚାହିଁ ରହିଥିଲି ଏତେ କାଳ !

ପୂର୍ବ ସଙ୍କଳନର ନୀଳପକ୍ଷୀ ରୂପଚେତନାଟି ଏ ପର୍ଯ୍ୟାୟରେ ଅଧିକ ସମୃଦ୍ଧ । ପରମସତ୍ତାଙ୍କସହ ଆତ୍ମୀୟ କଥୋପକଥନ ବଡ଼ ନିବିଡ଼ । 'ତୁ' ମଧ୍ୟ ପ୍ରକାଶଭଙ୍ଗୀ ଏହାକୁ ଅଧିକ ଅନ୍ତରଙ୍ଗତା ପ୍ରଦାନ କରିଛି । ଉଦ୍ଧୃତିଏ :

ଜାଲିକ, ଶେଷ ଘଣ୍ଟା ବାଜିବା ଆଗରୁ/କେତେ ଖେଳ ଦେଖେଇବୁ
କେତେ ମତେ ଭାଙ୍ଗିବୁ ଗଢ଼ିବୁ,

ବୃଦ୍ଧି ପାଇବୁ ନାହିଁ ମୋ/ତୋ' ମାୟା ମମତାର ମୂଳଦୁଆ ପରେ
ସଂସାରଚକା ଘରଟେ ତୋଳାନେଇ ହାରିଛ ମୁଁ
ସ୍ନେହ ଶ୍ରଦ୍ଧା, ଆଶା ଭରସାର । (ଐନ୍ଦ୍ରଜାଳିକ)

କବି ତାଙ୍କର ଇନ୍ଦ୍ରଜାଳକୁ ଅନ୍ୟ ଅର୍ଥରେ ଜାଗତିକ ଜଞ୍ଜାଳ ଓ ମୋହକୁ ବୁଝନ୍ତି । ଲୁହରେ ସମୁଦ୍ରର ସ୍ୱାଦ ବାରନ୍ତି । ପରମସତ୍ତାର ଯେଉଁ ଡାକ କବିଙ୍କ ଲାଗି ଜରୁରୀ ତା'ର ସଙ୍କେତ ଓ ଠିକଣା ସନ୍ଧାନ କରି ବସନ୍ତି । ଅନୁଭବରେ ତଲ୍ଲୀନତା ବା ସମ୍ମୋହନ ମାନସିକତା ସବୁ ଭଙ୍ଗା ଫଟା ଦରଦାଗକୁ ଯୋଡ଼ିଦିଏ । କପଟତା ଗ୍ଲାନି ଦମ୍ଭ, ନିଶ୍ୱାସ, ଅଶ୍ଳୀଳ ଆଶ୍ୱାସନାମୟ ସରଳିଏ ହୋଇଯାଏ । କବି ତାକୁ ଧରି ଯେମିତି ଧରିପାରନ୍ତି ନାହିଁ । ଯଶୋଦା ବିଶ୍ୱରୂପ ଦେଖି ତାକୁ ବ୍ୟକ୍ତ କରି ନପାରିବା ଜନିତ ମଧୁର ଯନ୍ତ୍ରଣା ପରିକା ଯେମିତି ଏହି ସମ୍ମୋହନ । କବି କହନ୍ତି—

ଏଇ କ'ଣ ତେବେ
ସବୁ ତୁଚ୍ଛତା, ବିସ୍ୱାଦ ଭିତରେ ମତେ ଜାବୁଡ଼ି ଧରୁଥିବା
ଜନ୍ମ ପରେ ଜନ୍ମ ଯୁଗ ପରେ ଯୁଗ/ତୁଟୁ ନଥିବା
ଅନିବାର୍ଯ୍ୟ ସମ୍ମୋହନ ? × × × କ୍ଷୁଦ୍ରତା, ନୀଚତା
ଓ ନଶ୍ୱରତାରେ ବନ୍ଦୀ ହୋଇଥିବା ମୁଁ
ଏଇ ଡାକକୁ ଶୁଣିପାରେ ବୋଲି
କେହି ସତ ମଣିବେ ନାହିଁ । (କାହା ଡାକ)

'ମେଘମୟ ବେଳ' ଏବଂ 'ଅକପଟ ଶବ୍ଦରୂପ' ଦୁଇଟି କବିତାରେ ସେଇ ସମ୍ମୋହନ ବା ତଲ୍ଲୀନତାର କଥା । ମାଟିର ଖୋଲପା, ଧୂଳିମଳିର ସଂପର୍କ ଗ୍ଲାନି ସେଇ ମହତ୍ତ୍ୱର ସତ୍ତାଟି ତା'ର ଶବ୍ଦ, ସ୍ପର୍ଶ, ଦୃଶ୍ୟରେ ଏକ ଭିନ୍ନ ଅନୁଭବ ଦେଇଯାଏ । ବ୍ୟକ୍ତିସତ୍ତାର ଅନ୍ତଃକରଣରୁ ବିଶ୍ୱସତ୍ତାକୁ ଛୁଇଁବାକୁ ପ୍ରଚେଷ୍ଟା ହିଏ, ଜଡ଼ ଜାଗତିକ କାମନା ବାସନାରୁ ଊର୍ଦ୍ଧ୍ୱକୁ ନେଇ ଚେତନାକୁ ଶୁଦ୍ଧ କରେ, ରୂପାନ୍ତର ହିଏ । କବି ମୃତ୍ୟୁ ଅମୃତ୍ୟୁ ଡେଇଁ ଯାଆନ୍ତି । ହିଗ୍‌ବିହିଗ ନିଜ ସତ୍ତାକୁ ବିସ୍ତାରିବାର ଶ୍ରଦ୍ଧା ଓ ସ୍ପୃହା ପୋଷଣ କରନ୍ତି । କବିସତ୍ତା ନିଜକୁ 'ପାଣି', 'ଜଣୋସ୍ତ୍ରୀ' ଭାବେ ଚିତ୍ରଣ କଲାବେଳେ ପରମସତ୍ତାକୁ ମେଘ, ଅଶ୍ୱାରୋହୀ ବୋଲି ବର୍ଣ୍ଣନା କରିଛି । 'ଅକପଟ ଶବ୍ଦ ରୂପ' ଭିନ୍ନ 'କି ନାଦରେ ପ୍ରାଣସଙ୍ଗିନୀ' ଆଦି କବିତା ଏଇ ଧାରାର । ଏଇ କବିତାମାନଙ୍କର ଉପସ୍ଥାପନା ଓ ଅନୁଭବ କେତୋଟି ଭିନ୍ନ ପରିପ୍ରେକ୍ଷୀରେ ସଂଘଟିତ ହେଲେ ମଧ୍ୟ ଏଥିରେ ପାରସ୍ପରିକ ସ୍ୱରର ସାମ୍ୟ ରହିଛି । ଏଠାରେ କହି ରଖିବା ପ୍ରାସଙ୍ଗିକ ଯେ ପରମସତ୍ତା ସହ ଅନ୍ତରଙ୍ଗ ହେବା ପାଇଁ ଯେଉଁ ପ୍ରୟାସ ବା ଆକୁଳତା ଇତ୍ୟାଦି ନେଇ 'ଛନ୍ଦ ସମୟ'ଠୁଁ 'ହିସ୍ତୃତ ବସୁଧା' ଯାଏଁ

ପ୍ରତିଭାଙ୍କ ବକ୍ତବ୍ୟ ସଚେତନ ପାଠକଙ୍କୁ ଏକା ଲାଗିପାରେ । ଏ କ୍ଷେତ୍ରରେ ସେ ଏକ ବୃହତ୍ତମ କବିତାଟିଏ ଲେଖିଛନ୍ତି ବୋଲି ମନେହୁଏ । ପ୍ରକୃତ ପକ୍ଷେ ଅସୀମ ପ୍ରତି ଜିଜ୍ଞାସା-ବୋଧର ଯେଉଁ ଅଙ୍କୁର କବି ସତ୍ତାଠିଁ ଅଙ୍କୁରିତ ହୋଇଛି, ତାହା ଶାଖାୟିତ ହୋଇ କ୍ରମଶଃ ବର୍ଦ୍ଧିଷ୍ଣୁ ଓ ବ୍ୟାପ୍ତ ହୋଇଛି ବୋଲି କହିବାକୁ ହେବ । ଏ ପର୍ଯ୍ୟାୟକୁ ଅନୁଭୂତ କ୍ରମଶଃ ସୂକ୍ଷ୍ମ, ନିବିଡ଼ ହୋଇଛି । ଦୃଶ୍ୟମାନ ଜଗତ ଭିତରେ ସେହି ରହସ୍ୟମୟ ସତ୍ତାର ସନ୍ଧାନ କବିଙ୍କୁ ରହସ୍ୟବାଦୀ ଏବଂ ଅନ୍ୟପକ୍ଷରେ ଅଧ୍ୟାତ୍ମବାଦୀ କରି ଗଢ଼ି ତୋଳିଛି । ଦୃଶ୍ୟରେ ନୁହେଁ; ଶବ୍ଦରେ, ସ୍ପର୍ଶରେ ଏଇ ଅନୁଭବ କାମ୍ୟ ହୋଇଛି । ଏ ପର୍ଯ୍ୟାୟର ଉଦାହରଣଟିଏ ଦିଆଯାଉ—

ସଜନୀ, ଏଇ ତୋ'ର ଲୀଳାୟିତ ପଦପାତ କି ?
ତୋ'ର ଆନ୍ତରିକ ସ୍ୱର ସଙ୍ଗୀତରେ ଟଲମଳ
ଉଦାର ଅନ୍ତରର କେନ୍ଦ୍ରବିନ୍ଦୁ ମୋର
ଆକୁଳ ମର୍ମସ୍ଥଳ ।
ଚିତ୍କାର ଉଦାସୀନତା ଭିତରୁ/ଖୁବ୍ ଭିତରୁ
ମୋ ନିରୋଳା ମନ୍ଦିରୁ/ଶୂନ୍ୟରୁ,
କି ନିଷ୍କପଟ ସ୍ୱର ! (କି ନାଦରେ ପ୍ରାଣସଙ୍ଗିନୀ)

ଏ ପର୍ଯ୍ୟାୟର ଅନ୍ୟ ଏକ ଦିଗ 'ଦେବକୀ', ଶ୍ରମଣା (୧), (୨) ରେ ମୂର୍ତ୍ତିମନ୍ତ । ପ୍ରତିଭାଙ୍କ ପୂର୍ବର ମିଥ୍ ସଂଯୋଜନାଠୁଁ 'ଦେବକୀ' ଓ 'ଶ୍ରମଣା'ର ପ୍ରୟୋଗ ବେଶ୍ ଭିନ୍ନ ଓ ଗଭୀର ଅର୍ଥସୂଚକ । ଏଠି ବ୍ୟକ୍ତି ଦୃଷ୍ଟି ଟି ଯୁଗ ଓ ଜୀବନ ଯନ୍ତ୍ରଣାରୁ ମୁକ୍ତିକାତର; ଅଧିକନ୍ତୁ ଏହା ବିଶ୍ୱଦୃଷ୍ଟିରେ ନିବଦ୍ଧ । ଦେବକୀର ବନ୍ଧନ ସବୁକାଳର ମଙ୍ଗଳ ଆକାଂକ୍ଷୀ ସତ୍ତାର ବନ୍ଧନ । ଏକ ବସୁନ୍ଧରା ମାନସିକତା କଂସଚେତନା ବିରୁଦ୍ଧରେ ନିର୍ଭୟ ଓ ଆଶ୍ୱାସନାର ସ୍ୱର ତୋଳିଛି । ଏହା ସାଂପ୍ରତିକ ସମୟର ଅଙ୍ଗୀକାର କରେ, କାଳୋତ୍ତୀର୍ଣ୍ଣ ଆବେଦନ ମଧ୍ୟ ଦିଏ । ଏହା କେବଳ ବସୁଧୈବ କୁଟୁମ୍ବକମ୍ ମାନସିକତା ନୁହେଁ; ନିଜକୁ ବସୁଧା ସହିତ ଆତ୍ମିକ ସହଭାଗୀ କରି ତା'ର ଦୁଃଖ ଯାତନାକୁ ନିଜ ଭିତରେ ଗ୍ରହଣ କରିବାର ଦ୍ୟୋତନା ପ୍ରଦାନ କରେ । ପିଷ୍ଟ ବିଡ଼ମ୍ବିତ ମାତୃସତ୍ତା ଅନ୍ୟ ଅର୍ଥରେ ସୃଷ୍ଟିର ଯନ୍ତ୍ରଣା ଭିତରେ ଏହା ନୂଆ ସୃଜନ ସ୍ୱପ୍ନରେ ଆସ୍ଥା ପ୍ରକଟ କରେ । ଧାଡ଼ିକେଇଟି ଉଦ୍ଧାର କରାଯାଉ—

'ରାତିରେ ଏଣିକି ଖାଲି
କାନ୍ଥିଲା ପିଲାଙ୍କ ରଡ଼ି ଶୁଭିଯାଏ × × ×
ସମୁଦ୍ର ମଝିରେ କ୍ରମଶଃ ବୁଡ଼ି ବୁଡ଼ି ଯାଉଥିବା

ବାଲି ଚରିଯାଉଥିବା ଦ୍ୱୀପ,
ମାତୃତ୍ୱ ମୋହର । × × × ମାଟି ମୋ କର୍ଷଣ ସଙ୍ଗେ
ଲୁହ ବୋହି ଯାଉଥିବା ଗାଈଟିଏ ପରି
ନଇଁ ପଡ଼େ ମଥୁରା ନଗରୀ । (ଦେବକୀ)

'ଶ୍ରମଣା (୧), (୨)'ରେ କବିହୃଦୟଟି ଶବରୀ ଶ୍ରମଣାର ସତ୍ତା ସହିତ ଏକାତ୍ମ । ଶ୍ରମଣା ଶ୍ରୀରାମଙ୍କ ପ୍ରତୀକ୍ଷା କରି ତା'ର ଜୀବନକୁ, ସ୍ଥିତିକୁ ଏକାନ୍ତଭାବେ ଅର୍ଥମୟ ବା ସାର୍ଥକ କରିବାର ମାନସିକତା ପୋଷଣ କରିଥିଲା । ଆଲୋକିତ ଓ ମୁକୁଳିତ ହେବାର କାମନାରେ ପରମସତ୍ତା ସହ ସମ୍ପର୍କ ଯୋଡ଼ିବାର ବ୍ୟାକୁଳତା ଏଠାରେ ଚେତନାର ବ୍ୟାପ୍ତି ଓ ବିଚ୍ଛୁରଣକୁ ସୂଚାଏ । ବ୍ୟକ୍ତିଆତ୍ମା ବିଶ୍ୱଆତ୍ମା ସହ ଯୋଡ଼ିହେବାର ପ୍ରସମ୍ବେଦନା ଏହା ଦେଇଥାଏ । ପରବର୍ତ୍ତୀ କାଳରେ ରଚିତ ଦୀର୍ଘ କବିତା 'ଶବରୀ' ଏହି ଶ୍ରମଣା କବିତାର ବର୍ଦ୍ଧିଷ୍ଣୁ ଓ ପରିଣତ କାବ୍ୟରୂପ । ଏଥିରେ ମାନବାତ୍ମାର ଅନ୍ତିମ ଅଭିଳାଷ ସମ୍ପର୍କରେ ଅଭିବ୍ୟକ୍ତି ମୁଖ୍ୟ ପ୍ରତିପାଦ୍ୟ । ମୃତ୍ୟୁ ସଚେତନତା ଉତ୍ତର ଷାଠିଏ କବିତାର ଅନ୍ୟତମ ସୁଦୃଶ୍ୟ ଦିଗ । 'ଜୟନ୍ତ ବସୁଧା' ପର୍ଯ୍ୟାୟରେ ପ୍ରତିଭାଙ୍କର ଏ ନେଇ ଅଳ୍ପ କେତୋଟି କବିତା ରହିଛି ଯାହାର ସ୍ୱର ଅତିମାତ୍ରାରେ ଜୀବନ-ସମ୍ବେଦୀ । ସ୍ଥିତିକୁ ମହନୀୟ କରିବା ଓ ବିଶ୍ୱମୟତା ପୋଷଣ କରିବା ମାନସିକତାହିଁ ମୃତ୍ୟୁକୁ କହିପାରେ ଦୁର୍ଦ୍ଦାନ୍ତ ପ୍ରେମିକ । ପ୍ରେମିକ ଚରିତ୍ର ସହିତ ଦୁର୍ଦ୍ଦାନ୍ତ ଗୁଣଟି ଏକ ବିରୋଧାଭାସ । ମୃତ୍ୟୁକୁ ଆଧୁନିକ କବି ପରମ ଜୀବନ ବୋଲି ବହୁବେଳେ ଘୋଷଣା କରେ । ତା' ପ୍ରତି ସ୍ନେହ ଓ କରୁଣା ପୋଷଣ କରେ । ତେଣୁ ଏ ବିରୋଧାଭାସ ସତ୍ୟ ନୁହେଁ କି ? ଏଣୁ ଦୁର୍ଦ୍ଦାନ୍ତ ପ୍ରେମିକ ମୃତ୍ୟୁ ପାଇଁ ଅଭିସାର ରଚନା ପ୍ରଚଣ୍ଡ ଆନ୍ତରିକତା ଓ ସ୍ପର୍ଦ୍ଧାର କଥା । ମୃତ୍ୟୁ ବୋଧେ ଚେତନାକୁ ନବଜନ୍ମ ଦେବ, ଆତ୍ମୀୟତାକୁ ଚହଲାଇ ଦେବ । କବିଙ୍କ ଘୋଷଣା—

ଅଣାକାର ପ୍ରେମ, ଅଭିମାନ ମୋର
ପ୍ରତିରବେ ବାସ୍ନାପତ୍ର, ତୁମ ମୂଳକରେ
ତୁମେ ତେବେ ବାସ୍ନା ଭୋର
ଅବିଶ୍ରାନ୍ତ, ବିପୁଳ ପବନ ? (ଦୁର୍ଦ୍ଦାନ୍ତ ପ୍ରେମିକ)

ପୁଣି 'କ୍ୟାନସର : ମୃତ୍ୟୁ' କବିତାରେ କ୍ୟାନସର ପରିକା ବହୁ ଅକଭୋଗ ଓ ଜୀବନଯନ୍ତ୍ରଣା ଭୋଗୁଥିବା ପାର୍ଥିବ ଦେହ ପାଇଁ ମୃତ୍ୟୁ ଏଣୁ 'ପରିଚିତ ପ୍ରତିବେଶୀ', 'ପରମ ଆତ୍ମୀୟ' । ମୃତ୍ୟୁ ସଚେତନତା ପରିପ୍ରେକ୍ଷୀରେ 'ସବା ସାନପୁଅ' ଏକ ଦୀପ୍ତ ଉଚ୍ଚାରଣ । ଏଠାରେ ମାତୃତ୍ୱର ସ୍ନେହରେ କୋଡ଼ପୋଛା ପୁଅ ପରିକା ମୃତ୍ୟୁ ସ୍ନେହ ଛଳଛଳ । ଜନେ ରକ୍ତ ମାଂସର ଦେହରୁ ପାଲଟି ପୂର୍ଣ୍ଣିମୀ ବୃନ୍ଦପରି ମୃତ୍ୟୁକୁ ଆଲିଙ୍ଗନ କରି ତାକୁ ସ୍ନେହରେ

ଜୁଡ଼ୁବୁଡ଼ି କରି ପାରିବା କବିହୃଦୟର ଏକାନ୍ତ କାମନା । ଅଥଚ ତାହା ନ କରି ପାରିବା କେତେ ଯନ୍ତ୍ରଣାପ୍ରଦ ! ନାଗରିକ ଯନ୍ତ୍ରଣା ଭିତରେ ବହୁମୁଖୀ ଭୋଗୁଥିବା ସତ୍ତା ପାଇଁ ମୃତ୍ୟୁ ନିଶ୍ଚିତ ଭାବରେ ନୂତନ ସୃଜନର ସ୍ୱର, ପୂର୍ଣ୍ଣିମା ଜହ୍ନ ପରିକା ଉଜ୍ଜ୍ୱଳ ଭାସ୍ୱର । ସାନପୁଅର ସ୍ନେହ ଦେଇ ତା'ର ଅଭିଷେକ କରି ନ ଗଲେ ଜୀବନ ଯନ୍ତ୍ରଣାରୁ କାବ୍ୟ ନାୟିକାର ମୁକ୍ତି ବା କିଆଁ ନାହିଁ ? ବିଭଙ୍ଗ ବିଡ଼ମ୍ବିତ ସ୍ଥିତିରୁ କିପରି ଉତ୍ତୀର୍ଣ୍ଣତାର ସମ୍ଭାବନା ଆସିବ ? କବିଙ୍କ ମୃତ୍ୟୁ ସଚେତନତାଭିତ୍ତିକ କବିତା ଏଣୁ ଜୀବନ ଆସକ୍ତିର ବାର୍ତ୍ତା ବହନ କରେ ।

ଏ ସଙ୍କଳନର 'ପ୍ରକୃତିର ଲୁହ', 'ନଈ' ଆଦି କବିତା ମାଟିନିଷ୍ଠତା ଓ ସୌନ୍ଦର୍ଯ୍ୟ ସଂପ୍ରୀତିର ନମୁନା ବହନ କରେ । କବି ସିନା ପ୍ରକୃତି ପାଇଁ ଲୁହ ଗଡ଼ାଏ; 'ପ୍ରକୃତିର ଲୁହ' କବିତାରେ ପ୍ରକୃତି କବି ପାଇଁ ଲୁହ ଗଡ଼ାଉଛି । ଏ ଆତ୍ମିକ ସହଭାଗିତା ବା ପ୍ରକୃତି ସହ କୋଳାକୋଳି ଭାବ ବେଶ୍ ହୃଦ୍ୟ ଓ କମନୀୟ । 'ଝିଅ ପାଇଁ ଦୁଇଟି କବିତା' ସମକାଳୀନ ଦୁଃସ୍ଥିତିର ଚିତ୍ର ପରିବେଷଣ କରେ । କୌଣସି ଅନୁଭବେଗ ନେଇ ପୃଥିବୀ କେବେ ଫାଟିଯାଏ ନାହିଁ । ଏକଦା ସତୀ ସୀତାଙ୍କ ନିବେଦନରେ ପୃଥିବୀ ଦ୍ୱିଧାଗ୍ର ହୋଇଥିଲା । ସୀତା ଏ ମାଟିରୁ ଜନ୍ମ ନେଇଥିବା ଏକ ସତ୍ୟ ଯାହା ମାଟି ଉପରେ ପ୍ରତିଷ୍ଠିତ ହୋଇ ନପାରି ମାଟିକୁ ବିଦାୟ ମାଗିଥିଲେ । ସାଂପ୍ରତିକ ପରିପ୍ରେକ୍ଷୀରେ ଏ ଅଲୌକିକତାର ସ୍ଥାନ କାହିଁ ? ଲାଳସା ଓ କୁତ୍ସିତତାରେ ସମସ୍ତ ଗ୍ରସ୍ତ । ପଦେ ପଦେ ବିପଦ, ଏକାକୀତ୍ୱ ଓ ଅସହାୟତାବୋଧ । ଝିଅ ପାଇଁ କିଛି ଆନ୍ତରିକ ଉକ୍ତି ପ୍ରକାଶ କଲାବେଳେ ସେ କିପରି ନିଜେ ନିଜର ଶକ୍ତି ଓ ଆଶ୍ୱାସନା—ଏହିପରି ଏକ ଗମ୍ଭୀର ପ୍ରତ୍ୟୟର ସ୍ୱର କବି ବାଢ଼ିଛନ୍ତି । ଏ ସ୍ୱର ସ୍ଥିତିବାଦୀ । କବି କହନ୍ତି :

> ନିମଗଛର ଅାବୁଡ଼ା ଖାବୁଡ଼ା ଗଣ୍ଠିରେ ମୁଣ୍ଡ ପିଟିପିଟି
> ଚନ୍ଦନର ସୁବାସ ଫିଙ୍ଗାଉଥିବା ମଳୟ ତୁ,
> ନିଜେ ନିଜ ରଖୁଆଳ
> ଧୈର୍ଯ୍ୟ ଓ ଦୃଢ଼ତା ତୋ'ର ଶକ୍ତି ଏକ ସେତୁ । (ଝିଅ ପାଇଁ ଦୁଇଟି କବିତା)

ଏ ସ୍ୱରକୁ ଏକ ବାମାବାଦୀ (Feminist) ପ୍ରତ୍ୟୟର ସ୍ୱର ବୋଲି କୁହାଯାଇ ପାରିବ । କ୍ଷୁଦ୍ରତା ଓ ଅଲୋଡ଼ା ସ୍ଥିତି ଭିତରେ ମହତ୍ତ୍ୱର ସମ୍ଭାବନାର ପ୍ରତ୍ୟାଶା ସପକ୍ଷରେ 'ପାଣିଶିଉଳି' ଏକ ଶକ୍ତ ଉଚ୍ଚାରଣ । ଏହା କବିହୃଦୟର ପ୍ରତୀକ ରୂପ । ପାଣିପଙ୍କର ସରହଦ ଭିତରେ କଙ୍କଡ଼ା ସଦୃଶ ତାଙ୍କର ସ୍ଥିତି । କିନ୍ତୁ, ପଦ୍ମ ସହ ସମକକ୍ଷ ନ ହେଲେବି ପାଣିଶିଉଳର ଆଶା ଓ ଉଲ୍ଲାସ ଭିତରେ ପ୍ରାପ୍ତି ଓ ଆଶାର ପ୍ରତ୍ୟୟ ମିଳେ । ଏ ସଙ୍କଳନର 'ବଉଳତା' ଓ 'ରାଧାମଣି' (ଶିଳାଲିପି) ଚରିତ୍ରଦ୍ୱୟ 'ସାବିତ୍ରୀ ଉବାଚ'ର

ସାବର୍ଣ୍ଣୀର ସମଗୋତ୍ରୀୟ । ସାବର୍ଣ୍ଣୀର ପରଶ୍ରେଷ୍ଠୀ ଓ ସହଜ ଭିନ୍ନ । ଏଠାରେ ନିର୍ଣ୍ଣିତତାର କାରୁଣ୍ୟ ରୂପାୟିତ ହୋଇଛି । ହୃଦୟର ସ୍ନେହ ସମ୍ବେଦନା ଦେଇ କବିସତ୍ତା ଏମାନଙ୍କ ସହ ଏକାତ୍ମ ହୋଇଛନ୍ତି ।

'ନିସ୍ବତ ବସୁଧା' ପର୍ଯ୍ୟାୟରେ ମାଟି ଓ ଆକାଶ ପ୍ରବଣତା ସତ୍ତ୍ୱେ ବସୁଧା ପରି ଯନ୍ତ୍ରଣାକୁ ଅଙ୍ଗୀକାର କରି ମଳିନ ସ୍ଥିତିକୁ ମହନୀୟ କରିବା, ଅପ୍ରାପ୍ତି ଓ ବିରୋଧାଭାସ ଭିତରେ ବିଶ୍ୱାସ ଓ ଆଶ୍ୱାସନାର ଖିଅ ଯୋଡ଼ିବା ମୁଖ୍ୟତଃ ପରିଲକ୍ଷିତ ହୁଏ । ମାଟି ଓ ଆକାଶ ପ୍ରବଣତା ଭିତରେ ମାଟିନିଷ୍ଠତା ଓ ପରମହଂସଙ୍କ ସହ ସମ୍ପର୍କ ଯୋଡ଼ିବାଜନିତ ସମ୍ମୋହନ ବା ତଲ୍ଲୀନତାକୁ କବିଚେତନାର ଉତ୍ତରଣ ବୋଲି କୁହାଯାଇପାରେ । ଏ ଉତ୍ତରଣଟି ଚେତନାର ବିବର୍ତ୍ତନ ଓ ଉତ୍କର୍ଷଗତ ନେଇ ସଂଘଟିତ । ସୀମା ଭିତରେ ଅସୀମର ସନ୍ଧାନ, ଦୃଶ୍ୟ ଭିତରେ ଦୃଶ୍ୟାନ୍ତରର ପରିକଳ୍ପନା, ମାଟି ଓ ଆକାଶ ସହ ଆତ୍ମୀକରଣ ନେଇ ଏ ଉତ୍ତରଣ ପ୍ରୟାସ ।

**ଛଅ :**

ପ୍ରଭାତ ଶତପଥୀଙ୍କ କାବ୍ୟ ଆଭିମୁଖ୍ୟ ବିକାଶ ଓ ବିବର୍ତ୍ତନ ନେଇ ଯେଉଁ ଉତ୍ତରଣ ପର୍ଯ୍ୟାୟକୁ ଗତିମୁଖର ତାହା 'ହାହାଡ଼ାସୁନ୍ଦରୀ' କାଳରୁ ଅଧିକ ସ୍ପଷ୍ଟ ହୋଇଛି । 'ନିମିଷେ ଅକ୍ଷର' ସେଇ ସମ୍ଭାବନା ଓ ବିକାଶର ଅନ୍ତ ଏକ ମହତ୍ତମ ସାକ୍ଷାତ । ଏ ପର୍ଯ୍ୟାୟରେ କାବ୍ୟ ଆଭିମୁଖ୍ୟ ଓ ଉଚ୍ଚାରଣ ଏକାନ୍ତ ନିର୍ଦ୍ଦିଷ୍ଟ ଓ ଏକମୁଖୀନ, ପୂର୍ଣ୍ଣମୁକୁଳିତ ଓ ଉତ୍ତରିତ । ଏ ଉତ୍ତରଣର କୌଣସି ସୀମା ବା ଉଚ୍ଚତା ଚିହ୍ନିତ କରାଯାଇ ପାରିବ ନାହିଁ । ଏହା ଏକ ଆରୋହଣ । ଏ ଆରୋହଣର ଚୂଡ଼ାନ୍ତ ପର୍ଯ୍ୟାୟକୁ ନିର୍ଦ୍ଧାରଣ କରିବା ସହଜ ନୁହେଁ । କବିଙ୍କର 'ନିମିଷେ ଅକ୍ଷର' ପରବର୍ତ୍ତୀ ସଙ୍କଳନ 'ମହାମେଘ', 'ଶବରୀ' ଏବଂ ତତ୍ ପରବର୍ତ୍ତୀ କବିତା ଏଇ ଆରୋହଣ ପଥର ଏକ ଏକ ଘାଟି ଯେଉଁଠି ଚେତନାର ସୂର୍ଯ୍ୟୋଦୟ ପ୍ରତିଟି ସ୍ତର ଓ ପର୍ଯ୍ୟାୟରେ ସମାନ ହୋଇ ମଧ୍ୟ ଭିନ୍ନ ଓ ଅନନ୍ୟ ।

ଚେତନାର ବିକାଶ ପର୍ଯ୍ୟାୟରେ କବି ସତ୍ତା ପାଇଁ ପରିପାର୍ଶ୍ୱଟି ପ୍ରତିସ୍ପର୍ଦ୍ଧୀ ହୋଇଯାଏ । ସିଏ ପ୍ରତ୍ୟାଶା କରୁଥିବା ଏବଂ ଲାଭ କରିଥିବା ଅନୁଭବଟି ଏମିତି କିଛି ସ୍ଥିର ନୁହେଁ । ବୃହତ୍ତର ସମୟଖଣ୍ଡ ଭିତରେ ଏମିତି କେତେକ ମୁହୂର୍ତ୍ତ ହିଁ ନିହାତି ଯାହା ଚେତନାରେ ଚମକ୍ ଖେଳାଏ, କାଳସୀ ଲଗାଏ, କେତେ ସୂକ୍ଷ୍ମ ବିରଳ ଅନୁଭୂତିର ବିଭୂତି ପ୍ରଦାନ କରେ । ଏଇ ମୁହୂର୍ତ୍ତରେ ଅନୁଭବ ଓ ଅନୁଭୂତ ଏକାନ୍ତ ସତ୍ୟ । ପର ମୁହୂର୍ତ୍ତଟି ତା'ଠୁଁ ଭିନ୍ନ ହୋଇଯାଏ । ଏହି ମୁହୂର୍ତ୍ତବୋଧ ଏକ ଜଟିଳତମ ଅନୁଭବର କଥା । ପର ମୁହୂର୍ତ୍ତମାନଙ୍କରେ ବିପରୀତ ଘଟଣା ଘଟିଯାଉଥିଲେ ମଧ୍ୟ ଯେଉଁ ନିର୍ଦ୍ଦିଷ୍ଟ ମୁହୂର୍ତ୍ତ-ମାନଙ୍କର ନିବିଡ଼ ଆନ୍ତରିକ ଅନୁଭବ କବିଙ୍କୁ ଉତ୍ତୀର୍ଣ୍ଣତା ଓ ରୂପାନ୍ତର ଦେଇଯାଏ

ତାହା ହିଁ ଅମଳିନ ସତ୍ୟ ହୋଇ ରହେ । ତାହା ପ୍ରକୃତରେ ଅକ୍ଷୟ—କ୍ଷୟହୀନ । ନିମିଷକର ଅନୁଭବରେ ସତ୍ତା ସ୍ପନ୍ଦିତ ହୋଇଯାଏ । ଏହି ମୁହୂର୍ତ୍ତର ଅନୁଭବ ହିଁ ଚିରସ୍ଥିତ । ମୁହୂର୍ତ୍ତ ହିଁ ସମଗ୍ର ଜୀବନର ଉଦ୍‌ଭାସନ ପ୍ରଦାନ କରିପାରେ । ବିନ୍ଦୁ ଭିତରେ ଏହା ସିନ୍ଧୁ ଦର୍ଶନ ପ୍ରାପ୍ତି । ଉଳଙ୍ଗର ଓ ଉତ୍ତୀର୍ଣ୍ଣ ଅନୁଭବ ହିଁ କାମ୍ୟ । କବି ରମାକାନ୍ତଙ୍କର ଏକ କବିତାର ଶିରୋନାମା 'ମୁହୂର୍ତ୍ତ ହିଁ ପୂର୍ଣ୍ଣାଙ୍ଗ ଜୀବନ' । ଏ ଭାବନାଟି 'ନିମିଷେ ଅକ୍ଷର' ପର୍ଯ୍ୟାୟରେ ଏକାନ୍ତ ପ୍ରତିପାଦ୍ୟ ।

'ନିମିଷେ ଅକ୍ଷର'ରେ ପ୍ରତିଫଳିତ ସମୟଚେତନା ପ୍ରାପ୍ତି କୌଣସି ସମକାଳୀନତା ନୁହେଁ—ଅତୀତ, ବର୍ତ୍ତମାନ ଓ ଭବିଷ୍ୟତ—ଏ ତିନିକାଳ ଗୋଟିଏ ସୂତ୍ରରେ ବନ୍ଧା । ବର୍ତ୍ତମାନଟି ଅନୁଭବ ପାଇଁ ହେଉ କିନ୍ତୁ ତାହା ସାଂପ୍ରତିକତା ନୁହେଁ । 'ନିମିଷେ ଅକ୍ଷର'ରେ ଅସ୍ତିତ୍ୱ ମହିମ୍ନ ହେବାର ପ୍ରୟାସ ଓ ପରିଣତି ପ୍ରତିଫଳିତ । ନିଜେ ଆକାଶମୟ ହୋଇଯିବା ଏବଂ ଆକାଶକୁ ନିଜ ଭିତରେ ଧରିରଖିବାର ପରିକଳ୍ପନା ନିଶ୍ଚିତ ଭାବରେ ଏକ ଉଚ୍ଚତର ଓ ଅସାଧାରଣ ମାନସିକତା । ଜାଗତିକ ବସ୍ତୁକୁ ଆପଣା ଭିତରେ ଭୋଗି, ଗ୍ରହଣ କରି କବିସତ୍ତା ଅତ୍ୟନ୍ତ ମାଟିମନସ୍କ । ଦୃଶ୍ୟର ମୋହ କମ୍ ନୁହେଁ । ମାଟିର ଡାକ ଓ ଆକର୍ଷଣ ଅଳ୍ପ ନୁହେଁ । ଏହା ଏକ ପର୍ଯ୍ୟାୟର ସତ୍ୟ, ଶେଷ କଥା ନୁହେଁ । ବ୍ୟକ୍ତି ବା କବିସତ୍ତା ପାଇଁ ସାଧାରଣ ଜୀବନ ବିତାଇବା ଏକ ଅବଧାରିତ ନିୟତି । ବ୍ୟକ୍ତି-ସତ୍ତାର ସନ୍ତୋଷ ଓ ବିବର୍ତ୍ତନ ସେତିକରେ ସୀମାବଦ୍ଧ ନୁହେଁ । ପୃଥିବୀକୁ ଭଲପାଇବାର ବାସନା ଅଳ୍ପ ଆନ୍ତରିକତାର କଥା ନୁହେଁ । ଏହା ସ୍ପର୍ଦ୍ଧା ଓ ଅନୁରାଗର କଥା । କାମନା, କଷଣ ଓ ମୃତ୍ୟୁ ଜର୍ଜରିତ ସତ୍ତା ସବୁକାଳେ ମୁକ୍ତି ବା ଉତ୍ତରଣ ଲୋଡ଼େ । ମହତ୍ତର ବା ସଂଭ୍ରାନ୍ତ (dignified) ଓ ଆଲୋକିତ ହେବା ତା'ର ଆକାଂକ୍ଷା । ଚେତନାରେ ଦିବ୍ୟ-ଭାବର ସ୍ଫୁରଣ ହେବା ସେ କାମନା କରେ । ପ୍ରତିଭାଙ୍କ କବିସତ୍ତାଟି ଏଣୁ ଅପ୍ସରୀ ଓ ଦେବୀ ହେବାର ବାସନା ପୋଷଣ କରିଛି । ଏହି ମହତ୍ତମ ଓ ଦିବ୍ୟ ହେବା କାମନା ଭିତରେ ନିଜର ଅପୂର୍ଣ୍ଣତା, ଜଞ୍ଜାଳ-ଯାତନାକୁ ସେ ଅତିକ୍ରମ କରିଛନ୍ତି ।

କବିର ଚେତନା ନିର୍ଦ୍ଦିଷ୍ଟତାରେ ଆବଦ୍ଧ ରହେ ନାହିଁ ସିନା; ତାହା ବିଚ୍ଛିନ୍ନ ବି କେତେବେଳେ ସଂପୃକ୍ତ—କିନ୍ତୁ ତାହା ନିର୍ଦ୍ଦିଷ୍ଟତାକୁ ଲୋଡ଼େ । ନିଜ ଦେହ ଭିତରେ, ସ୍ଥୂଳ ଚଉହଦ ଭିତରେ କବିଙ୍କର 'ଅପ୍ସରୀ ଅସ୍ତିତ୍ୱ' ବା ଦିବ୍ୟ ହେବାର କାମନା ଜାଗରୁକ ହୋଇଛି । ହାଡ଼ ମାଂସର ପିଞ୍ଜରା ଭିତରେ ଲେପଟେଇ ପଡ଼ିଥିବା କ୍ରୋଧ, ଘୃଣା ଜର୍ଜରିତ ପ୍ରବୃତ୍ତିର ନିପୀଡ଼ନରୁ ବ୍ୟକ୍ତିଗତ ଜଗତ ଘଟାନ୍ତର ଲୋଡ଼ୁଛି । ଏ ରୂପାନ୍ତର କାମନାରେ କବି 'ନିମିଷେ ଅକ୍ଷର' ପର୍ଯ୍ୟାୟରେ ଅଧିକ ଅନ୍ତର୍ମୁଖୀ ଓ ସୌନ୍ଦର୍ଯ୍ୟ ଅଭିଳାଷୀ । ପରମ ସତ୍ତାକୁ କହିବସନ୍ତି କବି ଯେ ସେ ସୁଗନ୍ଧ କମନୀୟ ପଦ୍ମପାଖୁଡ଼ା ପରି ବିକଶିତ ହେବେ । ପଦ୍ମ ଆମ କାବ୍ୟ ପରମ୍ପରାରେ ସୌନ୍ଦର୍ଯ୍ୟ, ଧବଳତା, ଶୁଭ୍ରତା

ସର୍ବୋପରି ଦିବ୍ୟ ଶୋଭାର ଆଧାର । ଶୋଷଣାପରେ ପଦ୍ମ ହୋଇଯିବା କବିର ଆକାଂକ୍ଷା । ନିଜ ଭିତରର ସ୍ୱାନପଣିଆର ଖୋଲପା ଏଣୁ ଭାଙ୍ଗିପଡ଼େ । କବିଙ୍କ ବ୍ୟକ୍ତିସତ୍ତାଟି କହେ, ତାଙ୍କ ସୃଜନୀ ଓ ସେ 'ଏକାପରି ଅବିକଳ' । ଅନ୍ୟ ସହ ଆତ୍ମୀକରଣ ସହଜ ନୁହେଁ । କବିଙ୍କ ଘୋଷଣା ଓ ନିମନ୍ତ୍ରନ ଏହିପରି : 'ହାତକୁ ସତ ମୁଁ ପାଲଟିବି/ଚିରଦିନର ବାଙ୍କଚ/ ପରିଚିତ ସକାଳଟିଏ' (ଉଷାଭିଳାଷ) । ଉଷାଭିଳାଷ ବା ଅପ୍ରାପ୍ତିମୟତା ହିଁ ଉଦ୍ଧରଣର ଲକ୍ଷ୍ୟ । 'ସମ୍ପର୍କଟିଏ' କବିତାରେ କବି ନାସ୍ତିସତ୍ତା ଭିତରେ 'ଦେବତ୍ୱ'ର କାମନା କରିଛନ୍ତି । ନିଜର ଖର୍ବତ୍ୱ ଓ ଅପୂର୍ଣ୍ଣତାକୁ ସେ ବୁଝନ୍ତି—ଦେବତ୍ୱର ବାସନା ତ୍ୟାଗ କରିପାରନ୍ତି ନାହିଁ । ପୁଣି ମୁଁ ଫିଟି ପଡ଼ିବି ଦିନେ ନଈପରି କିମ୍ବା ସବୁ ନିଷ୍ଠୁରତା ଓ ଅପରିଚ୍ଛନ୍ନତାକୁ ଭସାଇ ନେବା, ହୃଦୟକୁ ବାଣ୍ଟିଛି ସଚରାଚରରେ, ଗ୍ରହ ନକ୍ଷତ୍ର ମିଶ୍ରିତ ଶୂନ୍ୟପଥ ମୋ ଭିତରକୁ ଓହ୍ଲାଏ—ଇତ୍ୟାଦିର ଉଚ୍ଚାରଣ କବିଙ୍କର ଉତ୍ତରଣ ମାନସିକତାକୁ ସ୍ପଷ୍ଟ କରେ । ରହସ୍ୟବାଦୀ ଓ ଆଧ୍ୟାତ୍ମିକତାର ଶୂନ୍ୟାଲୋକ ଭିତରେ କବି କୁଡ଼ବୁଡ଼ ହୁଅନ୍ତି ।

ମାଟି ଓ ସଂସାର ପ୍ରତି ଶ୍ରଦ୍ଧା ପୋଷଣ କରିବା 'ନମିତେ ଅକ୍ଷର'ରେ ଏକ ନୂତନ ଓ ବ୍ୟାପ୍ତ ପରିମଣ୍ଡଳ ଗ୍ରହଣ କରିଛି । ନିଜକୁ ମାଟି ଓ ବୃକ୍ଷ ବୋଲି ପରିଗ୍ରହଣ କରିବା ହୃଦୟର ବିସ୍ତାର ବିଗଳନ ନୁହେଁ କେବଳ; ଆତ୍ମର ଉନ୍ମୁଖତା ଓ ବିଶ୍ୱ ଦୃଷ୍ଟିର କଥା ମଧ୍ୟ । ନିଜ ଭିତରେ ସୃଷ୍ଟିକୁ ଧରି ରଖିବାର ଏକ ଜୀବନାତ୍ମକ ସନ୍ନ୍ୟାସୀଦୃଷ୍ଟି ପ୍ରତିଭାଙ୍କ କବିଦୃଷ୍ଟିକୁ ଅଧିକ ପ୍ରଗାଢ଼ ଓ ମହିମାନ୍ୱିତ କରିଛି । ପ୍ରତ୍ୟୋଗବାଦୀ ଓଡ଼ିଆ କବିତାରେ ଏ ସ୍ୱର ନୂତନ ଓ ଅନନ୍ୟ ବୋଲି କହିବାକୁ ହେବ । ଏ ଆନ୍ତରିକ ଉଚ୍ଚାରଣର ଲକ୍ଷ୍ୟ ଏହିପରି :

> ମୁଁ ଠିକ୍ ତୋ'ରି ପରି/ତୋ'ରି ପରି ମାଟି,
> × × × ଶସ୍ୟରେ ରସରେ ସଗୁଣ ସଶରୀର ମୁଁ
> ବଞ୍ଚୁଛି ହୋଇଅଛି ଅନେକ ଭିତରେ । (ଠିକ୍ ମାଟିପରି)

କିମ୍ବା,

> ମୁଁ ସମଗ୍ର ସର୍ତ୍ତରେ ବୃକ୍ଷଟେ ପାଲଟିଯାଏ
> ଡାଳରେ ଡାଳରେ ଦିବ୍ୟ ପକ୍ଷୀଟିଏ ବୁଲିବୁଲେ
> ଆକାଶ ସ୍ପର୍ଶୀ ନିଦାଘ ବୃକ୍ଷଟିଏ—ଫୁଲ ଫଳଦାୟୀ (ବୃକ୍ଷଟିଏ ମାଗୁଛି)

କବିତାଦ୍ୱୟ ପଠିତବ୍ୟ । ବୃକ୍ଷମୟତାର ନିବିଡ଼ ଅନୁଭବ ଆଉ ଏକ କବିତା 'ଜାଣି ନଥିଲି ତ !' ରେ ପ୍ରମୂର୍ତ୍ତ । ନିଜକୁ, ଜଗତକୁ ବୃକ୍ଷମୟ ଅନୁଭବ କରିବା ବେଦ-ଉପନିଷଦର ଉଲ୍ଲିଖିତ ଲକ୍ଷ୍ୟ—ଏହା 'ଋଷି ଦୃଷ୍ଟି'ର କଥା—ଏହି ଯାହା ନିବିଡ଼ ଅନ୍ତଃପଙ୍କ

ଉଦାହରଣ ପ୍ରତିଭାଙ୍କ ଉଦ୍ଧୃତ କବିମାନଙ୍କରେ ପରିଚୟ ବହନ କରେ । ସ୍ଥୂଳ ଭିତରେ ସୂକ୍ଷ୍ମର ଉପଲବ୍ଧି, ଦୃଶ୍ୟ ବା ପାର୍ଥିବତାକୁ ଅପାର୍ଥିବ ଶବ୍ଦ ସ୍ପର୍ଶରେ ମହନୀୟ କରିବା, ଦୃଶ୍ୟ ଭିତରେ ଦୃଶ୍ୟାନ୍ତରର ଅନୁଭବ 'ନମିତେ ଅକ୍ଷର' ପର୍ଯ୍ୟାୟରେ କବିଙ୍କର ଏକ ମହତ୍ତମ ସଫଳତା । ପୃଥିବୀ ପ୍ରତି/ପାର୍ଥିବତାର ମୋହ ପ୍ରତି ବିରକ୍ତଭାବ କଟିଯାଇ ଏକ ଅସୀମ ଅପାର୍ଥିବ ଅନୁଭବ କବିଙ୍କୁ ଅଧିକ ସୌନ୍ଦର୍ଯ୍ୟ ସଚେତନ ଓ ଜୀବନମୁଖୀ କରିଛି । 'ବଉଦର ବହଳ ନାଡ଼ ଭିତରେ/ତରା ଲଉଣ୍ଡି ଖେଳରେ ମାତିଥିବା ଝିଅଟି ପୃଥିବୀ' ବୋଲି ସେ କହନ୍ତି ।

କବିତାର ସଜନ ବା ସୃଜନର ସ୍ପନ୍ଦନ ଭିତରେ, ଶବ୍ଦବ୍ରହ୍ମ ଭିତରେ କବି ଅସୀମ ବା ଅରୂପକୁ ଅନୁଭବ କରନ୍ତି । କବିତା ସର୍ଜନାର ଅମୂର୍ତ୍ତ ଅନୁଭବ ଭିତରେ ଅମୂର୍ତ୍ତ ଓ ଅମୃତମୟ ପରମ ସତ୍ତାକୁ ହିଁ ଛୁଅଁନ୍ତି/ଖୋଜି ପାଆନ୍ତି । ପରମ ସତ୍ତା ହେଉଛନ୍ତି ଅନନ୍ତ ଅବିନାଶୀ କବିତା । ଶବ୍ଦରେ ଗଢ଼ା ତାଙ୍କ ଦେହ । ତାହା କବିଙ୍କୁ ଉତ୍ତାଳ କରାଏ । କ୍ଷୁଦ୍ରସତ୍ତା ଭିତରେ ବିଶ୍ୱସତ୍ତାର ସନ୍ଧାନ ଦିଏ । କବିଙ୍କ ଉଦାହରଣ ଏହିପରି :

> ପୃଥିବୀ ସ୍ପନ୍ଦିତ ହୁଏ ହୃତ୍‌ପିଣ୍ଡରେ ମୋର
> ସାମାନ୍ୟ ଗ୍ରନ୍ଥ ଭିତର ଆଶ୍ଚର୍ଯ୍ୟ ଦର୍ପଣ ହୁଏ
> ଲକ୍ଷ ଲକ୍ଷ ପ୍ରାଣୀଙ୍କର ଜୀବନମୟ ଗ୍ରନ୍ଥର ପଢ଼ । (ଜଡ଼ ଭରତ)

'କବିତାର ମାୟା'ରେ କବିତାର ସଂଜ୍ଞା ନିରୂପଣ କରିବାକୁ ଯାଇ ପୁନଶ୍ଚ ସେହି ଅମୂର୍ତ୍ତ ଓ ଅମୃତମୟ ପରମ ସତ୍ତା ସମ୍ପର୍କରେ କବି କହିଛନ୍ତି, କବିତା ହେଉ କୃଷ୍ଣ ଯିଏ ତଥାପି ବିଶ୍ୱରୂପ ଦେଖାଏ ନାହିଁ, ବିଶ୍ୱରୂପ ଦେଖାଇବାର ସମ୍ଭାବନା ପ୍ରତିକ୍ଷଣରେ ଥାଏ । ଯଶୋଦାଙ୍କ ସହିତ କବି ସତ୍ତାର ଅଭେଦୀକରଣ ଘଟେ । କୃଷ୍ଣଙ୍କୁ ଆୟତ୍ତ କରିବାକୁ 'ସହସ୍ରେ ଦଉଡ଼ି କୁଳାଏ ନାହିଁ ।' ଯଶୋଦାଙ୍କ ପରି କବି ଧନ୍ଦି ହୁଅନ୍ତି । ଏହି ଧନ୍ଦି ହେବାଟା ହିଁ ସତ୍ୟ । ଅମୂର୍ତ୍ତ ଭିତରେ ଅମୃତ ଆଶା ହିଁ ଏଇ ଧନ୍ଦି ହେବା ।

ପୂର୍ବରୁ କୁହାଯାଇଛି, କବିଙ୍କ ଦ୍ରଷ୍ଟାଙ୍କ ଦୃଷ୍ଟିକୋଣ ରହସ୍ୟବାଦୀ ଏବଂ ଆଧ୍ୟାତ୍ମିକ । ପରମ ସତ୍ତାଙ୍କ ଅନୁଭବ ଓ ସାନ୍ନିଧ୍ୟରେ କବିଙ୍କ ଅନୁଭବ ମନେହୁଏ ଆଧ୍ୟାତ୍ମିକ ଅଥଚ କବିତାର ଭୂମି ଓ ବ୍ୟାପ୍ତି ରହସ୍ୟବ୍ୟଞ୍ଜକ ମାଟି, ବୃକ୍ଷ, ଆକାଶର ରୂପଚେତନା ଭିନ୍ନ କବିସତ୍ତା ସମୁଦ୍ରମନସ୍କତା ପୋଷଣ କରି ସ୍ୱକୀୟ ଚେତନାର ବିସ୍ତାରକୁ ଅନୁଭବ ଗ୍ରାହ୍ୟ କରିଛି । 'ଅସ୍ତ ଜହ୍ନର ଏଲଜି'ରେ ଥିବା 'ସମୁଦ୍ରକୁ' କବିତାରେ କବିଙ୍କର ନିଃସଙ୍ଗତା ଓ ସଂସାରର ମାୟାଜଞ୍ଜାଳ କଥା ରୂପ ପାଇଥିଲା । ଏଠାରେ ପରମ ସତ୍ତାଙ୍କ ରୂପ ସମୁଦ୍ର ରୂପଚେତନା ଭିତରେ କଳ୍ପନା କରାଯାଇଛି । ସେ ହିଁ ଜୀବନ, ମୃତ୍ୟୁ, ଅନ୍ଧକାର ଏବଂ ଚିରକାଳ । ପରମ ସତ୍ତାଙ୍କ ସହ ସମ୍ପର୍କ ଯୋଡ଼ିବାରେ

ଏକ ପକ୍ଷରେ କବିଙ୍କ ଅଣୁ ବା ବୁଦ୍‌ବୁଦ୍‌ମୟତା ଏବଂ ଅନ୍ୟ ପକ୍ଷରେ ସମୁଦ୍ରମୟତା ଉପଲବ୍‌ଧିର ସୂକ୍ଷ୍ମତା ଓ ସାନ୍ଦ୍ରତାକୁ ପ୍ରକାଶ କରେ । କବିଙ୍କ ଉକ୍ତି—

ତୁମେ ସମୁଦ୍ର
ତୁମ ଲହଡ଼ି ମଥାର ଫେଣ ଉପରେ ବୁଦ୍‌ବୁଦ୍‌ଟିଏ ମୁଁ

(କମ୍ପା)

ଜଳ ବିନ୍ଦୁ ମୁଁ ନିଜେଇ ସମୁଦ୍ର ହେଲି
ସ୍ପନ୍ଦନର ଧାରା ହେଲି ।                    (ଅନ୍ତର୍ମୁଖୀମେଘ)

ପରମ ସତ୍ତାଙ୍କ ସ୍ପନ୍ଦନକୁ ଅନ୍ତଃକରଣରେ ଅନୁଭବିବା, ତାଙ୍କ ସହ ହୃଦୟର ଅନ୍ତରଙ୍ଗ ଆଳାପ, ନିଜକୁ ସମ୍ପୂର୍ଣ୍ଣ ସମର୍ପି ଦେବା ଆଦି ଭାବ ଏ ପର୍ଯ୍ୟାୟରେ ଅନୁଭବ୍ୟ । 'ରାତିଅଧ ଟ୍ରେନ' କବିତାରେ କବି ନିଜକୁ ମାଟିରେ ଘୂରୁଥିବା ନିଷ୍ପ୍ରଭ ଜୀବନ ଓ ଅସ୍ତିତ୍ୱ ବୋଲି ଭାବିବା କାଳରେ 'ତାଙ୍କ'ର ରୂପଚେତନା ଭିତରେ ତାଙ୍କୁ ପ୍ରତ୍ୟକ୍ଷ କରନ୍ତି । ଏହି ପ୍ରତ୍ୟକ୍ଷ କରିବା ଏକ ଆତ୍ମୀକରଣ ।

ଅନ୍ଧାରରେ କିଏ ବସିଛ, କିଏ ?
ସେ ଦୁହେଁ ଆଉ ତୁମେ ମୁଁ ନୁହଁ ତ ?

ପରମ ସତ୍ତା ବା ମହତ୍ତର ସତ୍ତା ପାଖରେ କବିଙ୍କ ଆତ୍ମସମର୍ପଣ ଭାବନାଟି ଅଧିକ ହୃଦ୍ୟ । ସେ ସମର୍ପଣରେ ଅସ୍ତିତ୍ୱର ରୂପାନ୍ତର ଘଟେ, ସତ୍ତା ସ୍ପନ୍ଦିତ ଓ ମହିମାନ୍ୱିତ ହୁଏ । ଗୋଟିଏ ମୁହୂର୍ତ୍ତର ପରିସୀମା ମଧ୍ୟରେ କବିସତ୍ତା ତା'ର କ୍ଷୁଦ୍ର ମଳିନ ସ୍ଥିତି ଭିତରେ ଆକାଶ, ଗ୍ରହ, ନକ୍ଷତ୍ର ମହାଅନ୍ତରୀକ୍ଷକୁ ଧରି ରଖେ (ନିଅ ସବୁତକ ସଫଳତା), ପରମ ସତ୍ତା ସହ ଯୋଡ଼ି ହେବା ପାଇଁ ଚନ୍ଦ୍ରାଲୋକ ସେତୁଟିଏ ହୋଇଯାଏ (ନିଷ୍ଫଳ ଅଭିସାର), କବିର ଲୁହ ହୋଇଯାଏ ପରମ ସତ୍ତାଙ୍କ ଲୁହ ଏବଂ ନିଜର ପାପପୁଣ୍ୟ, ସୁଖଦୁଃଖ, ବଞ୍ଚିବା ମରିବା—ସବୁତକ ସଫଳତା 'ତୁମେ' ବୋଲି କବି କହନ୍ତି (ମହାନୁଭବ) । ନିଜ ସ୍ଥିତିର କ୍ଷୁଦ୍ରତ୍ୱ, ଜଳବିନ୍ଦୁ ପାଇଁ ସେ ହୁଅନ୍ତି ଇନ୍ଦ୍ରଧନୁ, ସୂର୍ଯ୍ୟ ଏବଂ ମହାମେଘ (ତଲ୍ଲୀନତା) । 'ସେ ହିଁ ବୈଶାଖୀ ନଈର ଚୋପା ବାଲି ଶେଯ ଭିତରେ ସବାଶେଷ ପାଣିବୁନ୍ଦା'—କବି ଯାହାଙ୍କୁ ନିରନ୍ତର ଖୋଜି ଲାଗିଛନ୍ତି (ଉଜାଗର ସ୍ୱପ୍ନ ଦେଖା) । କବି ବୁଝନ୍ତି ଜନ୍ମମରଣର ଦେହପାଇଁ ସେ 'ପ୍ରିୟତମ ନିର୍ଝର', ମରୀଚିକା ସନ୍ତପ୍ତପ୍ରାଣର ( ମରୀଚିକା ) । କବିଙ୍କର ଏ ଧାରାର ବହୁ ପଂକ୍ତିରୁ ଦୁଇଟି ଉଦ୍ଧାର କରାଯାଉ—

ମୁଁ ଗଭୀର କୂପ ।
ମୋର ସ୍ଥିର ନିସ୍ତବ୍ଧ ଜଳ ଉପରେ ତୁମେ
ଚେନାଏଁ ଚନ୍ଦ୍ରାଲୋକ । (ନଅ, ସବୁଡକ ହଫଲତା)

'ତୁମେ ଯଦି ମୋ ନିୟତି, ନିୟତିର ନିଷ୍ଠୁରତା
ତମେ ଯଦି ଅସ୍ତିତ୍ୱର ମୋର/ଅବିନାଶୀ ସୁଗନ୍ଧ ଓ
ପରମକାରୁଣିକ ମୋ ନିୟତି ବାଚକତା/ଅଉ ଅନ୍ଧ ହେବ ନାହିଁ
ଦୁଃଖରେ ଶୋକରେ/ଯେହେତୁ ମୋ ଲୁହ ଭରିଯିବ
ଛଳ ଛଳ ତମର ଆଖିରେ । (ମହାନୁଭବ)

ପରମ ସମ୍ପର୍କକୁ ବୁଝିଲା ପରେ କବିଙ୍କ ପାଇଁ ମୃତ୍ୟୁ ଗୌଣ ହୋଇପଡ଼େ । 'ଚଳମାନ ସମୟର ଆଢ଼ୁଆଳେ ମାଟି କାନ୍ଥୁଅ ଭିତରର ଉତ୍ତୀର୍ଣ୍ଣ ରହିଛି ମୁଁ'— କବି ଘୋଷଣା କରନ୍ତି । 'ନିମିଷେ ଅକ୍ଷର' ଏବଂ ପରବର୍ତ୍ତୀ 'ମହାମେଘ' ପର୍ଯ୍ୟାୟରେ 'ସମୟ' ଓ 'ନିୟତି' ଦୁଇଟି ଉପାଦାନ ଭାବେ କବିଙ୍କ ଅସ୍ତିତ୍ୱ ସାମନାରେ ଠିଆ ହୁଅନ୍ତି । ଏମାନେ ଦୁଇଟି ବିଭବ ଓ ଚରିତ୍ର । ବ୍ୟକ୍ତିର ଅବଧାରିତ ନିୟତି ତାକୁ ତା' ମତେ ବାଟ ଚଲାଏ । ଚେତନାର ଭୂମିରେ ବ୍ୟକ୍ତି ଯଦି ତା' ନିୟତି ବା ଭାଗ୍ୟକୁ କେବଳ ମାନି ନେଉଥାନ୍ତା ତା'ର କିଛି ବିବର୍ତ୍ତନ ହୁଅନ୍ତା ନାହିଁ । ଚେତନାର ବିକାଶ ବିବର୍ତ୍ତନ ପଟରେ ଉତ୍ତରଣମୁଖୀ କବିସତ୍ତା ପାଇଁ ନିୟତି ଏକାନ୍ତ ଭାବେ ପ୍ରତିଦ୍ୱନ୍ଦ୍ୱୀ ହୋଇ ଉଠିଛି । କବିସତ୍ତା ତା'ର ସ୍ୱକୀୟ ଅନୁଭବ ଏବଂ ନିରନ୍ତର ଅନ୍ୱେଷଣ ଦ୍ୱାରା ନିୟତିକୁ ଅତିକ୍ରମ କରିଛି । ନିୟତି ଅନୁରୂପ ସମୟ ମଧ୍ୟ ଅନ୍ୟତମ ଶକ୍ତିଶାଳୀ ବିଭବ ରୂପେ କବିଙ୍କ ପାଇଁ ଦ୍ୱନ୍ଦ୍ୱ, ଯାତନା, ପରାଭବର ପ୍ରାଚୀର ହୋଇଛି । 'ନିମିଷେ ଅକ୍ଷର'ରେ ସମୟ ଅନୁଭବଟି ମୁହୂର୍ତ୍ତମାନସିକତା ଦେଇ ରୂପନେଇଛି । କାଳବୋଧର ଅନୁଭବରେ କାଳାତୀତର ବ୍ୟଞ୍ଜନା ରହିଛି, ଚେତନାର ଭୂମିରେ ହିଁ ଏହି କାଳବୋଧକୁ ଅତିକ୍ରମ କରିହୁଏ । ସମୟକୁ ଏଣୁ କବି କହିବସନ୍ତି—

ତୁମେ ଏମିତି ଯାଦୁକର ଯେ/ତାଳିଟିଏ ମାରିଦବ ତ
ଉଭେଇଯିବ ମୋର ଅସ୍ତିତ୍ୱ । ହେଲେ
ସୁବର୍ଣ୍ଣ ମୁହୂର୍ତ୍ତର ଏ ମଳାଟି
ଉଭେଇଯିବ ନାହିଁ କଦାପି । (ତୁମର ପାଇଁ ସମସ୍ତ)

'ଏକଗଛ ଧାଡ଼ି ଫୁଟି', 'କ କର ଝୋପା' ଆଦି କବିତାରେ ଏଇ ସ୍ୱର ସମୟ ଅବବୋଧ ଭିତରେ କବି ସମକାଳୀନତାକୁ ବିସ୍ମର ଯାଇନାହାନ୍ତି । ଉତ୍ତରିତ

ଅନୁଭବ ଭିତରେ ପୃଥିବୀର ଜଞ୍ଜାଳ ଯାତନା ନେଇ ସେ ସମସ୍ତ ପ୍ରତି ଅସନ୍ତୋଷ, ବିଦ୍ରୋହ ପୋଷଣ କରିଛନ୍ତି ।

ଆକାଶରୁ ମେଘ ବି ଖସେନା
ମିଥ୍ୟା ଅସନ୍ତୋଷ ଭରି ମେଘମଙ୍କୁ
ଏକପାଦ ବୃକ୍ଷଭଳି କାତର ଆଖିର
ଧାର ଧାର ଲୁହ/ଲୋଭର ଘନଘଟାରେ ଚୌହଦ ଅସ୍ପଷ୍ଟ ।
କୁଢ଼କୁଢ଼ ଅନ୍ଧାରର ବୋଝ ବୋଝ ଗୋଳିଥିବା
ସମୟର ଆଉ କେଉଁ ସମ୍ଭାବନା ଅଛି ? (ପାଲଭୂତ)

ସମୟ ଏଣୁ କବିଙ୍କ ସ୍ମୃତି ଓ ସମ୍ଭାବନାର ନିୟାମକ ହୋଇ ନ ପାରେ । ହୃଦୟର ଆର୍ଦ୍ରତା ଏବଂ ବିଶ୍ୱାସବୋଧ ଦେଇ କବି ସମୟର ହାଡ଼ମୁନାକୁ ଅତିକ୍ରମ କରିଛନ୍ତି । ସ୍ମୃତିର ନଶ୍ୱରତା, ନିୟତିକୁ ବୁଝିଲା ପରେ କବି ଡରନ୍ତି ନାହିଁ ସମୟର ବିକୃତ ଉଚ୍ଚାରଣକୁ । ସମୟପରିକା ନିୟତି କବିଙ୍କ ପାଇଁ ଏକ ଶକ୍ତିଶାଳୀ ଉପାଦାନ ବା ପ୍ରତିଦ୍ୱନ୍ଦ୍ୱୀ ଚରିତ୍ର ବୋଲି ପୂର୍ବରୁ କୁହାଯାଇଛି । ନିୟତିର ସାମନା ହେଲାବେଳେ, ନିୟତି ସହିତ ଯୁଝିଲାବେଳେ କବି ପରମସତ୍ତାକୁ ନିଜ ସରିକା ଏକ ଅନ୍ତରଙ୍ଗ ଚରିତ୍ର ବୋଲି ଗ୍ରହଣ କରିଛନ୍ତି । ପରମ ସତ୍ତା ବି କ'ଣ ଏକ ନାସ୍ତିସତ୍ତା ? ପ୍ରତିଷ୍ଠା କହନ୍ତି :

କେତେ ମିଛ ଲାଗେ ସବୁ/ଯେତେବେଳେ ତୁମକୁ ମୁଁ ବୁଝିପାରେ
ତୁମ ହୃଦୟରେ ଛପିଥିବା ନାସ୍ତିଟିକୁ
ହାତ ଧରି ଟାଣି ଆଣି ଗୁପ୍ତରେ ଲଗାଏ ।
ଟାଣି ନ ଆଣିଲେ ବି ମୁଁ/ବେଳେବେଳେ ସେ ନାସ୍ତିଟି ତମଠୁଁ
ବାହାରି ଆସି/ମୋତେ ଖୋଜେ/ଆମେ ଦୁହେଁ ମିଶି
ଭୂମିଷ୍ଠ ହେଉ ନଥିବା ଅନୁଭବଙ୍କ ସକାଶେ
କାଳବଳ କଷ୍ଟ ସହୁ × × × (ଆମର ଈର୍ଷା)

ଏ ପ୍ରକାର ସୂକ୍ଷ୍ମ ଆତ୍ମିକ ସହଭାଗିତା ଜଟିଳତମ ଅନୁଭବର କଥା । ନିଜର ଅସାମର୍ଥ୍ୟକୁ ବୁଝି ନିୟତିକୁ ଗ୍ରହଣ କରିବା, ତାକୁ ଅତିକ୍ରମ କରିଯିବାର ସାହସ କବି ସଞ୍ଚୟ କରନ୍ତି । ତାଙ୍କର ଏହି ଉତ୍ତରଣ ନିୟତି ପାଇଁ ଈର୍ଷାର କାରଣ ହୁଏ । ପ୍ରତିଦ୍ୱନ୍ଦ୍ୱୀ ନିୟତି ବ୍ୟକ୍ତିସତ୍ତାର ବିକାଶକୁ ତା'ମତେ ନିର୍ଦ୍ଧାରିତ ବା ଅବଧାରିତ କରେ । କବି ନିୟତି ପ୍ରତି ସମ୍ବେଦନଶୀଳ ହୋଇ କହନ୍ତି—'ମୋ ନିୟତି ଆଜି/ମତେ ଈର୍ଷା କରିବାର ଜଣା ପଡ଼ିଲାଣି' (ପ୍ରତ୍ୟାଶିତ) । କବିଙ୍କ ପ୍ରତ୍ୟାଶା 'ଆତ୍ମାର ଉଲ୍ଲାସ', ଗୋଟିଏ ଜୀବନ ପାଇଁ ପରିପୂର୍ଣ୍ଣ ପ୍ରେମ ଓ କରୁଣା । 'ନିୟତି ତା'

ଚିରନ୍ତନ ଉପନ୍ୟାସ, ଆଘାତ ଓ ଦୁର୍ଯୋଗର ଅଭ୍ୟାସ’ ସତ୍ତ୍ୱେ ‘କରୁଣାବ୍ୟଞ୍ଜିତ ସ୍ପୃହାଣି’ରେ କବିଙ୍କ ସ୍ପୃହେ । ପ୍ରଥମଙ୍କ କାବ୍ୟପରିଧିରେ ନିଷ୍ଠିତ ଓ ସମସ୍ତ ସହିତ ଏ ସମ୍ପର୍କ, ଦ୍ୱନ୍ଦ୍ୱ ଓ ମୁକାବିଲା (challenge) ତାଙ୍କ ସ୍ୱରକୁ ବୈଶିଷ୍ଟ୍ୟ ଓ ମୌଳିକତା ପ୍ରଦାନ କରିଛି । ଏ ବ୍ୟକ୍ତିକ ଅନୁଭବମାନଙ୍କୁ ଯେକୌଣସି ମହତ୍ତ୍ୱର ସମ୍ପର୍କ-ପ୍ରତ୍ୟାଶୀ ଜୀବନନିଷ୍ଠ ବ୍ୟକ୍ତିସତ୍ତ୍ୱର ବୋଲି ଗ୍ରହଣ କରାଯାଇପାରେ । ନିଷ୍ଠିତ ଓ ସମସ୍ତ ସହିତ ସାମ୍ନାସାମ୍ନି ହୋଇ ଚେତନାର ଉତ୍ତରଣ ଓ ମହତ୍ତ୍ୱର ଉପ-ଲବ୍ଧିର ଆହରଣ ଉଚ୍ଚକୋଟି’ର ସାହିତ୍ୟ ସୃଜନର ଉପଲକ୍ଷ୍ୟ ବୋଲି ମନେହୁଏ । ଏ ଦୁଇଟି ଉପାଦାନ କୌଣସି ସ୍ଥୂଳବସ୍ତୁ ବା ଅବସ୍ଥା ନୁହେଁ, ଅଦୃଶ୍ୟ ଓ ଅମୂର୍ତ୍ତ ସତ୍ତ୍ୱା ବୋଲି ହିଁ ବୁଝାଯିବ । ଏହା ସହିତ ସମ୍ପର୍କ ଯୋଡ଼ାଯୋଡ଼ି ଏବଂ ସାମ୍ନାସାମ୍ନି ହେବା କବିଙ୍କ ସ୍ୱରକୁ ଅଧିକ ସ୍ପନ୍ଦିତ ଓ ଶକ୍ତିଶାଳୀ କରିଛି । କବିଙ୍କ ଉତ୍ତରିତ ଓ ତଲ୍ଲୀନ ଅନୁଭବର ବହୁ ଉଦ୍ଧୃତ ଓ ପ୍ରସଙ୍ଗ ‘ନିମିଷେ ଅକ୍ଷର’ରୁ ସଂଗ୍ରହ କରିହେବ । ତଲ୍ଲୀନ ଅନୁଭବର ଏକ ବଳିଷ୍ଠ ଉଚ୍ଚାରଣ ଭାବେ ‘ନିଷ୍ଫଳ ଅଭିସାର’ କବିତାଟିକୁ ନେଇ ହେବ । ପରମ ସତ୍ତ୍ୱା ବା ସମ୍ପର୍କ ସହ ଆତ୍ମସ୍ଥ ଓ ଆପଣାର ହେବା ପଣ ଏକ ଶୁଦ୍ଧ ଦୋସ୍ତରୁଣୀପଣ । ସଂସାର ଓ ଜାଗତିକତାକୁ ଅସ୍ୱୀକାର କରି ହୃଦୟ ଓ ଆତ୍ମାରେ ସେଇ ଅନନ୍ୟ ସମ୍ପର୍କର ଅଭିଷେକ, ସଂସ୍ଥାପନ—ନିଜେ ବ୍ୟାପ୍ତ ହୋଇ ‘ସେ’ ହୋଇଯିବାର ଏକ ଚରମ ଓ ପରମ ଅନୁଭବ । ଏ ଅନୁଭବଟି ପରିଣତ ସମୟର ପ୍ରତିଟି ସଂକଳନରେ ନୂଆ ରୂପ ଓ ଆକୃତି ନେଇ ମୂର୍ତ୍ତିମନ୍ତ ।

ରମାକାନ୍ତ ରଥଙ୍କର ଅନନ୍ୟ କବିତା ‘ଶରତର ରାତିଟିଏ’ (ସପ୍ତମ ଅଧ୍ୟାୟ) ସହିତ ଏହାର ଭାବସାମ୍ୟ ରହିଛି । ଆତ୍ମାର ସ୍ୱାଧୀନତା ଓ ସନ୍ତୋଷ ପାଇଁ ବ୍ୟାକୁଳତା ପୋଷଣ ଏହାର ପ୍ରତିପାଦ୍ୟ । ନିତ୍ୟ ପ୍ରାତ୍ୟହିକତା ଭିତରେ ଏକ ମନୋମୟ ରାତିର କାମନା ଓ ସମ୍ମୋହନ କବିଙ୍କ କାମ୍ୟ । କବି ଯାଚଜ୍ଞା କରନ୍ତି । ସେ କାହାକୁ ସମ୍ବୋଧନ କରନ୍ତି ତା’ର ଉଲ୍ଲେଖ ନ ଥିଲେ ମଧ୍ୟ ବୁଝିହୁଏ । ପାର୍ଥିବତା ଜର୍ଜରିତ ଯେକୌଣସି ଉନ୍ମୁଖ ବ୍ୟକ୍ତିସତ୍ତ୍ୱା କ’ଣ ଏହି ମହତ୍ତ୍ୱର କାମନା ପାଇଁ ବ୍ୟାକୁଳିତ ନୁହେଁ ? ଏହି ଶୁଦ୍ଧ ଦୋସ୍ତରୁଣୀ ପଣ ହିଁ ଆତ୍ମାର ଲୋଡ଼ିବାପଣ । କବି କହନ୍ତି—

ଥରଟିଏ,<br>
ଥରକ ପାଇଁ କି ମତେ ଇଚ୍ଛାଗତି ଲଭିବାର<br>
ଅନୁମତି ଦିଅ ଦୟାକରି ।

× × × ହୃଦୟ ହିଁ ଜହ୍ନରାତି ମୋର<br>
ବ୍ୟାପିଥିଲା ସସାଗରା ଧରା ।

ସମସ୍ତ କବିତାଟି ପଠନୀୟ । ଇଚ୍ଛାଗତି ଲଭିବାର ବାସନା ପୋଷଣ, ହୃଦୟର ଉନ୍ମୀଳନ ଓ ବ୍ୟାପ୍ତି 'ଶବରୀ'ର 'ମନ୍ତ୍ରସିଦ୍ଧା' ପର୍ଯ୍ୟାୟରେ ଅଧିକ ପରିପୂର୍ଣ୍ଣତା ପାଇଥିବାର ଲକ୍ଷ୍ୟ କରାଯାଏ । ତେବେ 'ନିମିଷେ ଅକ୍ଷର' ପର୍ଯ୍ୟାୟର କବିତା ଉତ୍ତରଣର କବିତା, ଆଲୋକର କବିତା । ଚେତନାର ଉନ୍ମେଷ ଓ ଉନ୍ମୀଳନ, ହୃଦସ୍ଥ ଆତ୍ମାର ବିସ୍ତାର ବିଗଳନ, ମୁହୂର୍ତ୍ତ ମାନସିକତା ନେଇ ଅନୁଭବର ବ୍ୟାପ୍ତି ଓ ଉତ୍ତୀର୍ଣ୍ଣତା, ବ୍ୟକ୍ତିଦୃଷ୍ଟିର ବିଶ୍ୱମୟତା, ଅନନ୍ତ ଅସୀମକୁ ସସୀମରେ ବାନ୍ଧିବା ମୋହ, କାଳବୋଧ ଓ ନିୟତିର ଉପଲବ୍ଧି ପ୍ରତିଭାଙ୍କ କବିତାଂଜଗତର ବିସ୍ତୃତି ଓ ଆବେଦନକୁ ସୂଚାଇଥାଏ । ଚେତନାର ଏ ବିସ୍ତାର ଉପନିଷଦ, ଶୂନ୍ୟବାଦୀ ସାହିତ୍ୟ ପରମ୍ପରା (ଅଚ୍ୟୁତାନନ୍ଦ, ଭୀମଭୋଇ), କୁନ୍ତଳା କୁମାରୀଙ୍କ କାବ୍ୟସ୍ୱର, ରମାକାନ୍ତ ରଥଙ୍କ ସମସ୍ତ ଓ ଭାଗ୍ୟ ସମ୍ପର୍କୀୟ ମନନ ଓ ମୀମାଂସା ସହିତ ଏକ ପୃଷ୍ଠଭୂମିଗତ ସେତୁ ପ୍ରତିଷ୍ଠା କରେ । ପ୍ରତିଭାଙ୍କ କାବ୍ୟସ୍ୱର ରହସ୍ୟବାଦ ଓ ଆଧ୍ୟାତ୍ମିକତାର ମିଶ୍ରଣରେ ଏକ ସ୍ଥିତିବାଦୀ ଆତ୍ମମୁଖ୍ୟର ବୋଲି ମନେହୁଏ । ଏହି ସୂକ୍ଷ୍ମ ଜଟିଳତମ କାବ୍ୟ ଉପଲବ୍ଧିକୁ ଏକ ନିର୍ଦ୍ଦିଷ୍ଟତା ଦେଇ ଚିହ୍ନଟ କରିବା ସହଜ ହୁଏନା ।

**ସାତ**

'ନିମିଷେ ଅକ୍ଷର' ଏବଂ ପରବର୍ତ୍ତୀ କବିତାଗ୍ରନ୍ଥ 'ମହାମେଘ' ପ୍ରାୟ ସମାନ ମାନସିକତାର । ସମସ୍ତ ଓ ନିୟତି ସେଠି ମଧ୍ୟ ଉପସ୍ଥିତ । 'ନିମିଷେ ଅକ୍ଷର' ଏବଂ ତା'ର ପୂର୍ବ ସଙ୍କଳନ ଅନୁରୂପ ମହତ୍ତର ସତ୍ତା ପ୍ରତି ପ୍ରବଣତା, ନିଜ ସ୍ଥିତିରୁ ବ୍ୟାପ୍ତ ଓ ବିଚ୍ଛୁରିତ ହେବାର ଇଚ୍ଛା, ସ୍ଥିତିକୁ ସ୍ୱର୍ଗୀୟ ଓ ମହିମ୍ନ କରିବା ବାସ୍ନା ପୋଷଣ 'ମହାମେଘ'ର ପ୍ରମୁଖ ସ୍ୱର ବୋଲି ମନେହୁଏ । ଯେଉଁ ଯେଉଁ ସ୍ଥିତିଗତ ଉଦ୍‌ବିଗ୍ନତା, ମଳିନତା ଦେଇ କବିଙ୍କ ଉପଲବ୍ଧିର କେନ୍ଦ୍ର ଓ ପରିଧି ଗଢ଼ିଉଠେ, ତାହା ବିଭିନ୍ନ ସଙ୍କଳନରେ ଏକା ବୋଲି ମନେହୁଏ—ଏକା ହେବାର ସ୍ୱାଭାବିକତା ରହିଲେ ବି ଉପଲବ୍ଧିଗତ ନୂତନତା ଓ ଉଚ୍ଚତର ଅବବୋଧଗତ ଭିନ୍ନତା ରହିଛି । ଅନୁଭବର ସୂକ୍ଷ୍ମତା, ହୃଦନ୍ତର ସତ୍ୟନିଷ୍ଠା ଓ ଶୁଦ୍ଧତାବୋଧର ପରିପ୍ରକାଶ ଏବଂ ପରମ ସତ୍ତାଙ୍କର ଅମୂର୍ତ୍ତରୂପକୁ ବିଭିନ୍ନ ପ୍ରତୀକ ଓ ଚିତ୍ର ରୂପରେ ବିନ୍ୟାସ ଦେବା, ସ୍ଥିତି ବା ସତ୍ତାକୁ ଅଧିକ ଐଶ୍ୱର୍ଯ୍ୟ-ମଣ୍ଡିତ କରିବା 'ମହାମେଘ' ପର୍ଯ୍ୟାୟରେ ବିଶେଷ ଲକ୍ଷଣୀୟ ।

ନିମ୍ନତମ ସ୍ଥିତିରୁ ଉଚ୍ଚତମ ପର୍ଯ୍ୟାୟକୁ ଗୃହଣିବାର ପ୍ରୟାସରେ ନିଜର ସ୍ଥିତି ଓ ସତ୍ତାର ସଂଜ୍ଞା ନିରୂପଣ କରିବାକୁ ଯାଇ ଏ ପର୍ଯ୍ୟାୟରେ ମଧ୍ୟ ନିଜର ଅପାରଗତା ଓ ଅସାମର୍ଥ୍ୟ ସମ୍ପର୍କରେ ଅବତାରଣା କରାଯାଇଛି । 'ନିର୍ଜନତା' କବିତାରେ କବି କହନ୍ତି—'ମୁଁ ନିଜେ ଏ ଶରୀର କି ? / ଛିଣ୍ଡା କୁଡୁକୁତା ଖଣ୍ଡେ କରିହା ମୁଁ ।' ଦିବ୍ୟ ଓ ଅମୃତ ଚରିତ୍ରଟିଏ ଏଠି ମାଟି ଭିତରେ, ପାର୍ଥିବତା ଭିତରେ

ଖ୍ରୀଷ୍ଟାଣ ପଥରଟିଏ ପାଲଟିଯାଇଛୁ ବୋଲି କବି ଘୋଷଣା କରନ୍ତି । 'ଡାଗ୍ରଟିଏ ଝେପିପଡ଼ି ଦୁଃଖାର ଅଙ୍କିତ କୋଣରେ/ପଥର ପାଲଟିଯାଏ/ମୁଁ କି ସେଇ ପଥର ଖଣ୍ଡଟି ?' ( ନିର୍ଜନତା ) ସ୍ମୃତି, ଦୁଃଖ, ଲୁହ ନେଇ ନିଜର ଅକାରଣ ଅମଳିନ ଅସ୍ତିତ୍ୱ ସକାଶେ କବି ଦୁଃଖ ସହ ଘନିଷ୍ଠତା ଭୋଗ କରନ୍ତି (ଅବିଚ୍ଛିନ୍ନ ଯୋଗ) । ଅନ୍ଧାରଠୁଁ ଯେମିତି କୁତ୍ସିତ ନିଜର ରୂପ, ଲେଲିହାନ ଲାଳସା, ଈର୍ଷ୍ୟା, ଅସହଣି ପଣ ତାଙ୍କୁ କାବୁ କରେ । ନିଜର ଆତ୍ମୀୟତାବୋଧ ଓ ଭଲ ପଣ ନେଇ ସେ ନିମ୍ନତମ ସ୍ତରକୁ ଅତିକ୍ରମ କରନ୍ତି । ହୃଦୟରେ କରୁଣାପଣକୁ ସେ ବହୁ ଦୂରକୁ ବ୍ୟାପ୍ତ କରି-ପାରନ୍ତି । ମନସ୍ତତ୍ତ୍ୱବିତ୍‌ଙ୍କ ମତାନୁଯାୟୀ ବ୍ୟକ୍ତି ତା'ର ହୃଦୟର କରୁଣା ଓ ସମ୍ବେଦନାକୁ ଅସୀମ (infinity) ସ୍ତରଯାଏ ବଢ଼ାଇପାରେ । ପ୍ରତିଭା ତାଙ୍କର ଗଭୀରତମ ବିଶ୍ୱାସବୋଧ ନେଇ ମଣିଷ ଭିତରେ ଈଶ୍ୱରତ୍ୱ ଓ ଈଶ୍ୱରୋଚିତ ଅନୁଭବକୁ ଯେମିତି ପ୍ରତ୍ୟକ୍ଷ କରନ୍ତି, ମଣିଷର କରୁଣାପଣର ବ୍ୟାପ୍ତି ନେଇ ସେ ଈଶ୍ୱରଙ୍କୁ ଗମ୍ଭୀର ଓ ଆତ୍ମୀୟତାବୋଧର ପ୍ରଶ୍ନ ପଚାରନ୍ତି ।

> ମୋ ଭିତରୁ କେହି ଡାକେ/ଧୂଳିରେ ବିଗୁଳି ଯାଅ ନିଜକୁ
> ଆଗୋ ମୋର ସତ୍ୟନିଷ୍ଠ /ମୋ ଆତ୍ମାର ଭଲ ପଣ
> ମତେ ମୁକ୍ତ କରିଦିଅ ପବନ ସମାନ
> ମୋ ନ୍ୟୂନତମ ସତ୍ତାକୁ ଘୃଣା କରେ, ଆଉ ସେ
> ମୁଁ କ୍ଷମାକରେ—ତମଠୁଁ ଅଧିକ କ୍ଷମାବନ୍ତ
> କରୁଣାବନ୍ତ ମୁଁ ? (କାହା ମୁହଁ)

'ମହାମେଘ'ରେ ସଂକଳିତ 'କୁରୁପତି ସମୀପସ୍ଥଳେ', 'ରାବଣ' ଶୀର୍ଷନାମାର କବିତାଦ୍ୱୟ କବିସତ୍ତାର ଆତ୍ମିକ ବିବର୍ତ୍ତନରେ ସହାୟତା ଦିଅନ୍ତି । ଦ୍ରୌପଦୀ ଏବଂ ସୀତା ଚରିତ୍ରଦ୍ୱୟ କବିଙ୍କ ନିଃସତ୍ତ୍ୱ-ପ୍ରତୀକ୍ଷା ରୂପ । ପୁରାଣର ସମସ୍ତ ସହିତ ସାଂପ୍ରତିକତାକୁ ସଂଯୋଜିତ କରି ସାଂପ୍ରତିକ କାଳର ଯନ୍ତ୍ରଣା ସହିତ କବିମାନସର ଊର୍ଦ୍ଧ୍ୱାୟିତ ମୋହ ଓ ଆବେଗକୁ ରୂପ ଦିଆଯାଇଛି । ଏ ସମସ୍ତ ଉଭୟଙ୍କର ଅପଚୟର ସମସ୍ତ ଯେଉଁଠି ଆତ୍ମୀୟତା ଅଧୋମୁଖ । ପରମ ସମ୍ପର୍କଟିଏ ଯୋଡ଼ିବା କଷ୍ଟକର ହୋଇଯିବ । କବି ଭସ୍ମସ୍ଥାନ ସବୁଜ ଉପତ୍ୟକାଟିଏ ଖୋଜି-ବସନ୍ତି । ଯେଉଁଠି ତାଙ୍କ ପାଦ ବିଶ୍ରାନ୍ତ ଓ ନିର୍ଭିକଭାବେ ପଡ଼ିପାରିବ । ବଞ୍ଚିରହିବା ନେଇ ମଧ୍ୟ ବହୁ ଅଗ୍ନି ପରୀକ୍ଷାର ସମ୍ମୁଖୀନ ହେବାକୁ ପଡ଼େ । କବିଙ୍କୁ ଏ ପୃଥିବୀ ଲାଗିଛି ଅଙ୍ଗାରଭର୍ତ୍ତି ଭୂଇଁ ଏବଂ ତାଙ୍କ ପାଦ ଦୁଇଟି ଯେମିତି ଦରପୋଡ଼ା ଦୁଇଗୋଟି ଖୁଣ୍ଟ । ରୂପ ଓ ଐଶ୍ୱର୍ଯ୍ୟମୟ ସତ୍ତାଟିଏ—ଶୁଦ୍ଧ ସୀତା ସତ୍ତାଟିଏ ହେବା ପାଇଁକାଭସ୍ତ୍ର ଓ ମୃତ୍ୟୁମୟ ରାବଣିକ ପରିସୀମାକୁ ଅତିକ୍ରମ କରିବାକୁ ପଡ଼େ । ଦ୍ରୌପଦୀ ବା କୃଷ୍ଣାସତ୍ତାର କୃଷ୍ଣଗତ ଅଭିସାରର ରୂପରଚନା କରି ପ୍ରତିଭାଙ୍କ କବିସତ୍ତାଟି ବାଡ଼ମ୍ବନା

ଓ ଅସହାୟତାବୋଧର ପରିମଣ୍ଡଳ ମଧ୍ୟରେ ପରମସତ୍ତାକୁ ଏକ ଆତ୍ମୀୟ ଜିଜ୍ଞାସାବୋଧ ଜରିଆରେ ରୂପ ଦେଇଛନ୍ତି । ସେ ସତ୍ତାର ରହସ୍ୟମୟତା ପ୍ରତିପାଦନ କରିଚନ୍ତି ।

ତୁମେ କ'ଣ ସତରେ/କଳା କଟି କଟି ଏଇ ଅନ୍ଧାର ଭିତରେ
ଉଜ୍ଜୀବିତ, ଆଲୋକିତ ଅଂଶଟିରେ
ଠିଆ ହୋଇଛ/ଗ୍ରସ୍ତାମାସ୍ତାର ରହସ୍ୟମୟ ସମାବେଶରେ ?
ଐଶ୍ୱର୍ଯ୍ୟବନ୍ତ ସ୍ମିତଟିଏ/ଲକ୍ଷି ରହିଛ ତୁମ
ସ୍ଫୁରିତ ଓଷ୍ଠାଧରରେ ? (କୁରୁପତି ଘଷାସ୍ଥଳେ)

‘ମହାମେଘ’ ପର୍ଯ୍ୟାୟରେ କବି ସମୟର ବିଭଙ୍ଗପଣ, ଅପାରଗ ଅସ୍ତିତ୍ୱର କାମନା, ପରମ ସତ୍ତା ସହ ଯୋଡ଼ିହେବାର ବ୍ୟାକୁଳତା ଏବଂ ମୁଖ୍ୟତଃ ସେ ସତ୍ତାର ରହସ୍ୟମୟତାର ପ୍ରତିପାଦନରେ ତତ୍ପରତା ପ୍ରକାଶ କରିଛନ୍ତି । ପ୍ରତିନିୟତ କବି ଜାଗତିକ ସତ୍ତା ବାହାରକୁ, ପାଚେରି ସେପାଖକୁ ଫୁଲିଯିବାର କାମନା କରିଛନ୍ତି । ବାଲିରଙ୍ଗର ବିଶାଳ ଶରୀର ଧରି ସମସ୍ତ ଠିଆହୋଇଛନ୍ତି ତାଙ୍କ ସାମ୍ନାରେ (ପ୍ରତ୍ୟୁତ୍ତର) । ଜାଗତିକ ସୌଭାଗ୍ୟ-ଅନ୍ବେଷଣ ଭିତରେ ତାଙ୍କର ହୃଦୟ ତଥାପି ଜଳୁଥାଏ । ଭିନ୍ନ ଏକ ସତ୍ତାର ସ୍ପର୍ଶ ପାଇଁ ‘ଧକେଇ ଧକେଇ ପଞ୍ଚପ୍ରାଣ କାନ୍ଦୁଥିବା’ ସେ ଶୁଣନ୍ତି । କବି ବୁଝନ୍ତି ତାଙ୍କର ସାମର୍ଥ୍ୟ । ସେ ଭଗବାନ ନୁହନ୍ତି । ଏଇ ମାଟିରେ ଭଲ ପଣକୁ ବଞ୍ଚାଇ ରଖିବା ପାଇଁ ଆପ୍ରାଣ ଚେଷ୍ଟା କରନ୍ତି ( ରାତିରାତି, ଅତନ୍ଦ୍ରିତ ରାତି ) । ଦୃଶ୍ୟ ଓ ପାର୍ଥିବତା ଭିତରେ ତାଙ୍କୁଇ ଅପେକ୍ଷା । ନିଜର ସତ୍ତାକୁ ସେ ‘ମହାମେଘ’ର ‘ଜହ୍ନମୁହାଁ ବାଳିକା’ର ରୂପଚେତନା ସହ ସମନ୍ୱିତ କରିଦେଇଛନ୍ତି । ପରମ ସତ୍ତାକୁ ରକ୍ଷାର୍ଥୀ ବୋଲି ସମ୍ବୋଧନ କରି ‘ତା’ ଆତ୍ମାର ଗୁରୁ ସ୍ଥାପତ୍ୟର ପୂର୍ଣ୍ଣତା’ ପାଇଁ ତାଙ୍କର ନେପଥ୍ୟ ଇଚ୍ଛାକୁ ପ୍ରକାଶ କରନ୍ତି । ତାଙ୍କ ସ୍ୱର ଶୁଣିବା ପାଇଁ ଅଜସ୍ର ବାଧା । ତାଙ୍କ ଡାକ ଶୁଣିଲେ : ‘ପାଉଁଶ ହୋଇ ରହନ୍ତି ନାହିଁ/ଉନ୍ମୁଖତା ଛୁଟନ୍ତା ନିଆଁ ପରି/ବିଜୁଳି ପରି/ଛୁଇଁ ଯାଆନ୍ତା/ଆକାଶକୁ ଦ'ଭାଗ କରନ୍ତା’ (ଶୁଭେନା ତୁମର ଡାକ) ବୋଲି କବିଙ୍କ କାମନା ପୋଷଣ ।

‘ପରମ ସଂପର୍କ’ ସହିତ ଅଭିସାର କବିଙ୍କ ପ୍ରାପ୍ତି ଓ ଅପ୍ରାପ୍ତିବୋଧ ନେଇ ସଂଘଟିତ । ଜାଗତିକ ସୁଃଠାରେ ସେ ବାନ୍ଧି ହୋଇ ରହିନାହାନ୍ତି ବୋଲି ତାଙ୍କର ସଦର୍ପ ଘୋଷଣା । ଜାଗତିକତା ତାଙ୍କ ପାଇଁ ବଣିକର ପାଦ ସଦୃଶ । ହୃଦ୍ ସଂପୁଟର ସୁକୁମାରୀ ଫୁଲକୁ ତାହା ମଉଳାଇ ଦିଏ (ବଳାତ୍କାର କାଡନା) । ପରମ ପୁରୁଷ ବା ସତ୍ତାଙ୍କର ସ୍ୱରୂପାଙ୍କନରେ ‘ମହାମେଘ’ ପର୍ଯ୍ୟାୟରେ ପ୍ରତିଭାଙ୍କର ବହୁ ଚମତ୍କାର ଅନୁଭବ ରହିଛି । ତାଙ୍କୁ ସେ ‘ଶୂନ୍ୟରେ ଦୃଶ୍ୟମାନ ଅବଗୁଣ୍ଠିତ ପୁରୁଷ’, ‘ଅସ୍ଥିର ଅଣଦର—ଅମାଂସ ଅରକ୍ତ ଗଢ଼ା ‘ସୁଦନ୍ତ ନାଗର’, ‘ଚନ୍ଦ୍ରାଲୋକ’ର ବର୍ଣ୍ଣବିଭବରେ ତର୍କଣା କରିଛନ୍ତି ।

ଅଚ୍ୟୁତାନନ୍ଦ ଓ ଶ୍ରୀମଦ୍ଭୀଇଙ୍କର ଶୂନ୍ୟ ପୁରୁଷଙ୍କ ରୂପ ରଚନା ସହ ଏ ଅନୁଭବର ସ୍ୱରସାମ୍ୟ ରହିଛି । ପାଖରେ ଥିବା ପୁଣି ନଥିବା ତାଙ୍କ ଚେହେରାର ବର୍ଣ୍ଣନା ନିମ୍ନମତେ : 'ପ୍ରକାଣ୍ଡ ଆକାଶ ଝପି/କୋଟିଏ ତାରାରେ ସଜା/ତୁମ ସେଇ ଚେହେରା' (ଦୁଃଖଗତ ଅନ୍ତରଙ୍ଗତାରେ) । ସେଇ ପ୍ରତ୍ୟାଶିତ ପରମ ପୁରୁଷଙ୍କୁ 'ମହାମେଘ' ବୋଲି ଚିହ୍ନଣ କରି ହୃଦସ୍ଥ ଆତ୍ମାର ବସ୍ତୁର ବିଗଳନକୁ କବି ଏକ ଜଣେଶୀ ସତ୍ତ୍ୱର ରୂପ ଆଧାରରେ ଅନୁଭବ କରିଛନ୍ତି । ଏହା ଏକ ପରମ ଉତ୍ତରିତ ଅନୁଭବ । ଅନନ୍ତ ଅବ୍ୟକ୍ତ ପରମ ସତ୍ତ୍ୱର ରହସ୍ୟମୟ ରୂପକୁ କବି ଉଜ୍ଜ୍ୱଳ ଓ ସୁଗନ୍ଧିତ ବ୍ରହ୍ମାଣ୍ଡ ବା ଅନ୍ତରୀକ୍ଷମୟତା ପ୍ରଦାନ କରି ନିଜକୁ ଫିଟିପଡୁଥିବା ଫାଟି ପଡ଼ି ମିଳେଇ ଯାଉଥିବା ମେଘସତ୍ତା ବୋଲି ଗ୍ରହଣ କରିଛନ୍ତି ।

× × ×

ଦେଖାଙ୍କ ଆତ୍ମମଣ୍ଡଳ/ସମାନ ଯେ କାହାର ଆକାର ?  
ବର୍ଷାର ପ୍ରଥମ ମେଘମାଳ ପରି ଭାସନ୍ତ ଶରୀର  
ଦୁଇ ଆଖି ଚନ୍ଦ୍ର ସୂର୍ଯ୍ୟ/କୋକନଦ ପାଖୁଡ଼ାଏ ଓଠ  
ଜାଲମ୍ବ ଫୁଲ ପରାଏ ଦୁଇକାନ/ସାରା ଅରଣ୍ୟର  
କେଶ ଭାର/ନାସାରନ୍ଧ୍ରେ କଦମ୍ବ କେଶର  
ସୁଗନ୍ଧରେ ଅଧୀର ପବନ । (ମହାମେଘ)

ପରମ ସତ୍ତା ବା ପୁରୁଷଙ୍କ ସହ ସଂପର୍କ ଯୋଡ଼ାଯୋଡ଼ିର ଚରମ ଅନୁଭବ ଭିତରେ ଅନ୍ୟସବୁ ଅନୁଭବ ସମୀକୃତ ହୋଇଯାଇଛି । ସେ ଯେହେତୁ ତାଙ୍କ ପାଇଁ ପ୍ରେମ ଓ ଭ୍ରମ, ମୃତ୍ୟୁ ଅମୃତ୍ୟୁ ମଧ୍ୟ—ପୁଣି ବାରମ୍ବାର ବିଚ୍ଛିନ୍ନ ସଂଯୁକ୍ତ, ଦୂର ସନ୍ନିକଟର ଆକୃତି ଦେଉଥିବା ସେ ସତ୍ତ୍ୱଟି କବିଙ୍କ ଜୀବନସାଧନା ଓ ମୃତ୍ୟୁବୋଧକୁ ମଧ୍ୟ ଆବୋରି ରହିଛି ।

ସେ ଏପରି ଆଲିଙ୍ଗନ/ଯା'ର ଦୁଇବାହୁ ଦୂର ଓ ସମୀପ  
ସେ ଏପରି ଚୁମ୍ବନ/ଯାହାର ଶିହରଣ ଓ ମରଣ  
ଦୁଇଗୋଟି ରେଖା । (ଦୂର, ସନ୍ନିକଟ)

କବିଙ୍କର ଏ ଉତ୍ତରଣ ପର୍ଯ୍ୟାୟରେ ପ୍ରାରମ୍ଭରୁ ଅଙ୍କୁରିତ ଆଉ କେତେକ ଭାବ ଗୌଣ ହୋଇ ପଡ଼ିଛି ଏବଂ ଏ ପ୍ରମୁଖ ଅନୁଭବ ସହିତ ମିଶିକରି ରହିଛି । ପ୍ରକୃତପ୍ରବଣତା, ସୌନ୍ଦର୍ଯ୍ୟ ଅନୁରାଗ, ମୃତ୍ୟୁ ସଂଚେତନତା, ମାନବିକ ସହୃଦୟତା ଇତ୍ୟାଦି ଭାବ ଭିନ୍ନ ଭୂମି ଓ ଭାଷ୍ୟ ନେଇ ପରମସତ୍ତ୍ୱଙ୍କ ଅନୁଭବଗତ ଚରମ ଅବବୋଧରେ ମିଶିଯାଇଛି ।

'ମହାମେଘ' ପର୍ଯ୍ୟାୟରେ କବିଙ୍କ ବସୁଧା ସମ୍ପ୍ରୀତି କେତେକ କବିତାରେ ଅତି ପ୍ରତ୍ୟକ୍ଷ ଭାବରେ ପ୍ରକାଶିତ । ଯୁଦ୍ଧଧ୍ୱାନ୍ତ, ରକ୍ତପାତ ଓ ସନ୍ତ୍ରାସ ଅଧ୍ୟୁଷିତ ପୃଥିବୀ ପାଇଁ କବିଚିତ୍ତର କ୍ଷୋଭ ସହ କରୁଣା ଓ ଆଶ୍ୱାସନା ଫିଟିପଡ଼ିଛି । ମାଟିକୁ ଆଲିଙ୍ଗନ କରି ତା'ର ଦୁଃଖକୁ ଆତ୍ମସ୍ଥ କରିବା ମାନସିକତା ନେଇ କବି କହନ୍ତି— 'କାଲୁଷ ପୃଥ୍ୱୀ—ନେଇ ଯା' ସମୁଦାୟ ଆତ୍ମୀୟତା' । 'ଫାକ୍ ଲ୍ୟାଣ୍ଡ', 'ମୋର ଭାରତବର୍ଷ' ଇତ୍ୟାଦି ଏଇ ଧାରାର । 'ଜନନୀ' କବିତା ଆବେଗ ଓ କାବ୍ୟ ବକ୍ତବ୍ୟ ଦୃଷ୍ଟିରୁ ଅନନ୍ୟ । ଯେଉଁ ବସୁଧାପ୍ରୀତି ଏବଂ ନିଜର ମାତୃସତ୍ତାକୁ ମାଟି ସହିତ ଏକୀଭୂତ କରି ତାର ଦୁଃଖକୁ ନିଜର ଦୁଃଖ ବୋଲି ଭାବିବାର ପ୍ରବଣତା ପ୍ରତିଭାଙ୍କ 'ବିସ୍ମୃତ ବସୁଧା', 'ନିମିଷେ ଅକ୍ଷର' ପର୍ଯ୍ୟାୟରେ ଉନ୍ମୁଖ ହୋଇଥିଲା 'ଜନନୀ' କବିତାଟି ତା'ର ଏକ ପରମ ପରିପୂର୍ଣ୍ଣ ଉଚ୍ଚାରଣ । ପୃଥିବୀର କେଉଁ କୋଣରେ ଯଦି ଶିଶୁଟିଏ କାନ୍ଦେ ନିଜ ହୃଦୟର ଜନନୀସତ୍ତା ସେ ଲାଗି ବିଳପି ଉଠେ, ନିଜ ଭିତରେ ନିରୁଦ୍ଧ ସମୁଦ୍ରଟିଏ ଫିଟିପଡ଼େ । ଶ୍ୱେତର ପିଲାଟି କାହାର ଶ୍ରମଜୀବୀ ପିଲା ବୋଲି ହେୟ ବା ନ୍ୟୂନ ହୋଇଯାଏ ନାହିଁ । ସେ ଯେମିତି କବିଙ୍କ ଜଠରରୁ ଭୂମିଷ୍ଠ ହୋଇଥିବା ରକ୍ତଗଢ଼ା ମଣିଷ । ପୃଥିବୀରେ ମାଡିଥିବା ଅସୁରପଣର ବିଲୋପପାଇଁ ସେ କୃଷ୍ଣ, ଯୀଶୁ, ଗାନ୍ଧୀ ପରିକା ଗୋଟେ ସନ୍ତ । କବି କାମନା କରନ୍ତି—ସେ ଏହି ନବଜାତକଟିକୁ ଜନ୍ମ ଦିଅନ୍ତେ । କବିଙ୍କର ଏ ସ୍ୱପ୍ନ ଓ ପରିକଳ୍ପନା କମ୍ ଆଶ୍ୱାସନାମୟ ଓ ଅସ୍ତିବାଚକ (positive) ନୁହେଁ । କବି ମାଟି ଓ ମଣିଷ ପାଇଁ କହିବସନ୍ତି—

> ପୁରଣ ଜନନୀର ରକ୍ତ ସଙ୍ଗେ ମିଶି
> ମୋ ରକ୍ତଧାରା କାଳ ଲଙ୍ଘି ବୋହିଯାଆନ୍ତା ।

'ଦେବକୀ'ର ଆଦିଜନନୀ ସତ୍ତାଟି 'ଜନନୀ' କବିତାରେ ଯେମିତି ପରିପୂର୍ଣ୍ଣତା ପାଇଛି । ଏ ଆତ୍ମୀୟତା, ଅଙ୍ଗୀକାରବୋଧ ଓ ଆତ୍ମୀକରଣ ମୋହ କବିଙ୍କର ମାନବିକ ସମ୍ପ୍ରୀତିର ପରିଚାୟକ ।

ଉପର୍ଯ୍ୟୁକ୍ତ ଭାବେ 'ଅସ୍ତ୍ରଜହ୍ନର ଏଲିଜି'ରୁ 'ମହାମେଘ' ଯାଏ ପ୍ରତିଭାଙ୍କ କବି ସତ୍ତାର ଉନ୍ମେଷ, ବିକାଶ, ବିବର୍ତ୍ତନ-ବିଚ୍ଛୁରଣ ସଙ୍ଘଟିତ ହୋଇଛି । କବିଙ୍କ ସପ୍ତମ କବିତାଗ୍ରନ୍ଥ 'ଶବରୀ' ନିର୍ଦ୍ଦିଷ୍ଟ ପ୍ରସଙ୍ଗ ଓ ପ୍ରତୀକକୁ ଆଧାର କରି ସଞ୍ଚରିତ ହୋଇଥିଲେ ହେଁ ଏ ଉତ୍ତରଣ ପର୍ବର ବିବିଧତା ଓ ବ୍ୟାପ୍ତିକୁ ସୂଚାଇବା ପାଇଁ ତାହା ଏକ ବୃହତ୍ତର କାନ୍‌ଭାସ । ପରମ ସତ୍ତା ସହ ଅଭିସାର, ନିଜର ସ୍ଥିତି ଓ ସମ୍ପର୍କକୁ ମହାନ୍ ଓ ଉଜ୍ଜ୍ୱଳ କରିବା, ଚେତନାକୁ ବିଶ୍ୱ ଓ ଅନ୍ତରିକ୍ଷ ପ୍ରବଣତା ପ୍ରଦାନ କରିବା, ଧ୍ୱଂସ ପ୍ରବୃତ୍ତ କାଳର ବିଭଙ୍ଗ ପଣ ଓ ଆସୁରିକତାର ବିଲୋପ କାମନା କରିବା, ହୃଦୟର ସମ୍ବେଦନା ଦେଇ ପୃଥିବୀ ପାଇଁ ସ୍ନେହ ଆଶ୍ୱାସର ଧାରା ହୋଇ ବହିଯିବା ପାଇଁ

ଅଭିଳାଷ ପୋଷଣ, ମୋକ୍ଷ ନୁହେଁ—ଜୀବନ ହିଁ ଜୀବନ୍ତ ଦେବତା—ଏହି ନିବିଡ଼ ବିଶ୍ୱାସବୋଧର ରୂପାୟନ 'ଶବରୀ'ର ପ୍ରତିପାଦ୍ୟ ଅନୁଭବ । ଏହା ଏକାନ୍ତ ଭାବେ ନୂତନ ନୁହେଁ । 'ଶବରୀ'ର ମୂଳ ଭିତ୍ତି ବା ସୂତ୍ର ତା'ର ପୂର୍ବ ସଙ୍କଳନମାନଙ୍କରେ ବହୁ ଭାବରେ ରହିଛି । କବି ଯେଉଁ ସୂକ୍ଷ୍ମ ଜଟିଳ ଅନୁଭବମାନଙ୍କୁ ରୂପଦେଇ ଆଧୁନିକ ଓଡ଼ିଆ କବିତାର ପରିମଣ୍ଡଳକୁ ସମୃଦ୍ଧ କରି ଚାଲିଛନ୍ତି, ତା'ର ପରିଚୟ ଓ ବୈଶିଷ୍ଟ୍ୟ ଦର୍ଶାଇବା ସକାଶେ 'ଶବରୀ' ଏବଂ ତତ୍ ପରବର୍ତ୍ତୀ ରଚନାମାନଙ୍କୁ ଏକ ଭିନ୍ନ ଶିରୋନାମାରେ ଆଲୋଚନା କରାଯାଇପାରେ ।

ଆଠ

ପ୍ରତିଭା ଶତପଥୀଙ୍କ କବିତାର ଆଙ୍ଗିକ ବୈଶିଷ୍ଟ୍ୟକୁ ଆତ୍ମିକ ବା ଭାବଜଗତରୁ ଏକାନ୍ତ ଭାବେ ପୃଥକ୍ କରି ବିଚାର କରି ହୁଏନା । ଆଧୁନିକ କବିତାର ଗଠନଗତ ବୈଚିତ୍ର୍ୟ ଓ ସୌଷ୍ଠବ ପ୍ରତି ପୂର୍ଣ୍ଣ ସଚେତନ ଥାଇ ପ୍ରତିଭା କୌଣସି ତଥାକଥିତ ପରୀକ୍ଷା ନିରୀକ୍ଷା ପ୍ରତି ପ୍ରବଣତା ପ୍ରକାଶ କରି ନାହାନ୍ତି । 'ଅସ୍ତ ନକ୍ଷତ୍ର ଏକାକୀ'ରେ ପ୍ରତିଷ୍ଠିତ କବିମାନଙ୍କ ଭାଷାଶୈଳୀର କଣ୍ଠିତ୍ ଅନୁରଣନ ଦେଖିବାକୁ ମିଳେ । 'ସାହାଡ଼ା ସୁନ୍ଦରୀ' ପରଠୁଁ ତାଙ୍କର ଗଠନରୀତି ଓ ବାଚନଭଙ୍ଗୀ ଅଧିକ ମୌଳିକ ହୋଇଉଠିଛି । ପ୍ରକାଶଭଙ୍ଗୀ କେତେକ କ୍ଷେତ୍ରରେ ବର୍ଣ୍ଣନାତ୍ମକ ତ ଅନ୍ୟ କ୍ଷେତ୍ରରେ ସୂଚନାତ୍ମକ ଓ ସମ୍ବୋଧନାତ୍ମକ । 'ତୁ'କାର ଓ 'ମୁଁ'କାର ଉଚ୍ଚାରିତ ପ୍ରକାଶଭଙ୍ଗୀଟି ତାଙ୍କଠାରେ ବେଶ୍ ସ୍ୱତଃସ୍ଫୂର୍ତ୍ତ । ପ୍ରାରମ୍ଭିକ କାଳର ଛାନ୍ଦସିକତା ପରବର୍ତ୍ତୀ କାଳରେ ଗଦ୍ୟରୀତିକୁ ଆଶ୍ରା କରିଛି । ଗଦ୍ୟରୀତିରେ କେଉଁଠି ସମ୍ପୂର୍ଣ୍ଣ ଗଦ୍ୟ ତ କେଉଁଠି ଗଦ୍ୟ ଓ ପଦ୍ୟର ମିଶ୍ରଣ ଘଟାଇ ସାଙ୍ଗୀତିକତା ସୃଷ୍ଟି ପ୍ରତି ସେ ପ୍ରବଣତା ପ୍ରକାଶ କରିଛନ୍ତି । ବିଭିନ୍ନ ସଙ୍କଳନକୁ ଲକ୍ଷ୍ୟକଲେ ମନେହେବ ଯେ ସେ ଗଦ୍ୟଛନ୍ଦକୁ ଆପଣା ରୀତିରେ ନିୟନ୍ତ୍ରଣ କରିଛନ୍ତି । ଏ ପ୍ରସଙ୍ଗର କେଇଟି ଉଦାହରଣ :

ତୁ ଶୁଣିବୁନି କାହାର କଥା
ମାନିସିବୁନି କାହାର ଉପଦେଶର ସତର୍କତା
ନିଆଁର ତେଜରେ ଝାଙ୍କିହୋଇ ଛୁଇଁବୁ
ଜଳନ୍ତା ସାପୁଲିରେ ତାଳି,
ଡଗ ଡଗ ଚାଲିଯାଉଥିବା ସଁବାଳୁଆକୁ
ମୁଠେଇ ଧରି ଭୋଗିବୁ କଦର୍ଯ୍ୟ ଅନୁଭୂତି । (ଆତ୍ମଜ୍ଞାନ)

ଝପଟି ଆସେ ପବନ/ସାଙ୍ଗିର କଳାଘୁମର
ପାଣିରେ/ତା'ର ପାଦଚିହ୍ନ । (ପ୍ରତିଶ୍ରୁତି)

ଛଅ ଫୁଟ ଓସାର ଓ ପାଞ୍ଚ ଫୁଟ ଲମ୍ବର ଏ ଖଟ
ଖଟ ନୁହେଁ ଶବାଧାର ବା ତାବୁତ୍ କହେଇଲେ

ଯା' ଭିତରେ ଦେହଆତ୍ମା
ଦୂରେଁ ଛଟପଟ । (ରେଳଯାତ୍ରା)

ପବନ ସଯତ୍ନ, ଶିଷ୍ଟ ବୁଲିଆସେ । (ସତ୍ୟ)

ପ୍ରକାଶଭଙ୍ଗୀରେ ନାଟକୀୟତା ରହିଛି । ପ୍ରଶ୍ନବାଚୀ, ବସ୍ତୁସୂଚକ ଚିହ୍ନର ବ୍ୟବହାର, ସଂଳାପଧର୍ମୀ ପ୍ରୟୋଗ ଆବୃତ୍ତିଧର୍ମିତା ଓ ଆବେଦନ ପାଇଁ ସହାୟତା ଦେଇଥାଏ ।

କାହାକୁ କ'ଣ ପଚ୍ଛରୁ ବୋଲି ଉଦ୍‌ବିଗ୍ନତା ?
ଭାଗ୍ୟ ! (ସାହାଡ଼ା ସୁନ୍ଦରୀ)

ହି ମତେ ବି କାଠିକୁଟା ସଜାଡ଼ିବାକୁ ପଡ଼େ ଦେ ପଡ଼େ
ମଲ୍ଲିଫୁଲକୁ ଗଛେଇବାକୁ ହୁଏ
ଦାନା ଖୁଣ୍ଟି ଆଖିବୁଜି ଫାଇଁ ଫାଇଁ ଉଡ଼ିବାକୁ ହୁଏ
ହୁଏ ମାନେ ?
ଅସ୍ୱଚ୍ଛନ୍ଦ ନିଘୃମର କଡ଼ାକଡ଼ି ପଣ/ବଳାତ୍କାରେ ଝିଙ୍କ ନେଇଯାଏ
(ଏଇଠି, ମୁହୂର୍ତ୍ତେ ପାଇଁ)

କାହିଁକି ତେବେ ଏ ବାଟଚଲି ?
କେଉଁଠିକୁ ? କାହାର ନିମନ୍ତ୍ରଣରେ ?
କେବେଯାଏ ?
ମାଟିର ନିର୍ଯ୍ୟାସ/ମିଶିଗଲିଯାଏ ପବନରେ ? (ଅନ୍ତରଙ୍ଗ ମୂର୍ତ୍ତି ତୋର)

ଆଧୁନିକ କବିତାର ବିଶିଷ୍ଟ ଉପାଦାନ ପ୍ରତୀକ, ଚିତ୍ରକଳ୍ପ, ମିଥ୍‌ଯୋଜନା ଏବଂ ଶବ୍ଦର ନୂତନ ପ୍ରୟୋଗବୈଶିଷ୍ଟ୍ୟ ପ୍ରତିଭାଙ୍କ କବିତାରେ ବେଶ୍ ସାର୍ଥକ ଭାବେ ସଂଯୋଜିତ ହୋଇଛି । ବିଶେଷକରି ତାଙ୍କ ପ୍ରତୀକ ପ୍ରୟୋଗରେ ଅନେକ ରୂପାନ୍ତର ସଂଘଟିତ । ପ୍ରାରମ୍ଭିକ କାଳରେ ପକ୍ଷୀ, ଜହ୍ନ, ତାରା ରୋମାଣ୍ଟିକ ଭାବନାକୁ ରୂପ ଦେଉଥିବେଳେ ପରବର୍ତ୍ତୀ କାଳରେ ପରମାର୍ଥିକ ସତ୍ତାର ଦୃଶ୍ୟରୂପ ହୋଇପଡ଼ିଛି । ଜୈବିକ ସଂସାରୀ ସତ୍ତାର ପ୍ରତୀକ ଭାବେ କବି କଙ୍କଡ଼ା, ଘୁଷୁରି, ବେଙ୍ଗ ଓ ଜିଆକୁ ପ୍ରୟୋଗ କରିଛନ୍ତି । କେତେକ ପ୍ରତୀକ ପ୍ରୟୋଗ ଅବଶ୍ୟ ପାରମ୍ପରିକ । ପ୍ରତିଭାଙ୍କ କବିତାରେ ଗୋଠ ଓ ପାଞ୍ଚଣ ସଂସାରର, ଫୁଲ କୋମଳ ସତ୍ତାର, ଷ୍ଟେସନ ମୃତ୍ୟୁ-ଲୋକର, ବଇଁଶୀ ଅପାର୍ଥିବତାର, ସାହାଡ଼ାସୁନ୍ଦରୀ କୃଷ୍ଣତ୍ତମ ସତ୍ତା ଓ ସୌନ୍ଦର୍ଯ୍ୟର, ମେଘ ପରମସତ୍ତାର ପ୍ରତୀକ ରୂପ । ବୃକ୍ଷ, ସମୁଦ୍ର, ମାଟି ଆଦି ରୂପ ଭିତରେ କବି-ସତ୍ତାର ପରପ୍ରକାଶ ଲକ୍ଷ୍ୟ କରାଯାଏ । ଚଢ଼େଇ ଓ କଣ୍ଢେଇ କେତେକ ଦୃଶ୍ୟର ପ୍ରତୀକ ହେଉଥିବେଳେ ସ୍ୱକୀୟ ଅସ୍ତିତ୍ୱର ମଧ୍ୟ ପ୍ରତୀକତା କରନ୍ତି । କବିଙ୍କ ପ୍ରତୀକ

ପ୍ରୟୋଗ ଓ ଭାଷାର ସୂଚନାଧର୍ମିତାର ନମୁନା ପାଇଁ 'କବିହେବା ମାନେ କ'ଣ ?'କୁ ବିଚାରକୁ ନେଇପାରିବା ।

ପ୍ରସଙ୍ଗର ଆବଶ୍ୟକତା ଅନୁଯାୟୀ ପ୍ରତିଭା ଚିତ୍ରକଳ୍ପ ରଚନା ପ୍ରତି ଯତ୍ନ କରିଥାନ୍ତି । ଦୃଶ୍ୟ ସମ୍ବୋଧନ ତାଙ୍କୁ ଚିତ୍ରକଳ୍ପ ରଚନା କରିବାକୁ ସତେ ଯେମିତି ବାଧ୍ୟ କରିଛି । ଅଧିକାଂଶ ଚିତ୍ରକଳ୍ପ ଦୃଶ୍ୟଧର୍ମୀ—ଏଗୁଡ଼ିକରେ ଉପମା ଧର୍ମର ପ୍ରାଧାନ୍ୟ ଏଣୁ । କବିଙ୍କ ଚିତ୍ରକଳ୍ପ ପ୍ରୟୋଗ ତାଙ୍କ ସୌନ୍ଦର୍ଯ୍ୟ ଅନୁରାଗକୁ ବିଶେଷ ଭାବେ ସୂଚାଇଛି । ଏଗୁଡ଼ିକ ପ୍ରାୟତଃ ପରିଚିତ ପରିପାର୍ଶ୍ୱରୁ ସଂଗୃହୀତ । ବଉଦ, ମେଘ, ଆକାଶ ମୁଖ୍ୟତଃ ତାଙ୍କ ଚିତ୍ରକଳ୍ପର ଭୂମି । ପ୍ରଥମା/ଦ୍ୱିତୀୟା ଜହ୍ନଠୁଁ ପୂର୍ଣ୍ଣିମା ଜହ୍ନ ପର୍ଯ୍ୟନ୍ତ ଜହ୍ନର ରୂପ ରୂପାନ୍ତର ନେଇ କବିଙ୍କର ଅନେକ ଚିତ୍ର ରଚନା । ତାଙ୍କ କବିତାରେ ଜହ୍ନ ମଜଦୁର୍ ଝିଅ ଏବଂ ଖରା ଅଭିଆଡ଼ୀ ଝିଅ । ଜହ୍ନ ସମ୍ପର୍କୀୟ କେଇଟି ଉଦାହରଣ ନିମ୍ନରେ ପ୍ରଦତ୍ତ :

ଜହ୍ନ ବୁଢ଼ୀଆଣୀ/ପାଗଳ ବଉଦର ଜାଲ ତେଇଁ ତେଇଁ × × ×
(ଶିଳାଲିପି)

ନୂଆ ଘରଟିଏ ପରି ଗଜୁରିଥିବା ଜହ୍ନକୁ (ଅବିଚ୍ଛିନ୍ନ ଯୋଗ)

ଦ୍ୱିତୀୟା ଜହ୍ନଟି/ନଇଁ ପଡ଼ିଥାଏ/ନିଦ ମଳମଳ
ଆଖିପତା ପରି/ମୋର ଖେଳ ସାଙ୍ଗଙ୍କର (ଜଙ୍ଗଲ)

କବି ମେଘସଭାରେ ନିଜକୁ ଓ ପରମ ସତ୍ତାକୁ ଦେଖନ୍ତି । କବିଙ୍କ 'ମୁଁ'ଟି ଅନେକ ରୂପକ ଓ ଚିତ୍ରଦ୍ୱାରା ପ୍ରକାଶମାଣ । ଏହା ଅସ୍ତିତ୍ୱ ବା ସ୍ଥିତିର ସୂଚନା ଦିଏ । ଯଥା : 'ମୁଁ ଯେମିତି ଏକ ମୃତ ବନ୍ଦରର ବାଲିସ୍ତୂପ ; ମୁଁ ଯେମିତି ମେଞ୍ଚାଏ ଅଡ଼ୁଆ ସୂତା/ଖିଅ ମିଳେ ନାହିଁ' ଇତ୍ୟାଦି ।

ପ୍ରତିଭାଙ୍କ ମିଥ୍ ପ୍ରୟୋଗ ଅଧିକ ଭାବରେ କବିତାର ଥିମ୍ ଓ ଭାବ ଚେତନାର ସଫଳ ପରିପ୍ରକାଶରେ ସହାୟତା ଦେଇଥାଏ । ଏ କ୍ଷେତ୍ରରେ ପ୍ରାରମ୍ଭିକ ପ୍ରୟୋଗ ଅପେକ୍ଷା ପରିଣତ କାଳର ପ୍ରୟୋଗ ଅଧିକ ବ୍ୟଞ୍ଜନାଧର୍ମୀ, କଳାତ୍ମକ ଓ ଭାବଗର୍ଭକ । ପ୍ରତିଭାଙ୍କ କବିତାର ବ୍ୟବହୃତ ଶବ୍ଦସମ୍ଭାର ବିପୁଳ ନୁହେଁ—ଭାବ ପ୍ରକାଶପାଇଁ ତାହା ବାଧକ ହୋଇନାହିଁ । ଶବ୍ଦଚୟନ ଚମତ୍କାରିତାର ଅଳ୍ପ କେଇଟିର ଉଦାହରଣ ଦିଆଯାଇପାରେ । ଯଥା : ନିଘଞ୍ଚ ଦୁସ୍ତର ମାୟା, ନିଘଞ୍ଚ ସବୁଜ ଅଳି ଅଞ୍ଚଳରେ ଖଣ୍ଡ ସଙ୍କଳ୍ପ, ଫଗୁ ଅଭିଳାଷ, ଆତ୍ମୀୟତାର କାଚଘର, ବାଲିଚଢ଼ା ଅସ୍ତିତ୍ୱ, ଧପ ଧପ ସଚେତନତା, ବାବଦୁକ ନିର୍ଜନତା, କେଉଁ କେଉଁ ଲୁହ, ଆନନ୍ଦ ନିସ୍ୟନ୍ଦୀ ପ୍ରଭୃତି । ତେବେ ଏସବୁ ଆଙ୍ଗିକ ପରିପାଟୀ ଓ ଉପକରଣ ପ୍ରତିଭାଙ୍କ କବିତାରେ

ଆତ୍ମିକ ସଂହତି ଏତେ ନିବିଡ଼ ଓ ସର୍ବେ ଜଡ଼ିତ ଯେ ସେଗୁଡ଼ିକର ସ୍ୱତନ୍ତ୍ର ଅସ୍ତିତ୍ୱ ଖୋଜି ପାଇବା କଷ୍ଟକର । ଅତଏବ ବିଭିନ୍ନ ପ୍ରକାର ଅଳଂକରଣ ପ୍ରୟୋଗଙ୍କ କ୍ଷେତ୍ରରେ ଚାତୁର୍ଯ୍ୟ ବା ଚମତ୍କାରିତା ପ୍ରଦର୍ଶନ ପାଇଁ ଯେତେ ନୁହେଁ—ଆତ୍ମିକର ସମୃଦ୍ଧି ପାଇଁ ଅତି ଆବଶ୍ୟକ ଉପାଦାନ ହୋଇପଡ଼ିଛି ବୋଲି ବୁଝିବାକୁ ହେବ ।



ଗ୍ରନ୍ଥସୂଚକ :


ଅସ୍ତ ଜହ୍ନର ଏଲିଜି : ୧୯୬୦

ଗସ୍ତ ସମଗ୍ର (୧୯୬୪) ପରିବର୍ଦ୍ଧିତ ସଂସ୍କରଣ : ୧୯୬୯, ଜେ. ମହାପାତ୍ର ଏଣ୍ଡ କୋ, କଟକ-୨ ।

ସାହାଡ଼ା ସୁନ୍ଦରୀ : ୧୯୬୮, ଅଗ୍ରଦୂତ, କଟକ-୨ ।

ନସ୍ପୃତ ବସୁଧା : ୧୯୮୦, ଫ୍ରେଣ୍ଡ୍ସ୍ ପବ୍ଲିଶର୍ସ; କଟକ-୨ ।

ନିମିଷେ ଅକ୍ଷର : ୧୯୮୫, ବିଦ୍ୟାପୁରୀ, କଟକ-୨ ।

ମହାମେଘ : ୧୯୮୮, ଓଡ଼ିଶା ବୁକ୍ ଷ୍ଟୋର, କଟକ-୨ ।

ଶବରୀ : ୧୯୯୧; ଓଡ଼ିଶା ବୁକ୍ ଷ୍ଟୋର; କଟକ-୨

# ରମାକାନ୍ତ ରଥଙ୍କ 'ଉଜ୍ଜ୍ୱଳ ଭବିଷ୍ୟତ' : ଏକ ଦୃଷ୍ଟିପାତ

ଏକ

ରମାକାନ୍ତ ରଥଙ୍କ କବିତାରେ ମୃତ୍ୟୁବୋଧଟି ଏକ ପ୍ରମୁଖ ଚେତନା । ଏହା ଅନ୍ୟ ଭାବଧାରାମାନଙ୍କ ସହ ମିଶିକରି ରହିଛି । ମୃତ୍ୟୁ ପ୍ରତି ତାଙ୍କର ପ୍ରମୁଖ ଦୃଷ୍ଟିକୋଣଟି କ'ଣ ? ଶ୍ଳେଷାତ୍ମକ । ଗଭୀର ଜୀବନଆସକ୍ତ କବି ମୃତ୍ୟୁର ସ୍ୱାଭାବିକତାକୁ ଗ୍ରହଣ କରେ ସତ; ମୃତ୍ୟୁ ତା' ପାଇଁ ବଡ଼କଥା ହୁଏ ନାହିଁ । ଜୀବନର ଯାବତୀୟ ଅନ୍ଧବେଗରେ ମୃତ୍ୟୁର ଗ୍ଲାନି ପଡ଼ିବା ଦେଖି ଦେଖି ସେ ମୃତ୍ୟୁକୁ ଶ୍ରଦ୍ଧା କରିପାରେ ନାହିଁ । ମୃତ୍ୟୁକୁ ଚପଳ ବାଳକ କହେ, କହେ ଅତିଥି । ଚେତନାକୁ ଶରତର ପୂର୍ଣ୍ଣିମା ରଜନୀ ପରି ଆହ୍ଲାଦିତ, ସମ୍ମୋହିତ, ଉଲ୍ଲସିତ କରିବାର ତଲ୍ଲୀନ ମୁହୂର୍ତ୍ତରେ ବି କବି କହନ୍ତି—ଶାଗୁଣାକୁ ଦେଇଛି ମୋ ଶରୀର ।

ସପ୍ତମ ଋତୁ (୧୯୭୭)ର ବହୁ କବିତାରେ କାବ୍ୟ-ସ୍ୱରୂପର ମୃତ୍ୟୁ ସହ କୋମଳ ଓ ଆନ୍ତରିକ କୌତୁକ ଓ କଥୋପକଥନ—କେମିତି ଏକ ଘେନାଘେନି । ସେଠି ସମୟବୋଧ ଓ ପ୍ରେମ ଚେତନା ସହିତ ମୃତ୍ୟୁବୋଧ ମିଶିକରି ରହିଛି । ଏ ଗ୍ରନ୍ଥର ଅର୍ଦ୍ଧାଧିକ କବିତାରେ ମୃତ୍ୟୁବୋଧର ପରିପ୍ରକାଶ । 'ଧୀବର' କବିତାରେ ସେ କହନ୍ତି—'ସମୁଦ୍ରକୁ ସ୍ତବ୍ଧ କରିବାର ବେଳ ଆସିଲାଣି' କିମ୍ବା 'ଅଭ୍ୟାସ' କବିତାରେ ସେ ମୃତ୍ୟୁକୁ ପଚାରିବସନ୍ତି—'ମତେ ଡରାଇବା କ'ଣ ଦରକାର ଥିଲା ?' ଛଅଗୋଟି ଋତୁ ଭୋଗୁଥିବା ଏହି ଜରାମରଣର ଦେହକୁ—ପାର୍ଥିବତାକୁ ଏକ ଅପାର୍ଥିବତା ବା ଉତ୍ତୀର୍ଣ୍ଣତାର ସ୍ପର୍ଶ ଦେବା ଅଭିଳାଷରେ କବିଙ୍କର 'ସପ୍ତମ ଋତୁ'ର ପରିକଳ୍ପନା । ସପ୍ତମ ଋତୁ କ'ଣ ମୁକ୍ତି ? ଉତ୍ତୀର୍ଣ୍ଣତା ? ଚେତନାର ଏକ ନୂଆ ଦଶା ? ବିଡ଼ମ୍ବନା, ଅଚରିତାର୍ଥତା, ଅପ୍ରାପ୍ତି ଊର୍ଦ୍ଧ୍ୱ ମୋହମୁକ୍ତ ଇଲାକା ? ମୁଖ୍ୟତଃ ମୃତ୍ୟୁ ପ୍ରତି ରମାକାନ୍ତଙ୍କ ଦୃଷ୍ଟିଭଙ୍ଗୀ ଅନେକାଂଶ ନମନୀୟ, ସ୍ନେହମୟ ପୁଣି ବ୍ୟଙ୍ଗାତ୍ମକ ଓ ଶ୍ଳେଷାତ୍ମକ ।

ଦୁଇ

ଆଲୋଚ୍ୟ 'ଉଜ୍ଜ୍ୱଳ ଭବିଷ୍ୟତ' କବିତାଟି କବି ରମାକାନ୍ତ ରଥଙ୍କ ସମୟବୋଧ ଓ ମୃତ୍ୟୁବୋଧ ସମ୍ପର୍କୀୟ ଏକ ଭିନ୍ନ ସ୍ୱାଦର ଉଦାହରଣ । ଅବଶ୍ୟ ଅନ୍ୟ

ସମଧାରାଶ୍ରୟୀ କବିତାଗୁଡ଼ିକ ସହ ଏହାର ମେଳ ରହିଛି । କବିତାଟି ଦୁଇଟି ପର୍ଯ୍ୟାୟରେ ବିଭକ୍ତ । ପ୍ରଥମ 'ମୃତ୍ୟୁ' ସମୟ ବା ମହାକାଳର ଏକ ଅଂଶବିଶେଷ ଏବଂ ସମୟର ଶକ୍ତିମତ୍ତା ଦର୍ଶାଇବା ବେଳେ କବି ମୃତ୍ୟୁକାଳୀନ ଅବସ୍ଥାର ଚିତ୍ର ବାଢ଼ିଛନ୍ତି । ଦ୍ୱିତୀୟ ପର୍ଯ୍ୟାୟରେ ମୃତ୍ୟୁ ପ୍ରତି କାବ୍ୟପୁରୁଷର ଦୃଷ୍ଟିଭଙ୍ଗୀ ସ୍ନେହାତ୍ମକ, ଶ୍ଳେଷାତ୍ମକ ସର୍ବୋପରି ଦାର୍ଶନିକଭାବାପନ୍ନ । ତେବେ ମୃତ୍ୟୁବୋଧ ବା ମାନସିକତାର ଏକ ଭିନ୍ନ ଅବବୋଧର ଚିତ୍ର ଏଠାରେ ଉତ୍କୀର୍ଣ୍ଣ ।

ସମୟ ବା ମହାକାଳ ସବୁର ନିୟାମକ—ତାହା କେବେ ଅବେଳ, ଦୁର୍ଦ୍ଦିନ ତ ଆଉ କେବେ ଭିନ୍ନ ରୂପ ନେଇ ଆସେ । ବହୁରୂପୀ ସମୟ ସହ ଆମ ଜୀବନର ଯାହା ନିବିଡ଼ ଭାବେ ଜଡ଼ିତ । ରମାକାନ୍ତଙ୍କ ଦୁଇଟି କବିତାର ଶୀର୍ଷକ ଏହିପରି : 'ଖରାପ ସମୟର ଭଲ ସମୟ', 'ମୁହୂର୍ତ୍ତ ହିଁ ପୂର୍ଣ୍ଣାଙ୍ଗ ଜୀବନ' । ଜୀବନର ସୁଖଦୁଃଖ, ହତାଶା ମଧୁରତା, ହସଅଶ୍ରୁ, ଆନନ୍ଦଯନ୍ତ୍ରଣା ସବୁଗୁଡ଼ିକ ଯେମିତି ସମୟର ଦାନ, ସମୟର ଆଶିଷ, ସମୟର ଅଭିସମ୍ପାତ ବା ବୈରିତା ବି । ସମୟ ସମ୍ପର୍କରେ ଏଣୁ କାବ୍ୟପୁରୁଷ ଏକ ନିଶ୍ଚିତ ଅଥଚ ସଂଶୟାତ୍ମକ ଦୃଷ୍ଟି ପୋଷଣ କରିଛି ।

ସମୟ କୃପଣ କେଡ଼େ ! ମନା କରିଦେଲା  
ଆଉ ଏକ ଚନ୍ଦ୍ରପକ୍ଷ ରାତି ମୋ ଦେହକୁ  
କୋଇଲିର ତଣ୍ଟି ଚିପିଦେଲା, ତା' ମତରେ  
ଗୋଟିଏ ଗୀତ ହିଁ ଖୁବ୍ ।

ସମୟ ତା' ମାର୍ଗରେ ଯାଏ, ତା' ମାର୍ଗରେ ଭିକ୍ଷା ଦିଏ । ଦୟା, କରୁଣା ବା କାର୍ପଣ୍ୟ କରେ । କାବ୍ୟନାୟକ ତାକୁ କୃପଣ ବୋଲି କହିବସିଛି । 'ଚନ୍ଦ୍ରପକ୍ଷ ରାତି' କି 'କୋଇଲିର ଗୀତ'ରେ ମୁଗ୍ଧ ହେବାର ଦୈହିକ ବିଳାସ ବା ଆତ୍ମିକ ବିଳାସ ନେଇ ସାଂସାରିକ ମଣିଷଟି ବ୍ୟସ୍ତ ହୁଏ । ସୁଖ, ସୌନ୍ଦର୍ଯ୍ୟ, ମାଧୁର୍ଯ୍ୟ ତାକୁ ଅକୁଳାଣ ହେଲା ବୋଲି ଦୁଃଖିତ ହୁଏ, ବିଷାଦବୋଧରେ ମ୍ରିୟମାଣ ହୁଏ । ଅଥଚ ସମୟ ସେସବୁ ଶୁଣେ ନାହିଁ । ସେ ତା'ର ପ୍ରବାହ ଭିତରେ କାବ୍ୟନାୟକର ଅବବୋଧକୁ ଏମିତି ହିଁ ଛୁଏଁ—'ଗୋଟିଏ ଗୀତ ହିଁ ଖୁବ୍' । ଏହି ମହାଶକ୍ତିମାନ ସମୟର କେତେ ରୂପ, ରୂପାନ୍ତର, ବେଶଭୂଷା । ଜୀବନର ବହୁ ସ୍ଥିତି, ଘଟଣା ଦୁର୍ଘଟଣା, ଆର୍ତ୍ତି-ଆନନ୍ଦ-ଆକୁଳତା ସହିତ ତା'ର ସହାବସ୍ଥାନ । ସବୁ ବ୍ୟାପାରରେ ତା'ର ଅନୁପ୍ରବେଶ ଘଟୁଥାଏ ବୋଲି ଆମେ କହୁଥାଉ—ଅଥଚ ସେ ସବୁଥିରେ ଥାଏ । ଆମେ ତା' ଭିତରେ ଥାଉ । ଅଥଚ ତାକୁ ପୃଥକ୍ କରି ଦେଖିବାର ମାନସିକତା ରଖୁ । ସମୟ ଏଣୁ 'ନିଶାର୍ଦ୍ଧରେ ଝଡ଼','ବର୍ଷାପାଣି ସରସର ଉଦ୍‌ଭ୍ରାନ୍ତ ବତାସ' ହୋଇ ଆସିବାରେ କିଛି ଅସ୍ୱାଭାବିକତା ନ ଥାଏ । ସେ ନୂଆ କରି ଆସେ

ନାହିଁ । ପତ୍ନୀଙ୍କର ଫଟୋଗ୍ରାଫ୍ ଭାଙ୍ଗିବା କି ଚୁଡ଼ି ସିନ୍ଦୂର ଉଜାଡ଼ିବା କି ବିଷାଦ କ୍ରନ୍ଦନର ପରିବେଶଟିଏ ତିଆରିବା ସମୟର କାରସାଦି ବୋଲି ଆମେ ମନେକରୁ । ବେଶିଗୁଡ଼ିଏ କଷ୍ଟ ଭୋଗିଥିବା ମଣିଷର ଦୃଷ୍ଟିରେ, ଖିଆଲରେ ସମୟ 'କୃପଣ' ବା 'ବିଭୀଷିକାମୟ' ବ୍ୟକ୍ତିର ଜୀବନ ସୋହାଗ, ଜୀବନ ଯନ୍ତ୍ରଣା, ପ୍ରାପ୍ତି ଓ ଅପ୍ରାପ୍ତିର ଧାରକ, ବାହକ ଏଣୁ ସମୟ ।

ସେ ସମୟ ହୁଏତ କେବେ ମୃତ୍ୟୁ ହୋଇ ଆସେ ବା ସେ ସମୟ ଭିତରେ ପହଞ୍ଚିଯାଏ ମୃତ୍ୟୁ । ଜୀବନର ଅସ୍ତମାରମ୍ଭ ଓ ମୃତ୍ୟୁ ସମୟ ଭିତରେହିଁ ଘଟି ଚାଲିଥାଏ । କବିତାର ପ୍ରଥମ ପର୍ଯ୍ୟାୟ ଶେଷଭାଗକୁ କବି ଜୀବନାବସାନ, ଶ୍ମଶାନର ଚିତା ଜଳିବା ଓ ପ୍ରେତକର୍ମର ସ୍ୱାଭାବିକତା କଥା ସୂଚାଇଛନ୍ତି । ଏକ ମୃତ୍ୟୁ ପ୍ରତି ସ୍ୱୀକୃତି ପ୍ରଦାନ କରି ସେ କହନ୍ତି :

ତମେ ଚାଲିଯିବା ପରେ ନଈମୁହାଣରେ
ମୁଁ ରହିଲି ଠିଆହୋଇ । ମେଘ ଘୋଟିଆସେ
ଆକାଶରେ । ବଜ୍ର ବର୍ଷା ତଳେ
ଭାଙ୍ଗିଥିବା ଘରକୁ ମୁଁ ପହଁରି ପହଁରି
ଫେରିବାକୁ ଅସମର୍ଥ ।

ଏ ପର୍ଯ୍ୟାୟରେ 'ତୁମେ'ର ପ୍ରୟୋଗକୁ ଲକ୍ଷ୍ୟ କରାଯାଉ । ରମାକାନ୍ତଙ୍କ କବିତାରେ 'ତୁମେ'ର ବ୍ୟାପକ ପ୍ରୟୋଗ ଏବଂ ବିଭିନ୍ନ କ୍ଷେତ୍ରରେ ତାହା ବିଭିନ୍ନ ଅର୍ଥ ଦ୍ୟୋତନା ବହନ କରିଥାଏ । ଏହା ସବୁବେଳେ କୌଣସି ନିର୍ଦ୍ଦିଷ୍ଟ ଚରିତ୍ର ନୁହେଁ । ତାହା କେତେବେଳେ ସ୍ୱୟଂ କାବ୍ୟପୁରୁଷ କେତେବେଳେ ପ୍ରେମିକା ବା କାଳ୍ପନିକ ନାୟିକା ଅଥବା ଅନ୍ୟ କେହିଜଣେ । ଏଠାରେ କୌଣସି ଏକ ଜୀବନାବସାନର ବା ନିଜ ଜୀବନାବସାନର ଏକ କଳ୍ପିତ କ୍ରିୟା ବର୍ଣ୍ଣିତ ହୋଇଛି । 'ନଈ ମୁହାଣ' ଜୀବନ ଓ ମୃତ୍ୟୁର ପ୍ରବେଶ ଓ ପ୍ରସ୍ଥାନର ଘାଟ । ଏକ କଳ୍ପିତ ଏପାରି ଓ ଆର ପାରି, ଏକ କଳ୍ପିତ ଏ ପୁର ଓ ଆରପୁରର ସୂଚନା ନଈ ମୁହାଣରେ ଦିଆଯାଇଛି । ପାରମ୍ପରିକ ବିଶ୍ୱାସବୋଧରେ ବ୍ୟକ୍ତିକୁ ତା'ର ଆସିଥିବା ଜାଗାକୁ ଫେରିବାକୁ ହୁଏ । ସେ ଜାଗା କ'ଣ ସ୍ୱର୍ଗ ? କେଉଁ ବୈକୁଣ୍ଠ ? କେଉଁ ଏକ ମୂଳ ପରମସତ୍ତା ? କବି ସେକଥା କହିନାହାନ୍ତି । ମେଘ ମୃତ୍ୟୁର ପ୍ରତୀକ । କିନ୍ତୁ ମୃତ୍ୟୁ ପ୍ରତି ସ୍ୱୀକୃତି ତା'ର ପାରମ୍ପରିକ କର୍ମପନ୍ଥ ସମ୍ପନ୍ନ ହୁଏ । ଚିତା ଜଳେ ଏବଂ ମନ୍ତ୍ରପାଠ କରାଯାଇ ପ୍ରେତକର୍ମ ସମ୍ପାଦିତ ହୁଏ । କବିତାର ପ୍ରଥମ ପର୍ଯ୍ୟାୟରେ ସମୟର ସାମର୍ଥ୍ୟ, କ୍ଷୟକାରୀ ଶକ୍ତି, କରୁଣା ଓ ନିଷ୍ଠୁରତା କଥା ସୂଚାଇ କବି ଜୀବନାବସାନ ବା ମୃତ୍ୟୁ ସମୟର ଏକ ସ୍ୱାଭାବିକ ପ୍ରକ୍ରିୟା ବୋଲି କହିଛନ୍ତି ।

ତନ

କବିତାର ଦ୍ୱିତୀୟ ପର୍ଯ୍ୟାୟରେ ମୃତ୍ୟୁକାଳୀନ ବା ମୃତ୍ୟୁର ଅବ୍ୟବହିତ ପୂର୍ବର ଅବସ୍ଥା ବର୍ଣ୍ଣନାକରି ମୃତ୍ୟୁ ସହିତ କାବ୍ୟପୁରୁଷକୁ ଅନ୍ତରଙ୍ଗ ଭାବେ ଯୋଡ଼ିଛନ୍ତି । 'ମୁଁ କ'ଣ ପିନ୍ଧିବି ମୋର ଶେଷଦିନ ?'— ଉଚ୍ଚାରଣ ମଧ୍ୟରେ ଜୀବନର ଜୟଯାତ୍ରାକୁ କବି ବଡ଼ କରି ଦେଖାଇଛନ୍ତି । ଏଇ ପିନ୍ଧିବା ପ୍ରକ୍ରିୟାଟି ଏକ ବାହ୍ୟ ଉପଚାର ବୋଲି ମନେ ହେଉଥିଲେହେଁ ମୃତ୍ୟୁ ପ୍ରତି ଦୃଷ୍ଟିଭଙ୍ଗୀଟିକୁ ବ୍ୟଞ୍ଜିତ କରୁଛି । ସମଗ୍ର ଜୀବନର ଉଦ୍‌ଯାପନ ପ୍ରଦାନ କରୁଛି । ଏହା ସହିତ ମୃତ୍ୟୁକୁ ଗ୍ରହଣ କରିବାର ମାନସିକତା ପୋଷଣ କରୁଛି କାବ୍ୟନାୟକ ।

ବିଭିନ୍ନ ପୋଷାକପତ୍ର (ହାଫ୍ ପ୍ୟାଣ୍ଟ, ଧୋତି, ସୁଟ୍) ପିନ୍ଧିଲେ ଲୋକମାନେ କାବ୍ୟନାୟକର ଜୀବନ ବଞ୍ଚିବା ଓ ସମୟ ବିତାଇବାକୁ କିପରି ଭାବେ ଗ୍ରହଣ କରିବେ ବୋଲି କବି ପ୍ରଶ୍ନ କରିଛନ୍ତି । ଏ ପ୍ରଶ୍ନଟି ଆପାତତଃ ଲୋକଙ୍କ ଭାବିବା ନେଇ କରାଯାଇଥିଲେ ମଧ୍ୟ ଏହା କାବ୍ୟନାୟକର ନିଜ ପ୍ରତି ନିଜକୁ ପଚାରିବା । ନିଜେ ବି ସେ ତା'ର ଉତ୍ତରଦାତା । ଏଇ ପୋଷାକପତ୍ର ନା ବୟସର ନା ଆର୍ଥିକସ୍ଥିତିର ଅବସ୍ଥାର କୌଣସିଙ୍କାର ଚିହ୍ନ ଦିଏ ନାହିଁ—ଦିଏ କିଛି ଭିନ୍ନତାର ଚିହ୍ନ । ଏଥିରେ ମୃତ୍ୟୁ ଓ ଜୀବନ ପ୍ରତି ଏକ ଅସ୍ତିବାଚକ ଦୃଷ୍ଟିଭଙ୍ଗୀ ପ୍ରତିଫଳିତ । ବିଭିନ୍ନ ପୋଷାକ ପିନ୍ଧିବାର ଅବସ୍ଥା ଓ ମାନସିକତାକୁ ମିଶାଇଦେଲେ ଏ ଦୃଷ୍ଟିଭଙ୍ଗୀଟି ସ୍ପଷ୍ଟ ହୋଇଯାଏ । ଯଦି କାବ୍ୟନାୟକ ହାଫ୍ ପ୍ୟାଣ୍ଟ ପିନ୍ଧିବେ ତେବେ ବୁଝାଯିବ ଯେ ଜୀବନକୁ ଏକ ସ୍ଫୂର୍ତ୍ତିମାନ ବେପରୁଆ ଖେଳଓ୍ୱାଡ଼୍ ବୋଲି ଗ୍ରହଣ କରିଛନ୍ତି ଯେଉଁଠି 'ଜୀବନଟା ଥିଲା ଏକ ବିଶ୍ରାମ ସମୟ' । ଯଦି ଧୋତି ପିନ୍ଧିବେ ତେବେ ବୁଝାଯିବ ଯେ ସେ ଖୁସି ମିଜାଜ୍‌ରେ ଗୁ, ସିଗ୍ରେଟ୍, ସିନେମା, ଦୂନିଆଁ ଯାକର ଗପସପ ଭିତରେ ଜୀବନ ବିତାଇଛନ୍ତି ଯେଉଁଠି 'ମୃତ୍ୟୁ ଥିଲା ଏକ ରବିବାର' ବା ଛୁଟିଦିନ । ଯଦି ସିଏ ସୁଟ୍ ପିନ୍ଧନ୍ତି ତେବେ ବୁଝାଯିବ ଯେ ସେ ଜଣେ ସୌଖୀନ ସାହେବ ଯାହାଙ୍କ ପାଇଁ 'ଅନ୍ୟ କେତେ କାମ ପରି ମୃତ୍ୟୁ ଏକ କାମ/ସେଥିପାଇଁ ପଛଘୁଞ୍ଚା ନାହିଁ କି ଅଯଥା ବ୍ୟସ୍ତତା ନାହିଁ ବା ଅପରିପକ୍ୱ ବିମର୍ଷତା ନାହିଁ ।' କାବ୍ୟନାୟକ ବା କାବ୍ୟପୁରୁଷର ଏଣୁ ଜୀବନ ଓ ମୃତ୍ୟୁ ପ୍ରତି ସମାନ ଦୃଷ୍ଟିଭଙ୍ଗୀ; ବରଂ ମୃତ୍ୟୁ ପ୍ରତି ଅଧିକ ଭାବେ ରହିଛି ଏକ ନିର୍ଲିପ୍ତ ମାନସିକତା ।

କବିଙ୍କର ଏ ଦୃଷ୍ଟିଭଙ୍ଗୀଟି ଦାର୍ଶନିକ ଭାବାତ୍ମକ । ପ୍ରକୃତ ମୃତ୍ୟୁ ହେବ ବୋଲି ଯାହା କୁହାଯାଇଛି ତାହା ଏହିପରି : 'ଅନ୍ୟ ଏକ ମୃତ୍ୟୁ ହେବ ମୋ ମରିବା ଦିନ' । ତାହା ଏକ ନିଷ୍ପାପ ବାଳକର ମୃତ୍ୟୁ ବା ବାଳକ ସତ୍ତାର ମୃତ୍ୟୁ । କବିତାର ଦ୍ୱିତୀୟ ପର୍ଯ୍ୟାୟର ଶେଷ ବାରଧାଡ଼ି ଏ ଦୃଷ୍ଟିରୁ ଏକାନ୍ତ ଗୁରୁତ୍ୱପୂର୍ଣ୍ଣ । ଏହାର ଅନ୍ତିମ ପଂକ୍ତିଟି ହେଉଛି—

ଯେଁ ମିଶିବି ସେଥିପରି ଫୁଙ୍ଗୁଲା ଦେହରେ
ଫେରିବାର ବାଟ ବନ୍ଦ ସମୟାନ୍ତରର
ମଶାଣିଠୁଁ ମେଘପାଏଁ ଲମ୍ବିଥିବା ପରିବର୍ତ୍ତନରେ ।

ଅତୀତକୁ, ପିଲାଦିନକୁ ଆଉ ପ୍ରକୃତରେ ଫେରି ହେବନାହିଁ । ଯଦିଓ ନାନାଦି ପରିବର୍ତ୍ତନ ଓ ଅବସ୍ଥାଚକ୍ର ମଧ୍ୟଦେଇ ବ୍ୟକ୍ତିର ଜୀବନ ଗତି କରେ ଏବଂ ଗତିକରିବା ସ୍ୱାଭାବିକ; ତା'ର ଜନ୍ମ ଘଟି, ବାଲ୍ୟକାଳ ସହ, ବାଲ୍ୟକାଳର ସ୍ମୃତି ସହ ନିବିଡ଼ ଭାବରେ ମିଶିକରି ରହିଛି ତା'ର ଶେଷ ପର୍ଯ୍ୟାୟ, ଏମିତିକି ତା'ର ମୃତ୍ୟୁ, ମୃତ୍ୟୁ ଭାବନା ବି । ଏଣୁ ସମୟାନ୍ତରରେ କମ୍ବା କୌଣସି ପରିବର୍ତ୍ତନରେ ଏହି ଭାବନା ବା ଅବବୋଧର କୌଣସି ପରିବର୍ତ୍ତନ ଘଟେ ନାହିଁ ଅଥଚ ଘଟିଯାଉଛି ବୋଲି ସାଧାରଣ ମଣିଷଟିଏ ଭାବିଥାଏ । ମୃତ୍ୟୁ ତେବେ କା'ର ହୁଏ ? ମୃତ୍ୟୁ ହୁଏ ଏକ ବାଳକର—ନିଷ୍ପାପ, ନିର୍ଦ୍ଦୋଷ ଏକ ସତ୍ତାର । ଏକ କୋମଳ ସବୁଜତାର ବା ସବୁଜ କୋମଳତାର । ଅନ୍ୟ ଅର୍ଥରେ ମୃତ୍ୟୁ ହେବ ଅତି କୋମଳ, ଅତି ସାଧାରଣ, ଅତି ନିଷ୍ପାପ ସେହି ବାଳକଟି ପରି । ସେ ମୃତ୍ୟୁରେ ବା ମୃତ୍ୟୁର ସମ୍ବାଦରେ କୌଣସି ଆୟୋଜନ ବା ଆଡ଼ମ୍ବର ବା କୋଳାହଳ ନଥିବ । କବି କହନ୍ତି—

ମୋର ବେଶଭୂଷା ଯାହା ହେଉ ପଛେ
ଅନ୍ୟ ଏକ ମୃତ୍ୟୁ ହେବ ମୋ ମରିବା ଦିନ ।
ଫୁଙ୍ଗୁଲାଦେହରେ କଙ୍କି ଧରିବାରେ କୋଳି ତୋଳିବାରେ
ସକାଳ ଗୋଟାକ କାଟୁଥିବା ବାଳକର
ସେଦିନ ଦେହାନ୍ତ ହେବ । ମୋର ଆଜୀବନ
ସେ ନ ମରି ରହିଥିଲା । ଚୁପ୍‌ଚାପ୍ ସେ ଅଧରାତିରେ
ଲୁଚି ବୁଲିଯାଉଥିଲା ଖରାକୁ, ଘାସକୁ,
ନିଜ ନିର୍ଦ୍ଦୋଷିତାକୁ ଓ ପତ୍ର ଗହଳରେ
ଲୁଚିଥିବା ପକ୍ଷୀଙ୍କର କାକଳି ପାଖକୁ ।

ଖରା, ଘାସ, ପତ୍ରଗହଳି, ପକ୍ଷୀଙ୍କରି କାକଳି ପ୍ରଭୃତି କୋମଳ ଜୀବନର ପ୍ରତୀକ । ପୁଣି ଉଭୟ ମଶାଣି ଓ ମେଘ—ଗୋଟିଏ ମୃତ୍ୟୁର ଏକ ଘାତକକ ଦୃଶ୍ୟମାନ ସତ୍ତା ଓ ଅନ୍ୟଟି ସୂକ୍ଷ୍ମ କୋମଳ ସତ୍ତା—ଜୀବନର ଦୁଇଟି ପୃଥକ୍ ଅନୁଭୂତିର ପ୍ରତୀକ ଯାହା ମଧ୍ୟଦେଇ ମଣିଷର ଜୀବନଧାରା ବହୁ ପରିବର୍ତ୍ତନ ଭିତରେ ଗତି କରିଥାଏ । କିନ୍ତୁ କବି ଯଦିଓ ସେଇ ପରିବର୍ତ୍ତନ ଭିତରେ ତା'ର ଶାରୀରିକ ସ୍ଥିତିକୁ ସାମିଲ କରିବାକୁ ବାଧ୍ୟହୁଏ । କିନ୍ତୁ ଉଭୟ ମାନସିକ ଓ ଆତ୍ମିକ ଦୃଷ୍ଟିରେ ସେ ଏପରି ପରିବର୍ତ୍ତନଠାରୁ ବହୁ ଦୂରରେ । ତେଣୁ ତା'ର ଅତୀତର, ବାଲ୍ୟକାଳର ଉଜ୍ଜ୍ୱଳତା ହେଉଛି ତାର ଭବିଷ୍ୟତର ଉଜ୍ଜ୍ୱଳତା । ତାହା ନିଷ୍ପାପ ଓ ଭୁଲନାହାନ,

ସାବଲୀଳ ଓ ସରଳତାରେ ପରିପୂର୍ଣ୍ଣ । ଏଠାରେ ସମୟ ଫେରେ ନାହିଁ କି ମଣିଷର ଜନ୍ମାନ୍ତର ବା ପୁନର୍ଜନ୍ମ ହୁଏ ନାହିଁ । ପୁନର୍ଜନ୍ମର ଆସ୍ପୃହା ଅବଶ୍ୟ ମଣିଷ ରଖିଥାଏ । କବି ଆଉ ଠାଏ କହନ୍ତି—'ପୁନର୍ଜନ୍ମ ଅନିଶ୍ଚିତ ବିଦାୟ ବିଦାୟ ।'

**ଶୃଷି**

'ଉଜ୍ଜ୍ୱଳ ଭବିଷ୍ୟତ' କବିତାଟିରେ ସମୟ ସହିତ ମୃତ୍ୟୁବୋଧ ସମନ୍ୱିତ ହୋଇଛି । ମୃତ୍ୟୁ ସମୟର ଏ ଅଂଶ । କିନ୍ତୁ ସମୟ ଫେରିଆସେ ନାହିଁ । ମୃତ୍ୟୁକୁ ଜୀବନନିର୍ଯାପନର ବିଭିନ୍ନ ସ୍ତରରେ ଏକ ବୈପରୀତ୍ୟ ଓ ବ୍ୟଙ୍ଗାତ୍ମକ ଦୃଷ୍ଟିରେ ପରଖିବା ଗଭୀର ଜୀବନ ଆସକ୍ତିର ସୂଚନାଦିଏ । ମୃତ୍ୟୁ ପ୍ରତିଧ୍ୱନିରେ କାବ୍ୟପୁରୁଷର ବାଳକସତ୍ତ୍ୱର ମୃତ୍ୟୁ ହେବାର ସମ୍ବାଦରେ ଏକ କାରୁଣ୍ୟ ରହିଛି ଯେଉଁଥିରେ ଜୀବନ ଆସକ୍ତି ଓ ପୃଥ୍ୱୀମନସ୍କତାର ସ୍ୱର ଶୁଭେ । ବାଲ୍ୟକାଳର ଉଜ୍ଜ୍ୱଳତାକୁ କବି ଭବିଷ୍ୟତରେ ଉଜ୍ଜ୍ୱଳତା ସହିତ ସମନ୍ୱିତ କଲେ ମଧ୍ୟ କବିଙ୍କର ମୃତ୍ୟୁ ପ୍ରତି/ମୃତ୍ୟୁ-ବୋଧ ପ୍ରତି ଏକ ନିର୍ଲିପ୍ତ ଓ ଉଦାସୀନ ଦୃଷ୍ଟି ରହିଛି । ଆଲୋଚ୍ୟ କବିତାଟି ରମାକାନ୍ତ ରଥଙ୍କର ଏକ ଭିନ୍ନ ଅବବୋଧର ନିଆରା କବିତା ।



'ଆଧୁନିକ ଓଡ଼ିଆ କବିତା ପରିଚର୍ଚ୍ଚା' ଗ୍ରନ୍ଥଟି ଆଧୁନିକ ଓଡ଼ିଆ କବିତାର ଏକ ମୁଗ୍ଧ ରସସିକ୍ତ ସମୀକ୍ଷଣ । ଆଧୁନିକ କବିତାର କେତୋଟି ଅନାଲୋଚିତ ବିଭାବ ତଥା ଆଠଜଣ ବିଶିଷ୍ଟ କବିଙ୍କ କବିତା ଓ କାବ୍ୟଜଗତ ସଂପର୍କରେ ସମୀକ୍ଷା ଏଥିରେ ସ୍ଥାନିତ ହୋଇଛି । ତା' ମଧ୍ୟରେ ରହିଛି ଚାରିଗୋଟି ଓଡ଼ିଆ କବିତାର ପ୍ରାୟୋଗିକ ମୂଲ୍ୟାୟନ । ଆଲୋଚନାଗୁଡ଼ିକ ବିଷୟ-ବୈଚିତ୍ର୍ୟ ଓ ଉପସ୍ଥାପନ ଦୃଷ୍ଟିରୁ ନୂତନ; କେତେକ ଅଧିକ ତଥ୍ୟ ଓ ବିଶ୍ଳେଷଣ ସମୃଦ୍ଧ ହେଲେ ବୃହତ୍ତର ସନ୍ଦର୍ଭରେ ପରିଣତ ହୋଇପାରିବେ ।

ଶତ୍ରୁଘ୍ନ ପାଣ୍ଡବ ମୂଳତଃ କବି ହୋଇଥିବାରୁ ତାଙ୍କ ଦୃଷ୍ଟିଭଙ୍ଗୀ ଓ ଆଲୋଚନାର ଭାଷା ଅନ୍ୟ ସାହିତ୍ୟ ସମୀକ୍ଷକଙ୍କଠୁଁ ନିଆରା । ଆମ ପ୍ରକାଶିତ ଲେଖକଙ୍କ ନିବନ୍ଧଗ୍ରନ୍ଥ କଥାଶିଳ୍ପୀ ମନୋଜ ଦାସ ପ୍ରଚୁର ପାଠକୀୟ ସ୍ୱୀକୃତି ଓ ସଂପ୍ରୀତି ଲାଭ କରିଛି । 'ଆଧୁନିକ ଓଡ଼ିଆ କବିତା ପରିଚର୍ଚ୍ଚା' ପ୍ରଥମଖଣ୍ଡଟି ପାଠକୀୟ ଅବବୋଧକୁ ଉଦ୍ଦୀପ୍ତ ଓ ସମୃଦ୍ଧ କରିବ ବୋଲି ଆମେ ଆଶା କରୁଛୁ ।

ISBN 81-7401-235-4